# ପ୍ରତିମା ଚିତ୍ର

ବିକ୍ରମ ଦାସ



# ମଣିମାଡିହ

ଲେଖକ

ଡକ୍ଟର ବିକ୍ରମ ଦାସ



ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର
ବିନୋଦବିହାରୀ, କଟକ-୨
ଶାଖା : ମେନ୍‌ରୋଡ଼, ବ୍ରହ୍ମପୁର

ମୁଦ୍ରକ :
ରୁବିପ୍ରିଣ୍ଟର୍ସ
ନିମଚୌଡ଼ି, କଟକ-୨

ପ୍ରଥମ ମୁଦ୍ରଣ :
ଅଗଷ୍ଟ, ୧୯୮୧
୧୧୦୦ ବହି

ମୂଲ୍ୟ ଟ ୧୩-୦୦
ସାଦାବନ୍ଧେଇ ଟ ୧୧-୨୫

# ସୂଚନା

[ଉତ୍କଳର ଲବ୍‌ଧପ୍ରତିଷ୍ଠ ଔପନ୍ୟାସିକ ଶ୍ରୀ କାହ୍ନୁଚରଣ ମହାନ୍ତିଙ୍କ କଲମରୁ ।]

ମଣିମାଡ଼ହ ଉପନ୍ୟାସର ପାଣ୍ଡୁଲିପିଟି ପଢ଼ିବାର ସୁଯୋଗ ମୁଁ ପାଇଲି । ପଢ଼ିଲାବେଳେ ମୋର ମନେହେଉଥିଲା ସତେକି ଓଡ଼ିଆ ଉପନ୍ୟାସର ଜନ୍ମଦାତା ବ୍ୟାସକବି ଫକୀରମୋହନଙ୍କର ଅପ୍ରକାଶିତ ଆଉ ଗୋଟିଏ ଉପନ୍ୟାସ ପଢ଼ୁଚି କି ?

ସାବଲୀଳ ଗ୍ରାମ୍ୟ-ଭାଷାରେ ଗ୍ରାମ୍ୟ ପ୍ରକୃତି, ଚରିତ୍ର, ପର୍ବପର୍ବାଣି, ରୀତିନୀତିର ନିଖୁଣ ଚିତ୍ର ଏହି ଉପନ୍ୟାସରେ ପ୍ରତିଫଳିତ ହୋଇଛି । ଚରିତ୍ରଗୁଡ଼ିକ ଐତିହାସିକ ରଙ୍ଗଭୂମି ଉପରେ ସେମାନଙ୍କର ଲୀଳାଖେଳା ଦେଖାଇ ଅନ୍ତର ହୋଇଛନ୍ତି । ସେମାନଙ୍କର ପାପ, ପୁଣ୍ୟ, ଧର୍ମ-ଅଧର୍ମ ସବୁ କର୍ମ ବିଲୀନ ହୋଇଛି ମହାକାଳର ବିସ୍ମୃତି ଗର୍ଭରେ । ଏବେ ଯାଏ ରହିଯାଇଛି କେବଳ ଟିକିଏ ଭୂଇଁ, ଅତୀତର ସ୍ମୃତି ହୋଇ ଯାହା ଲୋକମୁଖରେ 'ମଣିମାଡ଼ହ' ନାମରେ ପରିଚିତ ।

କେତେ ଜାଣନ୍ତି କେତେ ପୁଣି ଜାଣନ୍ତି ନାହିଁ ଯେ, ସେଇ ଭୂମି ଖଣ୍ଡିକ ପୁଣ୍ୟତୀର୍ଥ ସତ୍ୟବାଦୀ ସାକ୍ଷୀଗୋପାଳଙ୍କର ଚନ୍ଦନପୋଖରୀ ନିକଟରେ ଅବସ୍ଥିତ, ତାହା ଥିଲେ ମଣିମାଙ୍କର ଆବାସ-ଭୂମି ଥିଲା । ପୁରୀର ଗଜପତି ମହାରାଜା ରାମଚନ୍ଦ୍ରଦେବ (ତୃତୀୟ)ଙ୍କର କନିଷ୍ଠ ପୁତ୍ର, କଣାସ ଅଞ୍ଚଳର ସାମନ୍ତ ରାଜା ଥିଲେ । ସତ୍ୟବାଦୀ ସେଇ ଅଞ୍ଚଳର ଅନ୍ତର୍ଭୁକ୍ତ ।

ତାଙ୍କର ମହାରାଣୀ ଥିଲେ ନିଃସନ୍ତାନା । ତାଙ୍କର ଜଣେ ସହଚରୀ ମନୋହାରିଣୀର ଜଠରରୁ ଗୋପାଳଙ୍କର କଲ୍ୟାଣରୁ ଜନମିଥିଲେ ଯେଉଁ ପୁତ୍ର ସେହିଥିଲେ ଗଜପତି ବଂଶର କଣାସ-ଶାଖାର ଶେଷ ରାଜା । ସେ ଥିଲେ ଗୋପାଳଙ୍କର ପରମଭକ୍ତ । ବାଲ୍ୟକାଳରୁ—ବୃଦ୍ଧ ହୋଇ ଶେଷ ନିଃଶ୍ୱାସ ଛାଡ଼ିବାଯାଏ ସେହି 'ମଣିମା' ଗୋପାଳଙ୍କ ସେବା ପୂଜାରେ ନିଜକୁ ନିୟୋଜିତ ରଖିଥିଲେ । ସେ ମଧ୍ୟ ନିଃସନ୍ତାନ ଥିଲେ ।

ଗଜପତିଙ୍କର ସତ୍ୟବାଦୀ ଶାଖାର ବିଲୁପ୍ତି ହେଲା ତାଙ୍କରି ତିରୋଧାନରେ । ଅତି ଦୁଃଖରେ ସେ ସଂସାର ଚଳାଉଥିଲେ । ଅଣ୍ଟା ନଇଁଥିଲା, କିନ୍ତୁ ମୁଣ୍ଡ ନଇଁ ନ ଥିଲା, ସମ୍ମାନ କମି ନ ଥିଲା । ସ୍ନେହ ଓ ଉଦାରତାର ସେ ଥିଲେ ଚଳନ୍ତି ପ୍ରତିମା ।

ସମସ୍ତଙ୍କୁ ସେ ବଂଶ ବିଶ୍ୱାସ କରୁଥିଲେ । ବନ୍ଧୁରୂପୀ ଜଣେ କୁ-ଚକ୍ରୀ ପ୍ରବଂଚକର ଚକ୍ରାନ୍ତରେ ଗୋପାଳପ୍ରାଣ, ସହଜବିଶ୍ୱାସୀ 'ଧୂର୍ବ ରାଜା' ଚଳନ୍ତି ଓ ଅଚଳନ୍ତି ପ୍ରାପ୍ୟ ସମସ୍ତ ଧନ-ସମ୍ପତ୍ତି ହରାଇଥିଲେ । ସେ ନିଜେ ମସୀଜୀବୀ ହୋଇ ଯତ୍‌ସାମାନ୍ୟ ଅର୍ଜନ କରି ଖର୍ଚ୍ଚ ଚଳାଉଥିଲେ । ତଥାପି ସେ ସେହି ବିଶ୍ୱାସଘାତକ ବଂଶ ପ୍ରତି ମନରେ ଆକ୍ରୋଶ ଭାବ ଜନ୍ମାଇନଥିଲେ, ପ୍ରତିହିଂସା ପରାୟଣ ହୋଇ ନ ଥିଲେ; ବରଂ ସେହି କୁଚକ୍ରୀର ଚରିତ୍ରହୀନ କୁଳାଙ୍ଗାର ପୁତ୍ରକୁ ନିଶ୍ଚିତ କାରାଗାରର ଦ୍ୱାରଦେଶରୁ ଫେରାଇ ଆଣିଥିଲେ ।

ତାଙ୍କର ଉଦାରତା ସତ୍ତ୍ୱେ ସେହି କୁଚକ୍ରୀର ବଂଶରେ କେହି ରହିଲେ ନାହିଁ । ବିଚିତ୍ର କାଳରଲୀଳା ! ରଘୁପତି ନାହାନ୍ତି, ରାବଣ ବି ନାହିଁ—କିନ୍ତୁ ସେମାନଙ୍କର କୀର୍ତ୍ତି-ଅପକୀର୍ତ୍ତି ଗାଥା ଜୀବନ୍ତ ରହିଛି ।

ମହାପ୍ରତାପୀ ଗଜପତି ବଂଶର ସତ୍ୟବାଦୀ ଶାଖାର ଶେଷ-ଦାୟାଦ "ମଣିମା" "ହକେ ଥିଲେ"—ପର୍ଯ୍ୟାୟଭୁକ୍ତ ହୋଇଛନ୍ତି । କିନ୍ତୁ ତାଙ୍କର ତିହଟି ଅଛି, ଯାହା ଅଦୂର-ଅତୀତରେ କେବଳ ମଣିଷ ନୁହେଁ ପଶୁ ପକ୍ଷୀଙ୍କର ମଧ୍ୟ ରଙ୍ଗଭୂମି ଥିଲା । ସବୁର ସମାବେଶ ହୋଇଛି 'ମଣିମାଡ଼ିହ' ଉପନ୍ୟାସରେ । ତାହା କୁଶଳୀ-ଶିଳ୍ପୀଙ୍କର ଲେଖନୀ ମୁନରେ ଜୀବନ୍ତ ।

**କାହ୍ନୁଚରଣ**
୧୪-୪-୮୦
ରାଜାବଗିଚ୍ଚ, କଟକ

# ଏକ

ଊଣିଶିଶହ ତିରିଶ-ଏକତିରିଶ ମସିହା । ଭାରତର ଜାତୀୟ ଜୀବନରେ ନବଜାଗରଣ । ସୂତାକଟା, ଲୁଣମରା ଓ ଅସହଯୋଗ ଆନ୍ଦୋଳନର ପ୍ରଭାବରେ ଦେଶସାରା ହୁଲସ୍ଥୁଲ ହେଉଛି । ମହାତ୍ମା ଗାନ୍ଧୀଙ୍କର ଅଦୃଶ୍ୟ କାଠିର ସ୍ପର୍ଶରେ ସ୍କୁଲ କଲେଜ, ସରକାରୀ ଅଫିସ, ସହର ମଫସଲ ସବୁଆଡ଼ୁ କଂଗ୍ରେସକର୍ମୀମାନେ ବର୍ଷାଦିନେ ଝିଙ୍କପୋକ ବାହାରିଲାପରି ଦାଣ୍ଡଘାଟରେ ମାଡ଼ି ଆସୁଛନ୍ତି । କାହାଁକୁ ଡରନାହିଁ, ଭୟନାହିଁ, 'ଭାରତମାତା କି ଜୟ', 'ମହାତ୍ମା ଗାନ୍ଧୀକି ଜୟ' ନାଦରେ ଗଗନ ପବନ କମ୍ପାଇଦେଉଛନ୍ତି । କେଉଁଠି ଲୁଣ ମରା ଚାଲିଛି, କେଉଁଠି ସଭା ସମିତି ହୋଇ ନମୁନା ଲୁଣ ନିଲାମ କରି ଚାନ୍ଦା ସଂଗ୍ରହ ଚାଲିଛି । କିଏ ସୂତାକାଟୁଛି ତ କିଏ ବିଦେଶୀ ଜିନିଷରେ ନିଆଁ ଲଗାଉଛି । ଅଫିମ, ଗଞ୍ଜେଇ, ମଦଦୋକାନ ଆଗରେ ପିକେଟିଂ ଚାଲିଛି । ସେ କି ଉତ୍ସାହ, ସେ କି ଉଦ୍ଦୀପନା—ଯିଏ ଆଖିରେ ଦେଖି ନ ଥିବ କି ଅଙ୍ଗେ ନିଭେଇ ନଥିବ ସେ ତାହା ଅନୁଭବ କରି ପାରିବ ନାହିଁ ।

ଆନ୍ଦୋଳନ ଦବାଇବାକୁ ଦେଶୀ ବିଦେଶୀ ପୁଲିସ ଓ ଅଫିସରଙ୍କଦ୍ୱାରା ପ୍ରଚଣ୍ଡ ଦମନ ଲୀଳା ଚାଲିଥାଏ । ସେମାନେ କର୍ମୀମାନଙ୍କୁ ଘୋଷରା ଓଟରା କରନ୍ତି । ମାଡ଼ଦେଇ ହାତ, ଗୋଡ଼, ଦାନ୍ତ ଭାଙ୍ଗିଦିଅନ୍ତି । ଜେଲ୍‌କୁ ବାନ୍ଧିନିଅନ୍ତି । ମାତ୍ର ଏ ସବୁକୁ ଲୋକଙ୍କର ଖାତିର ନ ଥାଏ । ଯେତିକି ଲୋକ ଜେଲ୍ ବା ଡାକ୍ତରଖାନାରେ ଭର୍ତ୍ତି ହୁଅନ୍ତି, ତାଠାରୁ ବେଶି ସଂଖ୍ୟାରେ ଆସି ସେ ସ୍ଥାନରେ ପହଞ୍ଚନ୍ତି । ଛୋଟିଆ ଛୋଟିଆ ପିଲାଏ ବାନରସେନା ଦଳ ଗଢ଼ି ଜାତୀୟପତାକା ହାତରେ ଧରି, ଗାନ୍ଧିଟୋପି ପିନ୍ଧି ଲୋକଙ୍କୁ ଉତ୍ସାହ ଦେବାକୁ ପଟୁଆର କରି ଚାଲିଥାଆନ୍ତି । ବୁଢ଼ୀଠାରୁ ଭୁଆସୁଣୀ ପର୍ଯ୍ୟନ୍ତ ନାରୀମାନେ ହାଣ୍ଡିଶାଳ ଛାଡ଼ି ଗଛମୂଳେ, ପୋଖରୀ କୂଳେ ପଡ଼ି ଦେଶ କାମରେ ଲାଗିଥାଆନ୍ତି । ସତ୍ୟବାଦୀର ଚନ୍ଦନପୋଖରୀ ଉପର ଚନ୍ଦନ ମଣ୍ଡପରେ ନାରୀକର୍ମୀମାନଙ୍କର ଡେରା ପଡ଼ିଥାଏ । ସେମାନେ ରାତିରେ ସେଠାରେ ଆଶ୍ରୟ ନିଅନ୍ତି, ସକାଳୁ ଉଠିକରି ନିତ୍ୟକର୍ମ ସାରି ଶୋଭାଯାତ୍ରାରେ ଯାଇ ଅଫିମ ଦୋକାନ ସାମନାରେ ପିକେଟିଂ କରନ୍ତି । ପଞ୍ଝାପଞ୍ଝା ହୋଇ ଧରାହୋଇ ପୁଣି ଚାଲାନ୍ ହୁଅନ୍ତି । ତଥାପି ତାଙ୍କ ସଂଖ୍ୟା କମେନାହିଁ । ସ୍ୱାମୀ, ପିଲା, ଘରଦ୍ୱାର, ଧନସମ୍ପତ୍ତି ଛାଡ଼ି

ଇଟା ଚୁଲରେ ରନ୍ଧା ବାରମିଶା ମୁଠିଭିକ୍ଷା ଗୁଡ଼ଜଳର ଦରଫୁଟିଲା ଭାତ ମୁଠାଏ ବା ବଗଡ଼ା ଚୁଡ଼ା ମୁଠେ ଖାଇ ଭାରତର ସ୍ୱାଧୀନତା ସଂଗ୍ରାମରେ ନିଜକୁ ବଳି-ଦେବାର ଉତ୍ସାହରେ ପ୍ରଚାର ଓ ପିକେଟିଙ୍ଗ୍‌ରେ ମାତିଥାଆନ୍ତି ।

ସକାଳେ ନାରୀ କର୍ମୀମାନଙ୍କର ଶୋଭାଯାତ୍ରାର କୋଳାହଳରେ ତାଳ ଦେଇ ସତ୍ୟବାଦୀ ବଜାରରେ କାକଳି କରି କରି ଧଳା ଧଳା ଶ୍ୱେତ ରାଜହଂସ ଗୁଡ଼ାଏ ମନ୍ଥର ଗତିରେ ଚାଲି ଚାଲି ବେକଟିମାନ ଲମ୍ବାଇ ଚନ୍ଦନ ପୋଖରୀ ଭିତରକୁ ଡେଇଁପଡ଼ନ୍ତି । ବଜାରରେ ସେ ହଂସଗୁଡ଼ିକ ଗଲାବେଳେ ସମସ୍ତେ ପାଖେଇ ଯାଆନ୍ତି, ସେମାନଙ୍କୁ କେହି ବାଧା ଦିଅନ୍ତିନାହିଁ । ସମସ୍ତେ କହନ୍ତି— ସେ ମଣିମାଙ୍କ ହଂସ । ସେ ମଣିମା କିଏ ? ସେ କଥା ଜାଣନ୍ତି ଖୁବ୍ କମ୍ ଲୋକ । ଗାଁ ଗହଳପଟୁ ଆସୁଥିବା ଲୋକମାନେ ତାଙ୍କୁ ଚିହ୍ନନ୍ତି କି ନାହିଁ ସନ୍ଦେହ, କିନ୍ତୁ ତାଙ୍କ ହଂସକୁ ସମସ୍ତେ ଜାଣନ୍ତି ।

ମଣିମା, ଓଡ଼ିଶାର ମହାମହିମ ଗଜପତିଙ୍କର ବଂଶଧର । ଓଡ଼ିଶାର ସ୍ୱାଧୀନତା ରବି ବହୁକାଳୁ ଅସ୍ତମିତ ହୋଇଛନ୍ତି । ରାଜାଙ୍କ କ୍ଷମତା ଯାଇଛି; କିନ୍ତୁ ଜଗନ୍ନାଥଙ୍କ ଦେଉଳ ଥିବା ପର୍ଯ୍ୟନ୍ତ, ହିନ୍ଦୁଧର୍ମ ଥିବା ପର୍ଯ୍ୟନ୍ତ, ଗଜପତିଙ୍କ ନାମର ମହିମା ଥିବ । ତାଙ୍କ ନାମ ଓ ଅଙ୍କ ଅନୁସାରେ ପଞ୍ଜିକାରମାନେ ପାଞ୍ଜି ତିଆରି କରୁଥିବେ । ଜନ୍ମପଞ୍ଜିକା ଠାରୁ ଶ୍ରାଦ୍ଧଦିବସ, ପବପର୍ବାଣିଠାରୁ ଶୁଭଦିନ ନିର୍ଘଣ୍ଟ ପର୍ଯ୍ୟନ୍ତ ସବୁ ତାଙ୍କ ନାମ ଓ ପଞ୍ଜିକା ଉପରେ ନିର୍ଭର କରୁଥିବ । ଭାରତ ପରାଧୀନ ହେଲା, କର୍ପୂରଗଲା କିନ୍ତୁ କନା ପଡ଼ିରହିଲା । ସେଇ କନା ବା ସ୍ମୃତିକୁ ସ୍ମରଣ କରି ପୁଣି ଭାରତକୁ ସ୍ୱାଧୀନ କରିବା ପାଇଁ ଦେଶ ଜାଗ୍ରତ-ହେଲା । ପୁରୁଷ, ସ୍ତ୍ରୀ, ବାଳକ, ବାଳିକା, ଧନୀ, ଗରିବ ସମସ୍ତେ ଇଂରେଜଙ୍କ ଦମନଲୀଳା ନମାନି ଆନ୍ଦୋଳନରେ ଯୋଗଦେଲେ ।

ଦିନ ଆଠଟା ନଅଟା ବେଳକୁ ଯେତେବେଳେ ଅଫିମ ଦୋକାନ ଖୋଲିହୁଏ ଓ ନାରୀକର୍ମୀମାନେ ଚନ୍ଦନପୋଖରୀ ଉପରୁ ବାହାରି ବଡ଼ବଜାରର ଅଫିମ ଦୋକାନ ଆଡ଼କୁ ଗତିକରନ୍ତି, ସେତିକବେଳେ ଚନ୍ଦନପୋଖରୀର ପଶ୍ଚିମପଟରୁ ଜଣେ ଇଷତ୍ କୃଷ୍ଣକାୟ ବୃଦ୍ଧ ଅଳ୍ପ ଲଇଁଲଇଁ ପିଠି ପଟକୁ ହାତ ଦୁଇଟି ରଖି ବଡ଼ବଜାରଦେଇ ପୋଷ୍ଟଅଫିସ ଆଡ଼କୁ ମନ୍ଥର ଗତିରେ ଚାଲିଥାଆନ୍ତି ।

ତାଙ୍କର ପରିଧାନ ଖଣ୍ଡିଏ ଆଣ୍ଠୁଉଆଁ ଗ୍ରେଟିଆ ଲୁଗା, କାନ୍ଧରେ ଖଣ୍ଡିଏ କ୍ଷୁଦ୍ର ଧଳା ଦୋଷଡ଼ା ଚଦର ଓ ପଛପଟେ ବାଆଁ ହାତରେ ବନ୍ଧା ଗୋଟିଏ ବଡ଼ ହାତବନ୍ଧା ଘଣ୍ଟା । ସେଇ ଘଣ୍ଟାବିନା ତାଙ୍କୁ ଘରୁ ବାହାରିବା କେହି ଦେଖିନାହିଁ । ସେ ତାଙ୍କଠାରୁ ପୂରା ଅବିଚ୍ଛିନ୍ନ । ସେଇ ଘଣ୍ଟାଟି ବୋଧହୁଏ ତାଙ୍କ ବୁନିଆଦିର ଚିହ୍ନ । ବାପ ଅମଳରୁ ସେଇଟି ହାତରେ ବାନ୍ଧିଛନ୍ତି, ତାକୁ ସେ କେବେ ଛାଡ଼ି-ପାରିନାହାନ୍ତି । ଶୋଇଲେ ବି ମଧ୍ୟ ସେଇଟିକି ହାତରେ ବାନ୍ଧି ଶୁଅନ୍ତି । ବଡ଼ଲୋକ ଘର ପିଲାଙ୍କର ଏହିପରି ଗୋଟିଏ ଗୋଟିଏ ବୁନିଆଦି ଆକର୍ଷଣ ବା ଖିଆଲ ରହିଯାଇଥାଏ ।

ଏବେ ଏହିପରି ଦୃଷ୍ଟାନ୍ତର ଗୋଟିଏ ଘଟଣା କଟକରେ ଘଟିଥିଲା । ମୁହଁ ସନ୍ଧ୍ୟା ହୋଇଆସୁଛି । ହଠାତ୍ ପ୍ରବଳ ବର୍ଷା ଆସିଲା । ଜଣେ ଓକିଲ ତାଙ୍କ ଅଫିସକୁ ପାଣିଛାଟରୁ ରକ୍ଷା କରିବା ପାଇଁ ତାଙ୍କ ଦାଣ୍ଡଦୁଆରଟିକୁ ଦେଇଦେବାକୁ ଦୁଆର ମୁହଁକୁ ଆସିଲେ ଏବଂ ପିଣ୍ଡା କଣରେ କାଳେ କେଉଁ ମକ୍କେଲ ବସିଥିବ ବୋଲି ପିଣ୍ଡାକୁ ଚାହିଁ ଦେଖିଲେ । ପିଣ୍ଡା କଣରେ ଜଣେ ଲୋକ ବସିଥିଲା ଓ ତାର ଦୁଇପଟେ ଦୁଇଟା ନାଲି ବସ୍ତାପରି କଣ ଥୁଆହୋଇଥିଲା । ଓକିଲବାବୁ ସେ ଲୋକଟିର ପାଖକୁ ଗଲେ । ଲୋକଟି ଜଣେ ଉଚ୍ଚବଂଶୀୟ ଭଦ୍ରଲୋକ ପରି ମନେ-ହେଲେ, ତେଣୁ ତାଙ୍କୁ ସେ ଘର ଭିତରକୁ ଡାକିଆଣିଲେ । ଘର ଭିତର ଆଲୁଅରେ ଆସି ଦେଖିଲେ ନାଲିବସ୍ତା ପରି ଦିଶୁଥିବା ପଦାର୍ଥ ଦୁଇଟି ତାଙ୍କ ଦୁଇ କାଖରେ ଜକାହୋଇଛି ଓ ସେ ଦୁଇଟି ନାଲି ଭେଲଭେଟ କନାର ଗୋଲ ଗୋଲ ତକିଆ । ସେ ତାଙ୍କୁ ଚିହ୍ନିଲେ ।

ଭଦ୍ରଲୋକ ଏକ ଛୋଟ ଗଡ଼ଜାତର ପୂର୍ବତନ ଗାଦିହୀନ ରାଜା । ଆଗେ ତାଙ୍କ ପଛେ ପଛେ ଦୁଇଜଣ ଅନୁଚର ଏଇ ତକିଆ ଦୁଇଟି ଧରି ଯାଉଥିଲେ ଓ ସେ ଯେଉଁଠାରେ ବସୁଥିଲେ ତାଙ୍କ ଦୁଇପଟେ ଆଉଜାଇଦେଉଥିଲେ । କିନ୍ତୁ ସେ ଦିନ ଚାଲିଯାଇଛି । ଭାରତ ସ୍ୱାଧୀନ ହୋଇଛି, ରାଜତନ୍ତ୍ର ଲୋପହୋଇଛି, ଭତ୍ତା ଉଠିଯାଇଛି । ସେ ଏବେ ଦାଣ୍ଡର ଭିଖାରୀ । ତଥାପି ସେ ତକିଆ ଦିଓଟି ସେ ଛାଡ଼ିପାରିନାହାନ୍ତି, ଯୁଆଡ଼େ ଗଲେ ନିଜେ ଜାକି ବୁଲୁଛନ୍ତି; କାରଣ ସେ ତକିଆ ଦୁଇଟି ଦୁଇପଟେ ଥୁଆ ନ ହେଲେ ସେ ବସିପାରନ୍ତିନାହିଁ ।

ସେହିପରି ଘଣ୍ଟାଟି ହାତରେ ବନ୍ଧାହୋଇନଥିଲେ ମଣିମା ବାଟ ଚାଲି ପାରନ୍ତି ନାହିଁ । ମଣିମା ବାଟ ଚାଲୁଥିଲାବେଳେ ପଛରୁ ବନ୍ଧୁ ଦୂରରୁ ତାଙ୍କୁ ନ

ପଚ୍ଛରେ ଯେ କେଉଁ ସେ ଘଣ୍ଟାରୁ ସମୟ ଦେଖିପାରନ୍ତି । ବୃଦ୍ଧଙ୍କ ମନ୍ଦର ଗତି ଓ ହାତବନ୍ଧା ଘଣ୍ଟାର ସମୟ ଦୁହିଁକୁ ଲକ୍ଷକଲେ ମନେହୁଏ ସମୟ ଯେପରି ବୃଦ୍ଧଙ୍କୁ ଛାଡ଼ି ପଛକୁ ପଳାଇଯାଉଛି । ପଛରେ ବହୁତ କଣ୍ଟ ରହିଯାଇଥିବାର ସଙ୍କେତ ଦେଉଛି, କିନ୍ତୁ ସେ ସମୟ ସଙ୍ଗେ ତାଳ ଦେଇ ପାରୁ ନାହାନ୍ତି । ସେ ପଚ୍ଛ ଚିନ୍ତାରେ ଘାରିହେଉନାହାନ୍ତି କି ଭବିଷ୍ୟତର ସୁନେଲି ସ୍ୱପ୍ନ ଦେଖୁନାହାନ୍ତି । ସ୍ୱାଧୀନତା ଆନ୍ଦୋଳନ ଲାଗିଛି, ସମସ୍ତେ ପଛକୁ ଚାହିଁଛନ୍ତି, ପଛର ଗୌରବ କଥା ସ୍ୱାଧୀନ ଦେଶର ମାଟି ପବନ କଥା ବିଚାରି । ନୂତନ ଯୁଗର ସୃଷ୍ଟି ପାଇଁ ଆନ୍ଦୋଳନରେ ମାତିଉଠୁଛନ୍ତି ।

ବୃଦ୍ଧଙ୍କର କିନ୍ତୁ ସେ ଭାବନା ନାହିଁ । ସେ ଚାଲିବାକୁ ହେବ ବୋଲି ନିର୍ବିକାର ଭାବରେ ଘଣ୍ଟାଟି ଧରି ଚାଲିଛନ୍ତି । ତାଙ୍କ ଚାଲି ବନ୍ଦହେଲେ ଆଉ ସେ ଚାଲି ସନ୍ଧ୍ୟାବାଗି ବଜାରକୁ ଫେରିବେନି । ସେ ଘଣ୍ଟା ଚାବି ନ ଦେଇ ବନ୍ଦ ହେଲେ ଆଉ ଚାଲିବନି ।

ବଡ଼ବଜାରରେ ଅଫିମଦୋକାନରେ ପିକେଟିଂ କରୁଥିବା ଲୋକମାନଙ୍କ-ଠାରୁ ଟିକିଏ ଆଡ଼େଇହୋଇ ସେ ସେଇପରି ଧୀର ଗତିରେ ଆଗେଇ ଯାଆନ୍ତି । ରେଲଲାଇନ ଡେଇଁ ଜଗନ୍ନାଥରୋଡ଼ ପାରିହୋଇ ପୋଷ୍ଟଅଫିସ ହତା ଭିତରକୁ ଗଡ଼ନ୍ତି । ପୋଷ୍ଟଅଫିସ ପାହାଚ ଚଢ଼ି ବାରଣ୍ଡା ଉପରୁ ପୋଷ୍ଟଅଫିସ ଭିତର ଘଣ୍ଟାକୁ ଚାହିଁ ସେ ସମୟ ସଙ୍ଗେ ନିଜ ଘଣ୍ଟାର ସମୟ ମିଳାଇନିଅନ୍ତି । ଅଫିସ ଭିତରକୁ ଲାଗି ଦୁଆର ପାଖର ଆଲମାରି ତଳୁ ନିଜ ସ୍ୟାଇଘଡ଼ି ଓ ପରକଲମଟି ସଂଗ୍ରହ କରି, ପରକଲମଟି କାନ ମୂଳରେ ଖୋସି,ସ୍ୟାଇଘଡ଼ିଟି ଧରି ପୋଷ୍ଟଅଫିସ ବାରଣ୍ଡାର ଗୋଟିଏ ଖମ୍ବ ମୂଳେ ବସିରହନ୍ତି । କିଛି ସମୟ ଅପେକ୍ଷା କରିବା ପରେ ଟିକିଏ ଲୋକଙ୍କ ଭିଡ଼ ଜମିଲେ, କେଉଁ କେଉଁ ନିରକ୍ଷର ଲୋକ ତାଙ୍କ ନିକଟକୁ ଆସି ମନିଅର୍ଡ଼ରର ଠିକଣା ବା ଆତ୍ମୀୟଙ୍କ ନିକଟକୁ ଲେଖିବାକୁ ଚାହୁଁଥିବା ଚିଠିପତ୍ର ବା ଚିଠିପତ୍ରରେ ଠିକଣା ପ୍ରଭୃତି ଲେଖାଇନିଅନ୍ତି ।

ସୂର୍ଯ୍ୟ ଦେବତା ମୁଣ୍ଡ ଉପରକୁ ଉଠିଲେ, ସେଇ ଲେଖାଲେଖିରୁ ଯେଉଁ ଦୁଇ ଚାରି ପଇସା ମିଳେ ତାକୁ ଅଣ୍ଟାରେ ମାରି କଲମ ଦୁଆତ ଅଫିସ ଚପରାସି ଜମା କରି, ଆଲମାରି ତଳେ ରଖିଦେଇ ଧୀରେ ଧୀରେ ଯେଉଁ ବାଟେ ବାଟେ ଆସିଥିଲେ ସେଇ ବାଟେ ବାଟେ ଲେଉଟନ୍ତି । ସେ ପୋଷ୍ଟଅଫିସକୁ

ରୋଜଗାର ଉଦ୍ଦେଶ୍ୟରେ ଯାଆନ୍ତି କି ଲୋକଙ୍କ ଗୂଳଚଳନ ଲକ୍ଷ୍ୟ କରିବାକୁ ଯାଆନ୍ତି, କି କେବଳ ନିଜର ଘଣ୍ଟାଟି ମିଳାଇବାକୁ ଯାଆନ୍ତି ତାହା ଅନୁମାନ କରିବା କଷ୍ଟକର ।

ସେ ଘଣ୍ଟା କଣ୍ଟା ପରି ସବୁଦିନ ଠିକ୍ ସମୟରେ ସେଠାରେ ଆସି ପହଞ୍ଚନ୍ତି ଓ ଠିକ୍ ସମୟରେ ସେଠାରୁ ଉଠି ବାହାରିଯାଆନ୍ତି । ଅବଶ୍ୟ ତାଙ୍କର ଅନ୍ୟ ରୋଜଗାର ପନ୍ଥା କଣ କେହି ଜାଣନ୍ତି ନାହିଁ କି ଜାଣିବାକୁ ତାଙ୍କୁ ପ୍ରଶ୍ନ କରନ୍ତି ନାହିଁ । ସେ କେବେ କାହାକୁ ଧାର ଉଧାର ମାଗନ୍ତି ନାହିଁ, କି କାହା ଦୁଆରେ ହାତ ପତାନ୍ତି ନାହିଁ । ବଜାର ବାଟେ ଲେଉଟିଲା ବେଳକୁ ପରିବା, ତେଲ ଓ ମସଲା ଦୋକାନମାନଙ୍କ ଭିତରକୁ ସେ ପଶିବାର ଦେଖାଯାଏ । ସେ ଦୋକାନରେ ପଶିବା ସଙ୍ଗେ ସଙ୍ଗେ ଯେତେ ଗ୍ରାହକ ଥାଆନ୍ତି ପଛକେ ଦୋକାନୀ ଠିଆହୋଇଯାଏ, ଅନ୍ୟ ଚିହ୍ନିବା ଲୋକମାନେ ମଧ୍ୟ ଠିଆହୋଇଯାଆନ୍ତି ବା ଫାଙ୍କେଇଯାଆନ୍ତି । ସେମାନଙ୍କ ଭିତରୁ କେହି କେହି "ମଣିମା ଓଳଗି" ବୋଲି କହିବାର ମଧ୍ୟ ଶୁଣାଯାଏ । ନଚିହ୍ନିବା ଲୋକମାନେ ହୁଏତ ଏସବୁ ଦେଖି ନିଜ ଭିତରେ ଠାରାଠାରିହୋଇ ସେ ଲୋକ କିଏ ବୋଲି ପଚରାପଚରି ହୁଅନ୍ତି । ଦୋକାନମାନଙ୍କରୁ ବାହାରି ସେ ଘରକୁ ଫେରିଆସନ୍ତି ।

ସଭାସମିତି ବା ଶୋଭାଯାତ୍ରା ପଟୁଆର ପ୍ରଭୃତିରେ କେବେ ତାଙ୍କୁ ଦେଖିବାକୁ ମିଳେନାହିଁ । ତାଙ୍କ ନଅରଟି ଚନ୍ଦନପୋଖରୀର ପଶ୍ଚିମପଟେ ଓ ପାନବଜାରର ପଛରେ ଥିବାରୁ ରାସ୍ତାକୁ କିମ୍ବା ପୋଖରୀ ତୁଠକୁ ଦେଖାଯାଏନାହିଁ । ନଅରଟି ଲୋକଲୋଚନର ଅଗୋଚରରେ ଥିବା ପରି ଲୁଚିରହିଥାଏ । ତେଣୁ ସେ ସେଠି ଯାଇ କଅଣ କରନ୍ତି, କିପରି ସମୟ କଟାନ୍ତି ସେ କଥା ପ୍ରାୟ କେହି ଜାଣନ୍ତି ନାହିଁ ।

ଚନ୍ଦନପୋଖରୀର ପଶ୍ଚିମପଟ କୂଳକୁ ଯାଇ ଗୁହାଁଲେ ଭଙ୍ଗା ପାଚେରୀ ଦିଶେ, କିନ୍ତୁ ଉଆସ ପୂରା ଦିଶେ ନାହିଁ । କାନ ଡେରି ଶୁଣିଲେ ବେଳେ ବେଳେ ନାନା ପଶୁପକ୍ଷୀଙ୍କ ଶବ୍ଦ କେବଳ ଶୁଣାଯାଏ । ଜନମାନବ କେହି ଦେଖା ଯାଆନ୍ତି ନାହିଁ, କାହାରି ଶବ୍ଦ ମଧ୍ୟ ଶୁଭେନାହିଁ ।

# ଦୁଇ

କଣାସ ଗଡ଼ । ନଅର ସାମନାରେ ଲୋକଙ୍କ ଭିଡ଼ । ପାତ୍ରମନ୍ତ୍ରୀ, ସଭ୍ୟ-ସଦ୍‌ବୃନ୍ଦ ଓ ନାଗରିକମାନେ ଧାଡ଼ି ବାନ୍ଧି ଛିଡ଼ାହୋଇଛନ୍ତି । ନଅର ଦୁଆରେ ପୂର୍ଣ୍ଣକୁମ୍ଭ ବସିଛି । ଶଙ୍ଖ ଓ ହୁଳହୁଳିରେ ଦାଣ୍ଡ କମ୍ପୁଛି । ପୁରବାସିନୀମାନେ ଝରକା ଫାଙ୍କରେ ଉତ୍‌ଫୁଲ୍ଲ ଚିତ୍ତରେ ଦାଣ୍ଡକୁ ଚାହିଁରହିଛନ୍ତି । ରାଜା, ସୈନ୍ୟ ସାମନ୍ତ ହାତୀ ଘୋଡ଼ା ଛତି ଧରି ନଅରକୁ ଲେଉଟୁଛନ୍ତି ।

ବହୁତ ଦିନ ହେଲା, ଶତ୍ରୁ ସୈନ୍ୟ ସଙ୍ଗେ ଯୁଦ୍ଧ କରିବାକୁ ଓଡ଼ିଶାର ଗଜପତିଙ୍କ ଆଦେଶରେ ସେ ସୀମା ଅଞ୍ଚଳରେ ଛାଉଣୀ ପକାଇଥିଲେ । ଏବେ ବିଜୟଗୌରବରେ ଶଙ୍ଖ ତୁରୀ ବଜାଇ ଲେଉଟାଣି ଆସୁଛନ୍ତି । ପଛରେ ସେନାପତି ଓ ଅସଂଖ୍ୟ ଖଣ୍ଡାୟତ ଢାଲ ଖଣ୍ଡା ବର୍ଚ୍ଛା ଧରି ପାହୁଲ ପକାଇ ପକାଇ ଆସୁଛନ୍ତି । ରାଜା ସମସ୍ତ ଅଭ୍ୟର୍ଥନା ସହିତ ନଅରକୁ ବକେଇକରି ରାଣୀମହଲ ଆଡ଼କୁ ଚାଲିଲେ । ରାଜା ପ୍ରାୟ ଏପରି ଯୁଦ୍ଧକୁ ଯାଆନ୍ତି ଓ ତାଙ୍କ ଆଗମନକୁ ପାଟରାଣୀ ଉଦ୍‌ଗ୍ରୀବ ନୟନରେ ଚାହିଁରହିଥାଆନ୍ତି । ରାଜା, ରାଣୀମହଲକୁ ପ୍ରବେଶ କରିବା ପୂର୍ବରୁ ରାଣୀ ତାଙ୍କୁ ଆସି ପାଛୋଟିନିଅନ୍ତି । କିନ୍ତୁ କାହିଁ—ଏଥର ମହାରାଣୀଙ୍କର ଦେଖାନାହିଁ !

ରାଜା ସ୍ତମ୍ଭିତ ହୋଇ ରାଣୀମହଲରେ ସନ୍ତର୍ପଣରେ ପ୍ରବେଶକଲେ । ମନରେ କେତେ କଅଣ ଆଶଙ୍କା ଖେଳିଗଲା । ପାଟରାଣୀଙ୍କର ଶରୀର ଖରାପଠାରୁ ତାଙ୍କ ଅନୁପସ୍ଥିତିରେ ଅନ୍ୟ କୌଣସି ଅଶୁଭ ଘଟଣା ଘଟିଥିବା ଆଶଙ୍କାକରି ସେ ଶଙ୍କି ଶଙ୍କି ଭିତରକୁ ଚାଲିଲେ । ପୂଜାଘରେ ରାଣୀ ଗମ୍ଭୀର ବଦନରେ, ନିଶ୍ଚଳ ଭାବରେ ଉପାସନାରତ । ରାଜା ନୀରବରେ କିଛିକ୍ଷଣ ଠିଆ ହୋଇ ରହିବା ପରେ, ରାଣୀଙ୍କ ଚକ୍ଷୁ ଖୋଲିଲା । ସେ ତାଙ୍କୁ ବସିବାକୁ ନିର୍ଦ୍ଦେଶ ଦେଲେ । ପୂଜା ଉପାସନା ପରେ ରାଜାରାଣୀ ଦୁହେଁ ମନ୍ଦିର ତ୍ୟାଗ କରି ମହାରାଣୀଙ୍କ ପଲଙ୍କରେ ବସିଲେ ।

ରାଣୀ ଛଳ ଛଳ ଚକ୍ଷୁରେ କହିଲେ, ଗୋପାଳ ତୁମ୍ଭଙ୍କର ମଙ୍ଗଳ କରନ୍ତୁ । ଆଉ କେତେଦିନ ଏପରି ବିଷୟ ବାସନାରେ ଲିପ୍ତହୋଇ ତୁମ୍ଭେ ଏପରି ଯୁଦ୍ଧ

ମରଗ୍ରହରେ ମନ ବଳାଇଥିବେ ? ଗୋପାଳଙ୍କୁ ଚିହ୍ନିବେ ନାହିଁ ? ତାଙ୍କର ଅନୁପସ୍ଥିତି ବେଳେ ମୁଁ କେବଳ ତାଙ୍କ କଥା ହିଁ ଭାବୁଥିଲି । ସୁବର୍ଣ୍ଣା ବୋଲି ନିଜକୁ ଦୋଷ ଦେଇ କୋଡ଼ରେ ଗୋଟିଏ ବାଳଗୋପାଳ ପାଇଁ ଜଗନ୍ନାଥଙ୍କ ପାଖେ ଅଳିକରୁଥିଲି । ଦିନରାତି ଥିଲା ସେଇ ମୋର ଏକମାତ୍ର ଚିନ୍ତା । ଦିନେ ରାତିରେ ଶୋଇଛି, ସ୍ୱପ୍ନରେ ମୋ କୋଳରେ ଗୋଟିଏ ଗ୍ରେଟିଆ ପିଲା କଇଁକଇଁ ହୋଇ କାନ୍ଦିଉଠିଲା । ମୁଁ ଦେଖିଲି ସେ ପିଲାଟି ବଇଁଶୀଟିଏ ହାତରେ ଧରି ମୟୂରଚୂଳ ମୁକୁଟ ପିନ୍ଧି ମୋତେ ଚାହିଁଛି । ସେ ସଙ୍ଗେ ସଙ୍ଗେ ମୋତେ କହିଲା— ମୋତେ ଚିହ୍ନି ପାରୁନାହଁ ? ତୋର ପୁଅ କିଏ ହେବ ? ମୁଁ ତୋର ପୁଅ । ରାଜାଙ୍କୁ କହ ମୋତେ ଆଣିବେ । ମୁଁ କେତେ ଦିନ ତୁମ ପାଖରୁ ଦୂରରେ କନ୍ଦଳବାଣ୍ଟରେ ପଡ଼ିଥିବି ? ମୋର ସ୍ୱପ୍ନ ଭଙ୍ଗହେଲା, ଦେଖିଲି ପାଖରେ କେହି ନାହିଁ, କେବଳ ଚନ୍ଦନ ଓ ଧୂପର ବାସ ଘରଆଡ଼େ ଚହଟୁଛି । ସେହିଦିନଠାରୁ ମୁଁ ପୂଜାରେ ଲାଗିଛି, ଆଉ କେଉଁଥିରେ ମନ ଲାଗୁନାହିଁ । ତୁମ ଆଗମନକୁ ହିଁ ଅପେକ୍ଷା କରି ଏହି ମନ୍ଦିରରେ ବସିରହିଛି । ତୁମେ ମୋ କଥା ରଖିବନି ? ଯାଅ, ଆମର ଆଉ ଏ ରାଜ୍ୟ ଦରକାର ନାହିଁ, ଏ ବୃଥା ସମ୍ଭୋଗ ଦରକାର ନାହିଁ । ତୁମେ କନ୍ଦଳବାଣି ଯାଇ ଗୋପାଳଙ୍କୁ ଘେନିଆସ ।

ରାଜା ଚିନ୍ତାରେ ବୁଡ଼ିରହିଲେ । କିଛିଦିନ ପରେ ଜଣେ ଦୁଇଜଣ ମାତ୍ର ପାର୍ଶ୍ୱଚର ଧରି ଗୋପନରେ କନ୍ଦଳବାଣି ଉଦ୍ଦେଶ୍ୟରେ ଯାତ୍ରାକଲେ । କନ୍ଦଳ-ବାଣ୍ଟରେ ଗୋଟିଏ ଖଣ୍ଡିଆ ଦେଉଳରେ ଗୋପାଳଙ୍କର ଛଅଫୁଟିଆ କଳା ମୁଗୁନିପଥରର ବଂଶୀଧାରୀ ସୁନ୍ଦର ମୂର୍ତ୍ତି । ରାଜା ପହଞ୍ଚିବା ସଙ୍ଗେ ସଙ୍ଗେ ଯେପରି ହାତର ବଂଶୀଟି ବାଜିଉଠିଲା । ଗୋପାଳଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ନିର୍ଗତ ହେଲା ପରି ଲାଗିଲା । ଭକ୍ତର ଭଗବାନ । ଥରେ ଭକ୍ତିର ଉଦ୍ରେକ ହେଲେ ମନ ଭଗବାନଙ୍କ ନିକଟକୁ ଦଉଡ଼େ । ମନୁଷ୍ୟ ଭୋଗବିଳାସ, ଗର୍ବ ଦମ୍ଭ ସବୁ ଭୁଲିଯାଇ ଭକ୍ତିମାର୍ଗରେ ଭାସିଗଲେ, ପଥରର ଦେବତା ତାକୁ କଥା କହେ, ସେ ତାଙ୍କଠାରୁ ନିର୍ଦ୍ଦେଶ ପାଏ, ସାନ୍ତ୍ୱନା ପାଏ, ଦୁର୍ଦ୍ଦିନରେ ଅଭୟ ପାଏ । ରାଜାଙ୍କର ପ୍ରାଣ ଭକ୍ତିରେ ଉତ୍ଫୁଲ୍ଲ ହୋଇଉଠିଲା ।

ସେଇଦିନଠାରୁ ତାଙ୍କ ଜୀବନରେ ହେଲା ଘୋର ପରିବର୍ତ୍ତନ ।

ଓଡ଼ିଶାରେ ବହୁ ରାଜ ବଂଶ ବଦଳିଛି । ସୂର୍ଯ୍ୟବଂଶଠାରୁ ଭୋଇବଂଶ ପର୍ଯ୍ୟନ୍ତ କେତେ ରାଜବଂଶ ରାଜତ୍ୱ କରିଯାଇଛନ୍ତି । ଗଙ୍ଗାଠାରୁ ଗୋଦାବରୀ

ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଯାଇଛନ୍ତି । ପୁଣି ରାଜବଂଶର ଲୋକମାନେ ରାଜ୍ୟକୁ ଖଣ୍ଡଖଣ୍ଡକରି ଅତି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଓ ଗଡ଼ଜାତରେ ପରିଣତ କରିଯାଇଛନ୍ତି ।

ସତ୍ୟବାଦୀ ମନ୍ଦିର ପ୍ରତିଷ୍ଠାତା, ଭୋଇବଂଶ ଗଜପତି ଦ୍ବିତୀୟ ରାମଚନ୍ଦ୍ର-ଦେବଙ୍କ କନିଷ୍ଠ ପୁତ୍ର । ରାମଚନ୍ଦ୍ରଦେବ ତାଙ୍କୁ ସାମନ୍ତରାଜା ଭାବରେ ରଖାଇଥିଲେ । ତାଙ୍କର ରାଜନଅର ଗଡ଼ସାହି ଭାବରେ ଏବେ ବି ରତ୍ନଚୀର (ଲୁଣାନଈ) ଓ ଭାର୍ଗବୀ ନଦୀର ମିଶ୍ରଣ ସ୍ଥଳ ସତ୍ୟବାଦୀ ଥାନାର କଣାସ ନିକଟରେ ପଡ଼ିରହିଛି । ତାର ପାଖରେ, ଆଗରେ ବଡ଼ ବଡ଼ ଉପାଧିଧାରୀ ଖଣ୍ଡାୟତମାନଙ୍କର ବଂଶଧର-ମାନେ ଏବେ ବି ରହିଛନ୍ତି । ମହାରବସ୍ତ, ସାନପୁଟ, ବଡ଼ପୁଟଠାରୁ ଖୋର୍ଦ୍ଧା ପର୍ଯ୍ୟନ୍ତ ବଡ଼ ବଡ଼ ଖଣ୍ଡାୟତ ଗ୍ରାମମାନ ଲାଗିରହିଛି ।

ସେତେବେଳେ ସାମନ୍ତ ରାଜାମାନଙ୍କର ପ୍ରତିପତ୍ତି କିଛି କମ ନଥିଲା । ସେମାନେ ଗଜପତିଙ୍କୁ ବିଭିନ୍ନ ସମୟରେ ସାହାଯ୍ୟ କରୁଥିଲେ ମଧ୍ୟ ଆଂଶିକ ସ୍ୱାଧୀନ ଥିଲେ । କଣାସ ଗଡ଼ ସେତେ ଦୁର୍ଭେଦ୍ୟ ବୋଲି ମନେହେଉଥିଲା । ହାତୀ ଘୋଡ଼ା ଧନରତ୍ନର ଅଭାବ ନ ଥିଲା । ସୁଶିକ୍ଷିତ ସେନାବାହିନୀ ଓ ଚିଲିକାର ନୌବାହିନୀ ସବୁବେଳେ ଦେଶରକ୍ଷା ପାଇଁ ଜାଗ୍ରତ ଥିଲେ ।

ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀ ବେଳକୁ ଗଜପତିମାନଙ୍କର ଅବସ୍ଥା ଏକବାରକେ ଖରାପ ହୋଇଆସିଲା । ଘନ ଘନ ପଠାଣୀ ମରହଟ୍ଟା ଓ ମୁସଲ-ମାନ ଆକ୍ରମଣରେ ଓଡ଼ିଶା ଖଣ୍ଡବିଖଣ୍ଡିତ ହେବାକୁ ଲାଗିଲା । ଧର୍ମପ୍ରଚାରକ ମାନଙ୍କ ପ୍ରଭାବ ମଧ୍ୟ ଓଡ଼ିଶାର ଶାସକମାନଙ୍କ ଉପରେ ପଡ଼ି ସେମାନଙ୍କ ବୀରତ୍ୱକୁ ତ୍ୟାଗର ଚରମ ସ୍ତରରେ ପରିଣତ କରିଥିଲା । ଚୈତନ୍ୟଙ୍କ ପ୍ରଭାବରେ ରାୟ ରାମାନନ୍ଦଙ୍କ ପରି ମହାବୀର ସେନାପତି ଯୁଦ୍ଧ ଓ ରାଜ୍ୟ ରକ୍ଷା ପ୍ରତି ସଂପୂର୍ଣ୍ଣ ନିର୍ଲିପ୍ତ ହୋଇପଡ଼ିଥିଲେ, ଯାହା ଫଳରେ ଗଜପତି ପ୍ରତାପରୁଦ୍ରଙ୍କ ସାମ୍ରାଜ୍ୟଠାରୁ ଦକ୍ଷିଣାଞ୍ଚଳ ସମ୍ପୂର୍ଣ୍ଣରୂପେ ଶତ୍ରୁ ହାତକୁ ଚାଲିଯାଇଥିଲା ।

କଣାସ ଗଡ଼ର ନରପତି, ଅଖଣ୍ଡ ପ୍ରତିପତ୍ତି, ଅସାମାନ୍ୟ ବୀରତ୍ୱ ଓ ଅମାପ ସମ୍ପତ୍ତି ସତ୍ତ୍ୱେ "କନ୍ଦଳବାଣ୍ଟ" ଠାରେ ଥିବା ଗୋପାଳଙ୍କ ନିକଟକୁ ଟାଣିହୋଇ ପରମ ଭକ୍ତରେ ପରିଣତ ହେଲେ । ରାଜା ଓ ରାଣୀ ଭକ୍ତିରେ ପାଗଳହୋଇ ଗୃହୀ ସନ୍ନ୍ୟାସୀ ହେଲେ । ସେଇଦିନଠାରୁ କଣାସ ରାଜବଂଶର ପ୍ରତିପତ୍ତି ଯାଇଛି । ବିରାଟ କଣାସ ଗଡ଼ ସତ୍ୟବାଦୀର କୁଟୀର-ନଅରରେ ପରିଣତ ହୋଇ ନିର୍ବାଣ ଲଭିଛି ।

ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇ, ତାଙ୍କର ବଂଶଧରମାନେ ବୌଦ୍ଧଧର୍ମ ପ୍ରଚାରକାରୀ 'ଭିକ୍ଷୁ' ସନ୍ନ୍ୟାସୀରେ ପରିଣତ ହେଲାପରେ, ସେ ବଂଶ ମଧ୍ୟ ଧର୍ମ, ତ୍ୟାଗ ଓ ମୁକ୍ତ ଭିତରେ ନିଜକୁ ଲୀନକରିଯାଇଛନ୍ତି । ରାଜ୍ୟ ଯାଇଛି, କିନ୍ତୁ ଦୁର୍ବଳ କରବାଳ ଯୋଗୁ ନୁହେଁ, ତାହା ଯାଇଛି ଭକ୍ତିର ଅଦମ୍ୟ ପିପାସା ଯୋଗୁ—

ଏବେ ଏସବୁ ସ୍ମରଣ କରି ପୂର୍ବେ ଙ୍କର ଗୀତି ଗାଉଥିବା ଭାଟ ଏ ହପଦ ଗାଇ ମାରନ୍ତି ରହେ ।

ଦୁର୍ବଳ ନୁହେଁ ସେନ୍ୟ କରବାଳ
ଦୁର୍ବଳ ନୁହେଁ ମନ
ଭକତ ଚମ୍ପକେ ଖସିପଡ଼େ ଅସି
ନୁଆଁ ବଳେ ବଳବାନ ।
ଦେବ-ଦାସ ପଦ ହଅଇ ଆମୋଦ
ତୁଚ୍ଛ ଲାଗେ ରାଜପଦ
ଦେବ ପଦତଳେ ମନହଏ ତାଳ
ଭକତରେ ହୋଇ ଅନ୍ଧ ।

ତ୍ରିଭଙ୍ଗ ଠାଣିରେ ଠିଆହୋଇଥିବା କଳା ମୁଗୁନିପଥରର କମନୀୟ ଗୋପାଳ, ସେ ଆଜି ସତ୍ୟବାଦୀ ସାକ୍ଷୀଗୋପାଳ ମନ୍ଦିରର ଦେବମୂର୍ତ୍ତି । ସେ ମୂର୍ତ୍ତି ଏବେ ଜଗତର ମୂକ ସାକ୍ଷୀ ରୂପେ ଠିଆହୋଇଛନ୍ତି । ପଣ୍ଡାମାନଙ୍କ ନିର୍ଦ୍ଦେଶ ଅନୁସାରେ ଯାତ୍ରୀମାନେ ଜଗନ୍ନାଥ ଦର୍ଶନ ପରେ ପୁଣ୍ୟ ଅର୍ଜନ ପାଇଁ ସତ୍ୟବାଦୀ ଆସି ଗୋପାଳଙ୍କୁ ସାକ୍ଷୀରଖି ଘରକୁ ଲେଉଟୁଛନ୍ତି । ଏ ମୂର୍ତ୍ତି କିନ୍ତୁ ମୂକସାକ୍ଷୀଟିଏ ନୁହନ୍ତି—ଇଏ ଏକ ଜୀବନ୍ତ ପ୍ରତିମା । ଏହାଙ୍କ ବିଷୟରେ ପୌରାଣିକ କିମ୍ବଦନ୍ତୀ ଓ ଇତିହାସର ପୃଷ୍ଠା ଏବେ ବି ପ୍ରାଣବନ୍ତ ହୋଇ ରହିଛି ।

ପୁରାଣ ଅନୁସାରେ ଇନ୍ଦ୍ରଦ୍ୟୁମ୍ନ ଗଢ଼ିଥିବା ଦେଉଳ ଓ ସମୁଦ୍ରରେ ଭାସିଆସିଥିବା ଦାରୁବ୍ରହ୍ମ ଜଗନ୍ନାଥ ମୂର୍ତ୍ତି ପ୍ରତିଷ୍ଠା ନ ହୋଇ, ବହୁ ଯୁଗ ସେ ଦେଉଳ ପ୍ରୋଥିତହୋଇ ରହିବା ପରେ ଗାଲମାଧବ ରାଜା ତାହାକୁ ଆବିଷ୍କାର କରିଥିଲେ ।

ସେହିପରି ଦ୍ୱାଦଶ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ ଗୋପାଳଙ୍କୁ ଆବିଷ୍କାର କରିଥିଲେ ବୃନ୍ଦାବନରେ ରାଜା ଜନ୍ମମାଧବ । ଜନ୍ମମାଧବ ରାଜାଙ୍କ ପାଟରାଣୀ

ଲକ୍ଷ୍ମୀବାଈ ପରମ ଗୋପାଳଭକ୍ତ ଥିଲେ । ତାଙ୍କର ପୂଜା ଆରାଧନା ପାଇଁ ଗୋଟିଏ ସୁନ୍ଦର ଗୋପାଳ ମୂର୍ତ୍ତି ଗଢ଼ିବାକୁ ରାଜା ଆଦେଶ ଦେଲେ । କାରିଗର- ମାନେ ପନ୍ଦରଟି ସୁନ୍ଦର ଗୋପାଳ ମୂର୍ତ୍ତି ଗଢ଼ି ନଅରକୁ ଆଣିଲେ । ରାଜା-ରାଣୀ ସେ ମଧ୍ୟରୁ କେଉଁଟିକି ବାଛି ଗ୍ରହଣ କରିବେ ଚିନ୍ତାକଲେ । ସେତିକିବେଳେ ପ୍ରହରୀ ଆସି ଖବର ଦେଲା ଯେ, ଜଣେ କେଉଟ ଯମୁନା କୂଳରୁ ଗୋଟିଏ ବଡ଼ ଗୋପାଳମୂର୍ତ୍ତି ପାଇଛି— ସେ ନିଜ ଲୋକଙ୍କ ଦ୍ୱାରା ବହୁ କଷ୍ଟରେ ସେ ମୂର୍ତ୍ତିଟି ଆଣି ରାଜାଙ୍କ ସାକ୍ଷାତ ପାଇଁ ସିଂହଦ୍ୱାରରେ ଅପେକ୍ଷା କରୁଅଛି । ବଡ଼ ବଡ଼ ନାମଜାଦା କାରିଗରଙ୍କ ଗଢ଼ା ମୂର୍ତ୍ତି ସାଙ୍ଗରେ ନଈବାଲିରୁ ପାଇଥିବା କେଉଟର ମୂର୍ତ୍ତିଟି ବା କେଉଁ ପାସଙ୍ଗରେ ପଡ଼ିବ ଭାବି ରାଜା କେଉଟକୁ ଫେରିଯିବାକୁ ଆଦେଶ ଦେବାକୁ ବାହାରିଥିଲେ । କିନ୍ତୁ ରାଣୀଙ୍କର କୌତୂହଳ ନିବାରଣ ପାଇଁ ମୂର୍ତ୍ତିଟି ଦରବାରକୁ ଅଣାଇବା ପାଇଁ ଆଦେଶ ଦେଲେ । ସେ ମୂର୍ତ୍ତିର ଦର୍ଶନରେ ସଙ୍ଗେ ସଙ୍ଗେ ରାଜା ଓ ରାଣୀ ଅଭିଭୂତ ହୋଇପଡ଼ିଲେ । ସେଇ ମୂର୍ତ୍ତି ପାଇଁ ସ୍ୱତନ୍ତ୍ର ଦେଉଳଟିଏ ଗଢ଼ାହେଲା । ମନ୍ଦିର ପ୍ରତିଷ୍ଠା ପରେ ଲକ୍ଷ୍ମୀବାଈ ନିଜର ଇଷ୍ଟଦେବତା ରୂପେ ତାଙ୍କୁ ପୂଜାକଲେ ।

ଏହାର ବହୁଯୁଗ ପରେ ଐତିହାସିକଙ୍କ ମତରେ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ଗୋପାଳ ବୃନ୍ଦାବନ ଛାଡ଼ି କାଞ୍ଚି ଆସିଲେ । ଗୋପାଳ ବୃନ୍ଦାବନ ଛାଡ଼ି କାଞ୍ଚି ଆସିବା ଗୋଟିଏ ପୌରାଣିକ କିମ୍ବଦନ୍ତୀ । ଭକ୍ତର ଭଗବାନ, ସତ୍ୟବାଦୀର ଗୋପାଳ, ବୃନ୍ଦାବନରୁ ଭକ୍ତର ପଛେ ପଛେ ଚାଲି ଚାଲି ସାକ୍ଷୀ ଦେବାପାଇଁ ଆସି କାଞ୍ଚି ନିକଟରେ ପହଞ୍ଚିଥିଲେ । ଭକ୍ତ ପଛକୁ ଚାହିଁଦେବାରୁ ସେ ନଈ ଭିତରେ ପଥର ପାଲଟି ଯାଇଥିଲେ । ସେଠାରୁ କାଞ୍ଚି ନରପତି ତାଙ୍କୁ ନେଇ ଦେଉଳଟିଏ କରାଇ ପୂଜା ଆରାଧନାର ବ୍ୟବସ୍ଥା କରିଥିଲେ ।

୧୪୭୪ ଖ୍ରୀଷ୍ଟାବ୍ଦରେ ପୁରୀର ଗଜପତି ରାଜା ପୁରୁଷୋତ୍ତମ ଦେବ ଜଗନ୍ନାଥ ବଳଭଦ୍ରଙ୍କ ସାହାଯ୍ୟରେ କାଞ୍ଚି ବିଜୟ କରି ପଦ୍ମାବତୀଙ୍କ ସଙ୍ଗେ ସେଠାରୁ ଗଣେଶ ଓ ସତ୍ୟବାଦୀର ଗୋପାଳଙ୍କୁ ସଙ୍ଗରେ ଘେନି ଆସିଥିଲେ । ସେ ଗଣେଶ ମୂର୍ତ୍ତିଟି ପୁରୀର ଜଗନ୍ନାଥଙ୍କ ମନ୍ଦିରରେ ରହି ଏବେବି ପୂଜାପାଉଛନ୍ତି । କାଞ୍ଚି ନରପତି ସତ୍ୟ ରକ୍ଷା କରିନଥିବାରୁ ପୁରୁଷୋତ୍ତମ ଦେବ ପ୍ରତିଶୋଧ ନେଇ କାଞ୍ଚି ଜୟକରି ପଦ୍ମାବତୀଙ୍କୁ ଚଣ୍ଡାଳକୁ ଦେବାକୁ ତାଙ୍କ ମନ୍ତ୍ରୀଙ୍କୁ ଆଦେଶ ଦେଲେ । ସତ୍ୟବାଦୀ ଗୋପାଳ ସତ୍ୟରକ୍ଷା ପାଇଁ ମନ୍ତ୍ରୀଙ୍କୁ ସ୍ୱପ୍ନରେ

ଦେଖାଦେଇ ପଦ୍ମାବତୀଙ୍କୁ 'ଛେଉପହରା' ବେଳେ ପୁରୁଷୋତ୍ତମଙ୍କୁ ଅର୍ପଣ କରିବା ପାଇଁ ନିର୍ଦ୍ଦେଶ ଦେଲେ । ସେଇଦିନଠାରୁ ଗଜପତିମାନେ ସତ୍ୟବାଦୀ ଗୋପାଳଙ୍କୁ ନିଜ ପାଖରେ ରଖି ଗୃହଦେବତା ଭାବରେ ପୂଜାକରୁଥିଲେ ।

ପୁରୁଷାନୁକ୍ରମେ ଉତ୍କଳର ନରପତିମାନେ ସେମାନଙ୍କର ଉତ୍‌ଥାନ ପତନ ସଙ୍ଗେ ସଙ୍ଗେ, ବିଶେଷତଃ ଘନ ଘନ ପଡ଼ୋଶୀ ମୁସଲମାନ ଆକ୍ରମଣରୁ ରକ୍ଷା କରିବାକୁ, ଗୋପାଳ ମୂର୍ତ୍ତିଙ୍କୁ ବିଭିନ୍ନ ସ୍ଥାନରେ ରଖି ପୂଜାର ବ୍ୟବସ୍ଥା କରି-ଥିଲେ । ପ୍ରଥମେ ଶତାଧିକ ବର୍ଷ ସେ କଟକ ରାଜବାଟୀରେ ଥିଲେ । ସେଠାରେ ହିଁ ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ (ଖ୍ରୀ:୧୪୮୦) ଚୈତନ୍ୟ ମହାପ୍ରଭୁ ତାଙ୍କର ପୂଜା ଆରାଧନା କରିଥିଲେ । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାରେ ମୁସଲମାନ ଦୌରାତ୍ମ୍ୟ ବଢ଼ି ରାଜଶକ୍ତି କ୍ରମେ ଦୁର୍ବଳ ହୋଇଆସିଲା ଖ୍ରୀ:୧୫୬୪ରେ ଗଜପତି ଗୋପାଳଙ୍କୁ ଆଣି ପ୍ରଥମେ ଖୋର୍ଦ୍ଧା ଗଡ଼ରେ ଓ ପରେ ଜଟଣୀ ନିକଟସ୍ଥ ରଥୀପୁର ଗ୍ରାମରେ ରଖାଇଲେ । ଶେଷରେ ୧୬୭୫ ଖ୍ରୀଷ୍ଟାବ୍ଦରେ ଗୋପାଳଙ୍କୁ ନେଇ ଚିଲିକା କୂଳ କନ୍ଦଳବାଇରେ ଲୁଚାଇରଖିଲେ ।

କଣାସ ଗଡ଼ର ସାମନ୍ତରାଜା କନ୍ଦଳବାଇରୁ ଫେରି ତାଙ୍କର ପିତା ଗଜପତି ରାମଚନ୍ଦ୍ର ଦେବଙ୍କ ସଙ୍ଗେ ସାକ୍ଷାତ୍ ପରାମର୍ଶ କରିବା ପରେ ଗଜପତି ରାମଚନ୍ଦ୍ରଦେବ ଗୋପାଳଙ୍କୁ କନ୍ଦଳବାଇରୁ ଆଣି ପୁରୀ ମନ୍ଦିରରେ ରଖାଇବାର ଆଦେଶଦେଲେ । କଣାସ ରାଜା ଓ ରାଣୀ କଣାସ ଗଡ଼ ଛାଡ଼ି ସନ୍ନ୍ୟାସୀ ଓ ସନ୍ନ୍ୟାସିନୀ ବେଶରେ ଗୈରିକବସ୍ତ୍ର ପରିଧାନ କରି ଗୋପାଳଙ୍କର ସେବା କରିବା ପାଇଁ କଣାସ ଛାଡ଼ି ପୁରୀ ଚାଲିଆସିଲେ । ଗୋପାଳ ଅନ୍ୟ ଦେବ ଦେବୀଙ୍କ ଗହଣରେ ପୁରୀମନ୍ଦିରରେ ସ୍ଥାପିତ ହେଲେ ।

ପୁରୀର ମନ୍ଦିରରେ ରହିବାକୁ ଗୋପାଳଙ୍କୁ ଭଲ ଲାଗିଲା ନାହିଁ । ବୃନ୍ଦାବନର ପଞ୍ଚବନ ତାଙ୍କର ମନେପଡ଼ିଲା । ସେ ମନ୍ଦିରରେ ରହିବା ଦିନରୁ ବହୁ ଅଘଟଣ କାର୍ଯ୍ୟମାନ ଘଟାଇଲେ । ଶୁଣାଯାଏ, ଜଗନ୍ନାଥଙ୍କର ଛପନପଉଟି ଭୋଗଚକ ଭୋଗ ହେବା ପୂର୍ବରୁ ଖାଇଦେଇ ବସିଲେ ଓ ତାଙ୍କର ଭକ୍ତ ରାଜା ରାଣୀଙ୍କୁ ବହୁପ୍ରକାର ସ୍ବପ୍ନ ଦେଖାଇଲେ । ସ୍ବପ୍ନରେ କହିଲେ—ମୋତେ ଆଣି ଏ ହାଟରେ କାହିଁକି ପକାଇଲ, ମୋର ଉପବନ କାହିଁ, ମୋତେ ଏଠାରୁ ନେଇ ଚାଲ ।

ରାଜା ରାଣୀ ଗୋପାଳଙ୍କ ଇଚ୍ଛା ଓ ତାଙ୍କ ସ୍ୱତନ୍ତ୍ରତା ରକ୍ଷାର ଅଭିଳାଷ ଉପଲବ୍ଧିକଲେ । ତାଙ୍କୁ ଅନ୍ୟତ୍ର ନେଇ ଉପଯୁକ୍ତ ସ୍ଥାନରେ ରଖି ପୂଜା କରିବାର ମନସ୍ଥ କଲେ । ବୃନ୍ଦାବନପରି ଗୋଟିଏ ସ୍ଥାନ ନିର୍ଣ୍ଣୟ କରି ଗୋପାଳଙ୍କୁ ନେଇ ରଖାଇବା ସ୍ୱପ୍ନରେ ତାଙ୍କ ମନ ଅସ୍ଥିର ହୋଇଉଠିଲା । ପ୍ରାଣର ବେଦନା, ମନରେ ଭକ୍ତିର ଉତ୍ତେଜନା ଯେମିତି ରାଜଯୁବକ ଖୋଜିବୁଲିଲେ ସେଇ ଗୁପ୍ତ-ବୃନ୍ଦାବନ । ଗୋପାଳଙ୍କର ସେଇ ସୂକ୍ଷ୍ମ ନିର୍ଦ୍ଦେଶକୁ ହୃଦୟରେ ଧରି ବହୁ ସ୍ଥାନ ବୁଲି ବୁଲି ଶେଷରେ ଆସି ପହଞ୍ଚିଲେ ପୁରୀଠାରୁ ୧୨ ମାଇଲ ଦୂର ରାହାଙ୍ଗ ପ୍ରଗନାର ଫୁଲଅଳସା ଗାଆଁରେ ।

ଫୁଲଅଳସାକୁ ଦୁଇ ଭାଗ କରି ପବିତ୍ର ଲାବଣ୍ୟମୟୀ ଭାର୍ଗବୀ ନଦୀ ପ୍ରବାହିତା । ତାର ଦୁଇପଟେ ନାରିକେଳ ବୃକ୍ଷର ଉଦ୍ୟାନ । ସେ ସେଠାରେ ନିତ୍ୟକର୍ମ ଓ ସ୍ନାନ ସମାପନ କରି ନଦୀର ଦକ୍ଷିଣରେ ଅନତି ଦୂରରେ ଗୋଟିଏ ବକୁଳ ଦ୍ରୁମ ନିକଟରେ ଉପସ୍ଥିତହେଲେ । ସେ ବକୁଳ ଦ୍ରୁମଟି ଯେପରି ତାଙ୍କୁ ହାତ ଠାରି ଡାକିଲା । ସେହି ବୃକ୍ଷଟି ଅତି ପୁରାତନ । ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ସେଇଠାରେ ଭକ୍ତ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ, ଶୂଦ୍ର ବଳରାମ ଦାସ ଧ୍ୟାନରତ ହୋଇ ସିଦ୍ଧି ଲାଭକରି ଓଡ଼ିଆ ରାମାୟଣ ରଚନା କରିଥିଲେ । ତାଙ୍କର ଲେଖାରେ ସେ ନିଜକୁ "କୃପାସିନ୍ଧୁ" ବୋଲି କହିଥିବାର କବି ଉପେନ୍ଦ୍ର ଭଞ୍ଜ ଲେଖିଯାଇଅଛନ୍ତି । ସେ ବୃକ୍ଷ ନିକଟରେ ପତିତପାବନଙ୍କର ଗୋଟିଏ କ୍ଷୁଦ୍ର ମନ୍ଦିର ରହିଛି ।

ରାଜା ପତିତପାବନ ମୂର୍ତ୍ତିଙ୍କର ପୂଜା ଆରାଧନା ସାରି କାର୍ଯ୍ୟ ସିଦ୍ଧି ନିମିତ୍ତ ଗୋପାଳଙ୍କ ସ୍ପଷ୍ଟ ନିର୍ଦ୍ଦେଶ ଲାଭ ପାଇଁ ସେଇ ବକୁଳ ତରୁ ମୂଳରେ ଧ୍ୟାନରତ ହୋଇ କାର୍ଯ୍ୟ ସିଦ୍ଧିର ନିର୍ଦ୍ଦେଶ ଲାଭକଲେ । ଏବେ ବି ସେଇ ବୃଦ୍ଧ ବକୁଳ ତରୁଟି "ସିଦ୍ଧବକୁଳ" ଭାବରେ ପୂଜାପାଏ । ତା ନିକଟରେ ପତିତ-ପାବନଙ୍କର କ୍ଷୁଦ୍ର ମନ୍ଦିରଟି ଏ ପର୍ଯ୍ୟନ୍ତ ସାକ୍ଷୀ ପରି ରହିଛି । ପ୍ରତିବର୍ଷ ପୁଣ୍ୟ କାର୍ତ୍ତିକ ମାସ ଶୁକ୍ଳପକ୍ଷ ନବମୀ ତିଥିରେ ଅଁଳା (ଅଇଁଲା) ନବମୀ ଉତ୍ସବରେ ସେ ସ୍ଥାନ ମୁଖରିତ ହୁଏ ।

ସେଇ ସିଦ୍ଧବକୁଳ ତରୁର ଅନତିଦୂରରେ ଗଜପତି ରାମଚନ୍ଦ୍ର ଦେବଙ୍କ ସାହଚର୍ଯ୍ୟରେ ରାଜପୁତ୍ର ବକୁଳ ଚୁଆଁଅନା କେତକୀ ପ୍ରଭୃତି ବୃକ୍ଷ ରୋପଣକରି ଗୁପ୍ତ ବୃନ୍ଦାବନର ଶୁଭଦେଲେ । ପତିତପାବନଙ୍କ ମଣ୍ଡପ ଉପରେ ୧୮୦୨ ରେ

ଗୋପାଳ ମୂର୍ତ୍ତିଙ୍କୁ ଆଣି ରଖାଇଲେ । ସେ ସ୍ଥାନର ନାମ ଦେଲେ ସତ୍ୟବାଦୀ । ସ୍ଥାନର ନାମକରଣ କରି ନିଜେ ସତ୍ୟବାଦୀର ରାଜା ଭାବରେ ଖ୍ୟାତିଲଭିଲେ । ଗୋପାଳଙ୍କର ସେବା ପାଇଁ କନ୍ଦଳବାଇରୁ ସେବାୟତମାନଙ୍କୁ ଆଣି ରହ୍ନତବା ନଦୀ କୂଳରେ ସତ୍ୟବାଦୀ ସେବକ ସାହି ଗ୍ରାମ ବସାଇ ସେମାନଙ୍କ ପାଇଁ ସେବା ଓ ଦାନର ବ୍ୟବସ୍ଥା କଲେ ।

ଗୋପାଳ ସେଇଠାରେ ସେହିପରି କେତେ ବର୍ଷ ରହିଲେ । କିନ୍ତୁ ସେଥିରେ ରାଜାଙ୍କର ମନ ତୃପ୍ତ ହେଲନାହିଁ । ଗୋପାଳଙ୍କ ପାଇଁ ଗୋଟିଏ ଉପଯୁକ୍ତ ମନ୍ଦିର ଗଢ଼ାଇବା ପାଇଁ ତାଙ୍କ ପ୍ରାଣ ପୁଣି ବ୍ୟାକୁଳ ହୋଇଉଠିଲା ।

ଇଂରେଜ ଅଧୀନରେ ଗଜପତିଙ୍କର କ୍ଷମତା ଶାସକ ମାନଙ୍କର ଚଞ୍ଚଳତାରେ ଅତି ସଂକୁଚିତ ହୋଇଆସିଲା । ଗଜପତି ତୃତୀୟ ରାମଚନ୍ଦ୍ର ଦେବ ଇଂରେଜଙ୍କ ସାହାଯ୍ୟରେ ଖ୍ରୀ: ୧୮୧୭ ରେ ଗାଦି ପ୍ରାପ୍ତହୋଇ ଖୋର୍ଦ୍ଧାରୁ ଆସି ପୁରୀ ରାଜନବରରେ ବାସକରୁଥିଲେ । କ୍ଷମତାହୀନତା ଓ ଧନହୀନ ଜୀବନର ନୈରାଶ୍ୟ ଉପଲବ୍‌ଧି କରି ସେ ଖ୍ରୀ: ୧୮୫୬ ରେ ସ୍ୱର୍ଗାରୋହଣ କଲେ ।

ପିତାଙ୍କ ସ୍ୱର୍ଗାରୋହଣ ପରେ ସତ୍ୟବାଦୀର ରାଜା ପ୍ରଥମେ ମ୍ରିୟମାଣ ହୋଇପଡ଼ିଲେ । ତଥାପି ନିଜର ସମସ୍ତ ଧନ ସମ୍ପତ୍ତି ପଣ କରି ଦେବାଳୟ ନିର୍ମାଣ କରିବାକୁ ସ୍ଥିରକଲେ । ଏକ ବିରାଟ ମନ୍ଦିର ନିର୍ମାଣ ପାଇଁ ତାଙ୍କର ଆର୍ଥିକ ସମ୍ବଳ ଯଥେଷ୍ଟ ନ ଥିଲା ।

ସେ କାର୍ଯ୍ୟର ପୂର୍ଣ୍ଣସିଦ୍ଧି ପାଇଁ ସିଦ୍ଧବକୁଳ ମୂଳରେ ପୁଣି ଧ୍ୟାନସ୍ଥିତ ହେଲେ । ହଠାତ୍ ଧ୍ୟାନରତ ଅବସ୍ଥାରେ ଗୋଟିଏ ହାତର କୋମଳ ପରଶ ତାଙ୍କ ଶରୀରରେ ବାଜିଲା । ତାଙ୍କ ଶରୀରରେ ଶିହରଣ ଜାତହେଲା । ଧ୍ୟାନରତ ରାଜ-ପୁରୁଷ ଆଖି ଖୋଲି ଦେଖିଲେ ତାଙ୍କ ସମ୍ମୁଖରେ ଏକ ଦୀପ୍ତିବନ୍ତ ସନ୍ନ୍ୟାସୀ ସହାସ୍ୟ ବଦନରେ ଦଣ୍ଡାୟମାନ । ସନ୍ନ୍ୟାସୀ କହିଲେ, "ବାବା ଉଠ, ତୁମର କାର୍ଯ୍ୟ ସିଦ୍ଧି ପାଇଁ ମୁଁ ଚେଷ୍ଟା କରିବାକୁ ନିର୍ଦ୍ଦେଶ ପାଇ ଆସିଛି !"

ସେଇଦିନଠାରୁ ବକୁଳ ତଳୁର ପୂର୍ବଦିଗରେ ଦେଉଳ ତୋଳା ଆରମ୍ଭହେଲା । ସେହି ସନ୍ନ୍ୟାସୀ ବାବା ହରିନାରାୟଣ ଭାରତର ବିଭିନ୍ନ ପ୍ରଦେଶରୁ ଅର୍ଥ ସଂଗ୍ରହ କରି ମନ୍ଦିର ନିର୍ମାଣର ତତ୍ତ୍ୱାବଧାନରେ ଲାଗି ପଡ଼ିଲେ । ଜଗନ୍ନାଥ ମୂର୍ତ୍ତି ଗଢ଼ିବା ପାଇଁ ସ୍ୱୟଂ ବିଶ୍ୱକର୍ମାଙ୍କର ଆବିର୍ଭାବ ହେଲାପରି, ବାବା

ବ୍ରହ୍ମଚୃହ୍ମଙ୍କର ଆବିର୍ଭାବରେ ରାଜପୁରୁଷଙ୍କର ଉଦ୍ଦେଶ୍ୟ ସିଦ୍ଧି ଲାଭ କରିବାପାଇଁ ପଥ ସୁଗମହେଲା ।

ଆଜନ୍ମବ୍ରହ୍ମଚାରୀ 'ବାବା' ମନ୍ଦିର ଗଢ଼ାର ଆରମ୍ଭରୁ କେବଳ ସାମାନ୍ୟ ଫଳ ମୂଳ ଆହାର ଗ୍ରହଣ କରୁଥିଲେ । ଶୁଣାଯାଏ ମନ୍ଦିର ଅଧା ଗଢ଼ାହେବା ଅବସ୍ଥାରେ ସେ ହଠାତ୍ ମିଷ୍ଟାନ୍ନ ପ୍ରତି ଆକୃଷ୍ଟ ହେଲେ । ସେ ସରପୁଳି, ଡାଳିମ୍ବ, ରସାବଳୀ ପ୍ରଭୃତି ନାନା ସୁସ୍ୱାଦୁ ଖାଦ୍ୟ ଗୋପାଳଙ୍କୁ ଭୋଗ କରାଇ ଶହେ ଜଣ ବ୍ରାହ୍ମଣଙ୍କୁ ଖୁଆଇ ନିଜେ ସେ ଖାଦ୍ୟ ସ୍ପର୍ଶ ନ କରି ମଧ୍ୟ ଆତ୍ମତୃପ୍ତି ଅନୁଭବ କଲେ । ଗୋପାଳଙ୍କ ନିକଟରେ ସେଇଦିନୁ ସେଇସବୁ ସୁମିଷ୍ଟ ଖାଦ୍ୟ ଭୋଗହୋଇଆସୁଛି । ମନ୍ଦିର ସମ୍ପୂର୍ଣ୍ଣ ହେବା ପୂର୍ବରୁ ସେ ଦେହତ୍ୟାଗକଲେ ଓ ତାଙ୍କର ପରମଶିଷ୍ୟ ଲକ୍ଷ୍ମୀନାରାୟଣ ବ୍ରହ୍ମଚାରୀ ମନ୍ଦିର ନିର୍ମାଣ ସମ୍ପୂର୍ଣ୍ଣ କରିବାରେ ଲାଗିପଡ଼ିଲେ ।

ମନ୍ଦିରଟି ତୋଳା ହେବା ସଙ୍ଗେ ସଙ୍ଗେ, ମନ୍ଦିର ପଛରେ ଆଗରୁ ଲାଗିଥିବା ବକୁଳ କୃଷ୍ଣଚୂଡ଼ା ତମାଳ ନାଗେଶ୍ୱର ପ୍ରଭୃତିର ନାନା ପ୍ରକାର ବୃକ୍ଷର ସୁନ୍ଦର ଉଦ୍ୟାନଟି ମନ୍ଦିରର ଶୋଭା ବର୍ଦ୍ଧନ କଲା । ସେଇ ଉଦ୍ୟାନଟି ବକୁଳ-ବନ ନାମରେ ପ୍ରଖ୍ୟାତ । ମନ୍ଦିର ସଙ୍ଗେ ସଙ୍ଗେ ଧାନୀଧୂଆ ପୋଖରୀ, କେତକୀଝର ପୋଖରୀ ଓ ଚନ୍ଦନପୋଖରୀ ଏପରି ତିନୋଟି ପୁଷ୍କରିଣୀ ଖୋଳାଯାଇଥିଲା ।

ଏହି ନୂତନ ମନ୍ଦିର ଭିତରକୁ ଗୋପାଳ ବିଜେହେଲେ ଓ ବହୁ ଆଡ଼ମ୍ବର ସହିତ ୧୮୭୨ ମସିହାରେ ମନ୍ଦିର ପ୍ରତିଷ୍ଠା ହେଲା । ରାଜପୁରୁଷ ତାଙ୍କର ସମସ୍ତ ସମ୍ପତ୍ତି ଦେବପୂଜା ପାଇଁ ଉତ୍ସର୍ଗକଲେ । ମନ୍ଦିର ନିକଟରେ କୁଟୀରପୂର୍ଣ୍ଣ ଗ୍ରୋଚ ନଅରଟିଏ ଗଢ଼ାଇ ସେଠାକୁ ତାଙ୍କର ରାଣୀ ଓ କତିପୟ ଦାସଦାସୀଙ୍କୁ ନେଇ ସରଳ ନିରାଡ଼ମ୍ବର ଭକ୍ତ-ଜୀବନ ଯାପନକଲେ ।

ପାଟରାଣୀଙ୍କର ପିଲାପିଲି ତ ନ ଥିଲେ, ସେ ଗୋପାଳଙ୍କୁ ପୁଅ ଭଳି ସ୍ନେହକରି ମହାଆନନ୍ଦରେ କାଳ କଟାଇଲେ । ଦେବାଳୟ ପ୍ରତିଷ୍ଠା ପରେ ପୁରୀ ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠାତା ଇନ୍ଦ୍ରଦ୍ୟୁମ୍ନଙ୍କ ପରି ସେ ବୋଧହୁଏ ଗୋପାଳଙ୍କୁ ବରମାଗିଥିଲେ—"ମୋ ବଂଶରେ କେହି ନ ରହୁ" । କଥାଅଛି, ପୁରୀ ଜଗନ୍ନାଥ ମନ୍ଦିର ଗଢ଼ା ହେଲା ପରେ ସ୍ୱୟଂ ଜଗନ୍ନାଥ ପ୍ରସନ୍ନ ହୋଇ ଇନ୍ଦ୍ରଦ୍ୟୁମ୍ନଙ୍କୁ ବର ମାଗିବାକୁ କହିଥିଲେ । ତାର ଉତ୍ତରରେ ସେ ବର ମାଗିଥିଲେ—"ଏ

ମଦ୍ଧର ମୋ ବଂଶର ପୂର୍ବପୁରୁଷଙ୍କ ଜାଗିଁ ବୋଲି କହି ଗର୍ବ କରିବାକୁ କେହି ନ ରହୁ ।''

ପାଟରାଣୀଙ୍କ ସଙ୍ଗେ ରାଜାଙ୍କ ସାନରାଣୀ ସବୁବେଳେ ତାଙ୍କ ପାଖେ ପାଖେ ରହି ପଶ ରହି ରଜା, ରାଣୀ ଓ ଗୋପାଳଙ୍କର ସେବା କରୁଥିଲେ । ପାଟରାଣୀ ନିଃସନ୍ତାନ ଥିଲେ ମଧ୍ୟ, ସେହି ସେବାକାରିଣୀ ସାନରାଣୀଙ୍କ ଗର୍ଭରୁ କୃଷ୍ଣଭକ୍ତ ବିଦୁରଙ୍କ ଭଳି ଗୋଟିଏ ମାତ୍ର ପୁତ୍ର ଜନ୍ମ ଗ୍ରହଣ କରିଥିଲେ ।

ରାଜାଙ୍କର ତିରୋଧାନ ପରେ ସେଇ ପୁତ୍ର ଗୋପାଳଙ୍କ ସେବାରେ ଲାଗିଥିଲେ । କିନ୍ତୁ ମଦ୍ଧର ଓ ମଦ୍ଧରକୁ ଉତ୍ସର୍ଗିତ ସମ୍ପତ୍ତିକୁ କେବେ ନିଜର ବୋଲି ଦାବି କଲେ ନାହିଁ । ତଥାପି, ଲୋକମାନେ ତାଙ୍କୁ ସମ୍ମାନ ଦେଖାଉଥିଲେ ଓ ''ମଣିମା'' ବୋଲି ଡାକୁଥିଲେ—ରାଜା ସାହେବ ପଦବୀରେ ଭୂଷିତ ଥିଲେ । ସେ ମଧ୍ୟ ନିଃସନ୍ତାନ ହୋଇଥିବାରୁ ତାଙ୍କ ପରେ ସେ ବଂଶରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ।

## ତିନି

ଊନବିଂଶ ଶତାବ୍ଦୀ ଆରମ୍ଭ ହେଉ ହେଉ ଓଡ଼ିଶାର ସ୍ୱାଧୀନତା ରବି ସମ୍ପୂର୍ଣ୍ଣଭାବରେ ଅସ୍ତମିତ ହୋଇଥିଲା । ଖୋର୍ଦ୍ଧାରାଜା ନାମରେ ଅଭିହିତ ହେଉଥିବା ଉତ୍କଳର ଗଜପତି ମହାରାଜା ବ୍ରିଟିଶ ସରକାରଙ୍କଠାରେ ଆତ୍ମସମର୍ପଣ କରିଥିଲେ ଓ ଶେଷରେ ତାଙ୍କର ସମସ୍ତ ସମ୍ପତ୍ତି ଇଂରେଜ ସରକାର ନେଇଯାଇ ତାଙ୍କୁ ନାମମାତ୍ର ଭତ୍ତା ଦେଇ ରଖିଲେ ।

ଇଂରେଜଙ୍କ ନୂଆ ଶାସନ ଖୋଲିଲା । ବହୁତ ଆଗରୁ ଅନ୍ୟାନ୍ୟ ପ୍ରଦେଶ ଗୁଡ଼ିକ ଇଂରେଜମାନେ କରଗତ କରିଥିଲେ ଓ ସେ ସବୁ ସ୍ଥାନରେ ଇଂରେଜ ଶାସନ ଖୋଲିଥିଲା । ସେଇ ଢାଞ୍ଚାରେ ଶାସନ ଚଳାଇବାକୁ ସରକାର ନୂଆ ଅଫିସ, କଚେରୀ, ଡାକ୍ତରଖାନା ପ୍ରଭୃତି ବସାଇବାର ଯୋଜନା କଲେ । ଅନ୍ୟ ପ୍ରଦେଶରୁ କେତେକ ବ୍ୟକ୍ତି ବାଛି ବାଛି କରି ଆଣି କାର୍ଯ୍ୟ ସବୁ ଆରମ୍ଭ କରାଇଲେ ।

ଇଂରେଜମାନେ ତ ବଡ଼ ଚତୁର ବ୍ୟକ୍ତି, ତେଣୁ ସୁଶାସନର ଦେଶୀ ଆବହାଓଆ ସୃଷ୍ଟି କରିବାକୁ ସ୍ଥାନୀୟମାନଙ୍କୁ ନିଯୁକ୍ତ କରି ଅନ୍ୟ ପ୍ରଦେଶରୁ ଆଣିଥିବା ଲୋକଙ୍କଦ୍ୱାରା ତାଲିମ କରିବାର ବ୍ୟବସ୍ଥା କଲେ । ନିଯୁକ୍ତି ପାଇବା ସ୍ଥାନୀୟ ଲୋକମାନେ ୨-୪ ମାସ ତାଲିମ ପାଇ ନିଜ ନିଜ କାର୍ଯ୍ୟ ନିର୍ବାହ କରିବା ପାଇଁ ଯୋଗ୍ୟ ବିବେଚିତ ହେଲେ ।

ସ୍ଥାନୀୟ କର୍ମଚାରୀ ବାଛିବାର ପଦ୍ଧତି ବଡ଼ ଅଭିନବ ଥିଲା । ଜଣେ ଜଣେ ଶ୍ୱେତକାୟ ହାକିମ ମଫସଲରେ ଠାଏ ଠାଏ ତମ୍ବୁ ପକାଇ ସେଠାରୁ ଘୋଡ଼ାରେ ଚଢ଼ି ଗାଆଁମାନଙ୍କୁ ଯାଆନ୍ତି । ତାଙ୍କ ପଛରେ ଗଧ ବା ଖଚର ଉପରେ ଗୁଡ଼ିଏ ପଗଡ଼ି ଲଦି ହିନ୍ଦୁସ୍ଥାନୀ ଚପରାଶିଟିଏ ଚାଲିଥାଏ । ପୂର୍ବରୁ ସାହେବ ଆସି ତମ୍ବୁ ପକାଇଥିବା କଥା ପାଖଆଖରେ ବେଶ୍ ପ୍ରଚାର ହୋଇଯାଇଥାଏ । ପ୍ରଚାର ହେବା ସଙ୍ଗେ ସଙ୍ଗେ ବିଭିନ୍ନ ପଦ ପାଇଁ ଅଭିଳାଷୀ ଚାଲାକ, ଚତୁର, ଧପ୍ପାବାଜ ଲୋକମାନେ ସନ୍ଧ୍ୟାବେଳେ ସାହେବଙ୍କର ତମ୍ବୁ ପାଖରେ ଟହଲମାରି, ଚପରାଶି ବାହାରକୁ ଆସିଲାବେଳେ ତାକୁ କିଛି ଅଣ୍ଟାଗୁଞ୍ଜା ଦେଇଆସିଥାନ୍ତି । ପରଦିନ ସାହେବ ସେ ଗାଆଁରେ ପଶିଲାବେଳକୁ ସେହି ବ୍ୟକ୍ତିମାନେ ନିଜ ନିଜ ଦାଣ୍ଡପିଣ୍ଡାରେ ତାଳପତ୍ର ଖେଦା, କରଣି ପ୍ରଭୃତି ଧରି ଲେଖା ପଢ଼ାରେ ବ୍ୟସ୍ତ ଥିଲା ପରି ଦେଖାଇହୁଅନ୍ତି । ଦୂରରୁ ଚପରାଶି ସେହିଭଳି ବ୍ୟକ୍ତିଙ୍କୁ ଇଙ୍ଗିତ କରିଦିଏ । ସାହେବ ପାଖାପାଖି ହେଲାବେଳକୁ ଯଦି ସେ ବ୍ୟକ୍ତି ଆଗରୁ ପେସ୍କାର ହେବାକୁ କହିଥାଏ—ତେବେ ସେ ସାହେବଙ୍କୁ କହେ— "ସାହେବ, ଏ ଆଦମି ପେସ୍କାର କା ମାଫିକ୍ ଦେଖାଯାତାହେ ।" ସାହେବ ମୁଣ୍ଡ ଟେକାଇ କହନ୍ତି—"ପେସ୍କାର ପେସ୍କାର" । ତାପରେ ତାଙ୍କର ଖାତା ବାହାର କରନ୍ତି । ଚପରାଶିକୁ କହନ୍ତି "ପଗଡ଼ି ଲାଓ" । ତାପରେ ସେ ଲୋକ ମୁଣ୍ଡରେ ପଗଡ଼ି ବନ୍ଧାହୁଏ । ତାକୁ ସାହେବ କହନ୍ତି ଆଜିଠାରୁ 'ତୁ ହେଲୁ' ସରକାରୀ ପେସ୍କାର, ତୋତେ ଯାଇ ସଦର କଚେରିରେ କାମ କରିବାକୁ ହେବ, ମାସିକ ଦରମା ମିଳିବ । ତାପରେ ନିଜ ଖାତାରେ ତାର ନାମ ଲେଖାଇ ନିଅନ୍ତି ।

ଏହିପରି ନାନା ପଦବୀର ସୃଷ୍ଟିହୋଇଥିଲା । ଏମାନଙ୍କ ଭିତରୁ ଅନେକ ନିରକ୍ଷର ଥିବାରୁ ଦସ୍ତଖତ କଲାବେଳକୁ ନିଜ ଜାତି ବା ବ୍ୟବସାୟର ସଙ୍କେତଟିଏ ଚିହ୍ନ କରନ୍ତି । ଏବେ ମଧ୍ୟ କଚେରୀ କଲଟାଙ୍ଗିର ପୁରୁଣା ନଥିର କାଗଜପତ୍ରରୁ ଏହିପରି କୃଷିବନ୍ଧି ସଙ୍କେତ, ଲଙ୍ଗଳ ସଙ୍କେତ, କରଣି ସଙ୍କେତ ଚଳେ

ଅମୁକ ସନ୍ଦକ ଅମୁକ ଅଫିସରଙ୍କ ଦସ୍ତଖତ ବା ସହି ବୋଲି ଲେଖାଥିବାର ବାହାରୁଛି । ଏହିପରି ଯେଉଁମାନେ ପଦବୀ ପାଉଥିଲେ ସେମାନଙ୍କୁ କୁହାଯାଉଥିଲା 'ଭୁ ହେଲୁ ଦାରୋଗା', 'ଭୁ ହେଲୁ ସରକାରୀ ମୁକ୍ତାର','ଭୁ ହେଲୁ ପେଷ୍କାର' ପ୍ରଭୃତି ପଦଧାରୀ ରାଜକର୍ମଚାରୀ ।

ସେଇମାନେ ହିଁ ପ୍ରଥମେ ଇଂରେଜମାନଙ୍କର ଅଫିସ, କଚେରୀ, ଡାକ୍ତରଖାନା ପ୍ରଭୃତିର କାର୍ଯ୍ୟ ନିର୍ବାହ କରି ସରକାରଙ୍କୁ ଲୋକଙ୍କ ପାଖରେ ପରିଚିତକରାଇ ଏ ଦେଶରେ ଶାସନ କଳ ଚାଳଣକରିଥିଲେ ।

ସତ୍ୟବାଦୀ ନିକଟସ୍ଥ ଶ୍ରୀରାମଚନ୍ଦ୍ରପୁର ଶାସନର ଜଣେ ଚତୁର ବ୍ୟକ୍ତି ପଦ୍ମଚରଣ ଦାସ ଏହି ପ୍ରକ୍ରିୟାରେ 'ଭୁ ହେଲୁ ମୁକ୍ତାର' ପଦବୀରେ ଭୂଷିତହୋଇ ନିଯୁକ୍ତି ପାଇଥିଲେ । ସରକାରୀ ଲୋକ ହୋଇଥିବାରୁ ତାଙ୍କ ପ୍ରଭାବରେ ସେ ଖଣ୍ଡମଣ୍ଡଳ ପଡ଼ୁଥିଲା କ ଉଠୁଥିଲା । ସେ କଳାକୁ ଧଳା ଏବଂ ଧଳାକୁ କଳା କରିପାରୁଥିଲେ ।

ସେଇ ଶ୍ରୀରାମଚନ୍ଦ୍ରପୁର ଶାସନଟି ସାକ୍ଷୀଗୋପାଳ ମନ୍ଦିରଠାରୁ ପ୍ରାୟ ଏକ ମାଇଲ ପଶ୍ଚିମରେ ଅବସ୍ଥିତ । ଆଗେ ପୁରୀ ଗଜପତିମାନେ କାନ୍ୟକୁବ୍ଜୀ ବ୍ରାହ୍ମଣମାନଙ୍କୁ ଭୂମି ଓ ଘର ଦାନକରି ନିଜର ନାମର ଉପାଧିର ଅକ୍ଷର ଅନୁସାରେ ନାମିତକରି ଶାସନମାନ ବସାଉଥିଲେ । ଆକବରଙ୍କ ଅମଳର ସ୍ୱାଧୀନ ଗଜପତି ରାମଚନ୍ଦ୍ରଦେବ, ବୀରଶ୍ରୀ ପ୍ରତାପ ଏହିପରି ପ୍ରତ୍ୟେକ ଉପାଧି ପାଇଁ ଗୋଟିଏ ଗୋଟିଏ ଗ୍ରାମ—ଯଥା, ବୀରରାମଚନ୍ଦ୍ରପୁର, ଶ୍ରୀରାମଚନ୍ଦ୍ରପୁର ଗ୍ରାମ ପ୍ରଭୃତି ବସାଇ ଦାନଦେଇଥିଲେ ।

ବ୍ରାହ୍ମଣ ଗ୍ରାମଟିଏ ବସିଲେ ପ୍ରାୟ ଏକ ମାଇଲ ଲମ୍ବା ହୋଇ ବସେ । ସେ ଗ୍ରାମଟି ପ୍ରାୟ ୨ ବା ୪ ଭାଗରେ ବିଭକ୍ତ ହୋଇଥାଏ । ଭାଗଗୁଡ଼ିକୁ 'ଖଣ୍ଡି' କୁହାଯାଏ । ଖଣ୍ଡିଗୁଡ଼ିକ ଟିକିଏ ଟିକିଏ ଛଡ଼ା ଛଡ଼ା ହୋଇଥାଏ । ଗ୍ରାମର ଦୁଇ ପଟରେ ଦୁଇଟି ଦେବାଳୟ ଓ ପୁଷ୍କରିଣୀର ବ୍ୟବସ୍ଥା ଥାଏ । ବ୍ରାହ୍ମଣମାନଙ୍କୁ ଯେ କେବଳ ଘର ଓ ନିଷ୍କର ଜମି ଦାନ କରାଯାଏ ତା ନୁହେଁ, ବ୍ରାହ୍ମଣ ଶାସନର ଗୁରପଟେ ଅନ୍ୟ ବର୍ଣ୍ଣର ଲୋକଙ୍କୁ ନେଇ ପଙ୍କେନାୟକ ସାହି, ହାଟୁଆ ସାହି, ବାରିକ ସାହି, ନାହକ ସାହି ଭଳି ଗ୍ରେଟ ଗ୍ରାମଗୁଡ଼ିଏ ବସାଇ ସେମାନଙ୍କର ଭିନ୍ନ ଭିନ୍ନ ସେବା କାର୍ଯ୍ୟ ପାଇଁ ଘର ଓ ନିଷ୍କର ଜମି ଖଞ୍ଜି ଦିଆଯାଇଥାଏ । ଶାସନର ବ୍ରାହ୍ମଣମାନେ ଶିକ୍ଷା, ଶାସନକାର୍ଯ୍ୟରେ ସାହାଯ୍ୟ

ଓ ଧର୍ମଚର୍ଚ୍ଚା ସଙ୍ଗେ ସଙ୍ଗେ ଜଗନ୍ନାଥ ମନ୍ଦିରର ପଣ୍ଡିତସଭା ବା ମୁକ୍ତିମଣ୍ଡପର କାର୍ଯ୍ୟ ପରିଚାଳନା ଭାର ନିଅନ୍ତି । ପାଖ ଗ୍ରାମମାନଙ୍କର ବାସିନ୍ଦାମାନେ ଅନ୍ୟାନ୍ୟ କାର୍ଯ୍ୟର ଦାୟିତ୍ୱ ନିଅନ୍ତି ।

ଶୁଣାଯାଏ ଶ୍ରୀରାମଚନ୍ଦ୍ରପୁର ଶାସନ ବସିବା ପୂର୍ବରୁ ସେହି ସ୍ଥାନରେ ଉତ୍ତର-ଦକ୍ଷିଣ ହୋଇ ଯଶିପୁରପାଟଣା ନାମକ ଗୋଟିଏ ଗାଆଁ ଥିଲା । ଶାସନ ବସାଇବା ପାଇଁ ସେ ଗାଁ ଭାଙ୍ଗି ସେଠାର ଲୋକମାନଙ୍କୁ ଅନ୍ୟତ୍ର ଥଇଥାନ କରିବା ପାଇଁ ଶ୍ରୀରାମଚନ୍ଦ୍ରଦେବ ବ୍ୟବସ୍ଥା କଲେ । ରାଜାଙ୍କର ଏ ଘୋଷଣା ଧେଣ୍ଡୁରା ଦିଆହୋଇ ସେ ଗ୍ରାମରେ ପ୍ରଚାର କରାଗଲା । ସେ ଗ୍ରାମରେ ମିଳିମିଶି ନାନା ଜାତିର ଲୋକ ରହୁଥିଲେ । ତାଙ୍କ ମଧ୍ୟରେ କେତେ ଘର ସ୍ଥାମାସୂ ହଳଧର ଗୋଷ୍ଠୀ ବ୍ରାହ୍ମଣ ମଧ୍ୟ ଥିଲେ । ସେମାନେ କୃଷିବାସ କରି ଚଳୁଥିଲେ ।

ରାଜାଙ୍କର ଏ ଘୋଷଣାରେ ସେଥିରୁ ପାଞ୍ଚଟି ଘର ବିଦ୍ରୋହ କଲେ । ଶାସନ ବସାଇବାରେ ଅସୁବିଧା ଉପୁଜିଲା । ରାଜକର୍ମଚାରୀମାନେ ସେ ଲୋକମାନଙ୍କୁ ନାନାପ୍ରକାର ପ୍ରଲୋଭନ ଦେଖାଇ ଯେତେ ବୁଝାସୁଝା କଲେ ସେଥିରେ କୌଣସି ସୁଫଳ ଫଳିଲାନାହିଁ । ରାଜକର୍ମଚାରୀମାନେ ବାଧ୍ୟହୋଇ ଗଜପତିଙ୍କୁ ସେ କଥା ଜଣାଇଲେ । ରାଜା ପ୍ରଥମେ ବିଚଳିତ ହେଲେ, କିନ୍ତୁ ଶେଷରେ ସେ ନିଜେ ସେ ସ୍ଥାନକୁ ବିଜେକରି ସେ ଲୋକମାନଙ୍କୁ ବୁଝାଇବାକୁ ସ୍ଥିର କଲେ । ଧର୍ମ କାର୍ଯ୍ୟରେ ଜୋରଜୁଲୁମ୍‌ର ସ୍ଥାନ ନାହିଁ । ରାଜା ଜୋର୍ କରି ଅନ୍ୟ ରାଜ୍ୟ ଦଖଲକରିପାରନ୍ତି, କିନ୍ତୁ ନିଜ ପ୍ରଜାଙ୍କର ଦୁଃଖ ସୁଖ ବୁଝି ତାଙ୍କୁ ପାଳିବା ତାଙ୍କର କର୍ତ୍ତବ୍ୟ । ବିଶେଷତଃ ପ୍ରଜାଙ୍କ ଉପରେ ଜୁଲମ କରି କୌଣସି ଧର୍ମ କାର୍ଯ୍ୟ ଅନୁଷ୍ଠିତ କରିବା ଅସମ୍ଭବ ।

ସେ ଗ୍ରାମରେ ଧେଣ୍ଡୁରା ବାଜିଲା ରାଜା ବିଜେ କରିବେ । ଲୋକମାନେ ନିଜନିଜ କାର୍ଯ୍ୟ ବନ୍ଦକରି ଗଜପତିଙ୍କର ଶୁଭାଗମନକୁ ଅପେକ୍ଷା କରି ରହିଲେ । ପ୍ରାନ୍ତ ମନ୍ତ୍ରୀ ପଟୁଆର ଧରି ପାଟହାତୀରେ ଚଢ଼ି, ରାଜା ସେ ଗ୍ରାମକୁ ବିଜେକଲେ । ପଣ୍ଡିତମାନେ ଶ୍ଳୋକ ବୋଲି ପାଚ୍ଛେଟି ନେଲେ । ନାରୀମାନେ ହୁଳହୁଳି ଓ ପୁଷ୍ପ ବୃଷ୍ଟି କରିଲେ । ରାଜା ଆସି ଗ୍ରାମ ମଝିରେ ପହଞ୍ଚିଲାବେଳକୁ ଦେଖିଲେ ରାସ୍ତା ମଝିରେ ବୁଢ଼ୀଟିଏ କଅଁଳା ପିଲାଟିଏ କାଖି ଗୋଟିଏ ବିରାଟ ପନିକି ଉପରେ ବସିଛି । ପନିକିର ଧାର ସୂର୍ଯ୍ୟ ତେଜରେ ଚକ୍ ଚକ୍ କରୁଛି । ରାଜା

ତାର ନିକଟେଇ ଆସିବାରୁ ସେ ସେଇ ପଥରକ ଉପରେ ବସି ତାଙ୍କୁ ପ୍ରଣାମ ଜଣାଇଲା ଓ ପରେ ବଡ଼ପାଟି କରି କହିଲା, "ମହାରାଜା, ମୋର ଏଇ ନାତିଟିକୁ ଦେଖ । ତୁ ଯଦି ଆମକୁ ଏ ସାତପୁରୁଷର ଜନମମାଟିରୁ ଜବରଦସ୍ତି ବାହାର-କରିଦେବୁ ତେବେ ଏଇ ପଥରକରେ ଏଇ ପିଲାକୁ କାଟି ବଳି ଦେଇ ତୋର ଧର୍ମ ନଷ୍ଟକରିଦେବି ।"

ବୁଢ଼ୀର ଜନ୍ମମାଟି ପ୍ରତି ମୋହ ଦେଖି ରାଜା ଏକାବେଳକେ ତରଳି ଗଲେ । ସେ ବୁଢ଼ୀକୁ କହିଲେ—ଘରକୁ ଯା, ତୁ ଜିତିଲୁ । ତୋତେ ରଖି ଶାସନ ବସିବ, କି ବା ଶାସନ ନ ବସିବ, ଏଇ ଦୁଇଟାରୁ ଯେଉଁ ଗୋଟାକ ହୋଇ ପାରିବ ତା ହେବ ।

ରାଜା ନଅରକୁ ଫେରିଆସିଲେ । ବହୁ ବଡ଼ ବଡ଼ ପଣ୍ଡିତ ଡକାଇ ପରାମର୍ଶ କଲେ । ନାନା ଯୁକ୍ତି ପରେ ସିଦ୍ଧାନ୍ତ ହେଲା ସେ ପାଞ୍ଚଘର ବ୍ରାହ୍ମଣ ବ୍ୟବସାୟ ଦୃଷ୍ଟିରୁ ମାନ ତଳକୁ ଖସିଛନ୍ତି । ଯଦି ଯଜ୍ଞକରି ତାଙ୍କୁ ବୈଦିକ ଶ୍ରୀତକୁ ଫେରାଇ ଅଣାଯାଏ ତେବେ କାନ୍ୟକୁବ୍‌ଜୀ ବ୍ରାହ୍ମଣଙ୍କ ସଙ୍ଗେ ସେମାନେ ଦାନ ଗ୍ରହଣ କରିବା କିଛି ଅସୁବିଧା ହେବ ନାହିଁ । ସେଇ ସମାଧାନ ଅନୁସାରେ ରାଜା ଯଜ୍ଞ କରାଇ, ସେଇ ଗାଆଁର ସାହୁ, ସାବତ, ଚୌଧୁରୀ, ଘଣ୍ଟା ବେହେରୁକ ଏ ପାଞ୍ଚ ଘର ବ୍ରାହ୍ମଣଙ୍କୁ ବୈଦିକ ଶ୍ରୀତ ଅନୁସାରେ ମିଶ୍ର, ମହାପାତ୍ର ପ୍ରଭୃତି ପଦବୀ ଦିଆଇ ଅନ୍ୟ କାନ୍ୟକୁବ୍‌ଜୀ ବ୍ରାହ୍ମଣମାନଙ୍କ ସହିତ ଏକାଠି ଘର ଓ ନିଷ୍କର ଜମି ଦାନଦେଇ ସେଇ ଶାସନରେ ରଖାଇ ୧୫୯୯ ଖ୍ରୀଷ୍ଟାବ୍ଦରେ ସେ ଗ୍ରାମଟି ବସାଇଲେ ।

ସେଇ ଲଡୁଆ ଗ୍ରାମ, ଯେଉଁ ଗ୍ରାମର ବୁଢ଼ୀର ଜନମମାଟିର ପ୍ରୀତି ରାଜାଙ୍କୁ ଅଭିଭୂତ କରିଥିଲା—ସ୍ୱାଧୀନ ନରପତି ତାଙ୍କର ବୀରପ୍ରସୂ-ବସୁନ୍ଧରାର ବୃଦ୍ଧାର ବୀରତ୍ୱରେ ନିଜକୁ ଧନ୍ୟ ମଣିଥିଲେ—ସେହି ଗ୍ରାମରେ ପରବର୍ତ୍ତୀ କାଳର ବିଶିଷ୍ଟ ସମାଜସଂସ୍କାରକ ଓ ପୁରୀ ସଂସ୍କୃତ ଅନୁଷ୍ଠାନର ଆଦି ପ୍ରତିଷ୍ଠାତା ପଣ୍ଡିତ ହରିହର ଦାସ ଜନ୍ମ ଗ୍ରହଣ କରିଥିଲେ; ନବଟେଙ୍କଶାର ପ୍ରଖ୍ୟାତ ଶିଳ୍ପୀ ପଣ୍ଡିତ ମାଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ ଲିଙ୍ଗରାଜ, ପ୍ରଚ୍ଚାରକ ଅନନ୍ତ ମିଶ୍ର ପ୍ରଭୃତି ଆବିର୍ଭୂତ ହୋଇଥିଲେ, ଏଇ ବିପ୍ଳବୀ ଯୋଦ୍ଧାମାନେ ଗୁପ୍ତବୃନ୍ଦାବନ ବକୁଳ-ବନରେ ମଣିଷ ଗଢ଼ିଥିଲେ । ସମାଜ ସଂସ୍କାର କରିଥିଲେ ଓ ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ସ୍ୱାଧୀନ ନରପତି ରାମଚନ୍ଦ୍ରଙ୍କ ସ୍ମୃତିକୁ ଜାଗ୍ରତ କରିଥିଲେ । ଏବେ

ସେ ଶାସନ ଓ ପାଖ ଗାଁ ସବୁ ଅଛି, କିନ୍ତୁ ନିଷ୍କର ଜମି ଆଉ ନାହିଁ । ଇଂରେଜସରକାରଙ୍କ କୁଟନୈତିକ ଶାସନ ଫଳରେ ସେଠାରେ ଲୋକମାନେ ଆଉ ନିଜ ନିଜ ଗ୍ରାମରେ କାମ କରି ନ ପାରି ପେଟପାଟଣାପାଇଁ ଦେଶବିଦେଶ ବୁଲି ନାନାପ୍ରକାର ଧନ୍ଦା କରି ପେଟ ପୋଷୁଛନ୍ତି ।

ଇଂରେଜମାନେ ଓଡ଼ିଶା ଦଖଲ କଲା ପରେ ପରେ 'କାଲଟାଶି' ପ୍ରଭୃତି ବସାଇ, ଜମିଦାରୀ ସୃଷ୍ଟି କରି, ଲୋକଙ୍କଠାରୁ ଜମି ପାଇଁ ଖଜଣା ପ୍ରଭୃତି ଆଦାୟ କଲେ—ଅବଶ୍ୟ ସ୍ଥାନୀୟ ଲୋକଙ୍କ ଧର୍ମରେ ହାତ ଦେବେନାହିଁ ବୋଲି ସରକାର ଆଗରୁ ଘୋଷଣା କରିଥିବା ଯୋଗୁଁ, ଖଜଣା ବସାଇବା ପୂର୍ବରୁ ଧର୍ମ ସଙ୍କେତ ଓ ରାଜାଙ୍କ ଠାରୁ ପାଇଥିବା ନିଷ୍କର ସନନ୍ଦ ପ୍ରଭୃତି ଦେଖାଇବାକୁ ଆଦେଶ ଦେଲେ । କୌଣସି କୌଣସି ଛୋଟ ଛୋଟ ଗ୍ରାମ ହୁଏତ ସନନ୍ଦ ଦେଖାଇ ପ୍ରମାଣ କରି ତାଙ୍କର ଜମି ନିଷ୍କର ରଖି ଭୋଗକଲେ । କିନ୍ତୁ ଅଧିକାଂଶ ବଡ଼ ବଡ଼ ଗ୍ରାମ ଓ ଶାସନର ଲୋକେ ସନନ୍ଦ ଦେଖାଇନପାରିବାରୁ ତାଙ୍କ ଜମିରେ ଖଜଣା ବସିଲା ଓ ପରେ ସେ ସବୁ ସାନ୍ଧ୍ୟ ଆଇନ (Sunset Law-ସନ୍ଧ୍ୟା ପୂର୍ବରୁ କଲିକତା ଯାଇ ସେଠାରେ ଖଜଣା ଦାଖଲ କରିବା ପାଇଁ ଆଇନ) ଲାଗୁ ହେବା ଯୋଗୁଁ ଓଡ଼ିଶାର ଜମି ସବୁ ନିଲାମ ହୋଇ କଲିକତାରେ ଥିବା ଇଷ୍ଟ ଇଣ୍ଡିଆ କୋମ୍ପାନୀ କର୍ମଚାରୀଙ୍କ ହାତକୁ ଚାଲିଗଲା । ଓଡ଼ିଶାରେ କଲିକତି ଜମିଦାର ଗୋଷ୍ଠୀର ସୃଷ୍ଟିହେଲା । ବଙ୍ଗଦେଶର ପାଇକପଡ଼ା ନାମକ ଗ୍ରାମର ଜଣେ ବଙ୍ଗାଳି ଭଦ୍ରଲୋକ ରାତାରାତି ସତ୍ୟବାଦୀ ଓ ପୁରୀ ଜିଲ୍ଲାର ଅନେକ ତାଲୁକର ଜମିଦାର ହୋଇଗଲେ ।

ସତ୍ୟବାଦୀ ରାଜା ସ୍ଥାନୀୟ ଲୋକଙ୍କ ସଙ୍ଗେ ଏକା ଦଶା ଭୋଗିଲେ । ସାକ୍ଷୀଗୋପାଳଙ୍କ ଜମିର ବା କ ଦାନ ସନନ୍ଦ ଥିଲା ସେତ ଗୋପାଳଙ୍କ ଭୋଗ ପାଇଁ ସେ ସବୁ ଖଞ୍ଜିଥିଲେ । ତେଣୁ ସନନ୍ଦ ପ୍ରଭୃତି ଦେଖାଇ ନ ପାରିବାରୁ ସେ ସବୁ ରାଜାଙ୍କ ହାତରୁ ସରକାରଙ୍କ ହାତକୁ ଚାଲିଗଲା ।

ପରେ ପରେ ରାଜାଙ୍କୁ କୌଣସି ପ୍ରକାର କ୍ଷତିପୂରଣ ବା ଭତ୍ତା ନ ଦେଇ ଦେଉଳର ବୁଝାଶୁଣା ସରକାର ନିଜ ହାତକୁ ନେନିଗଲେ । ଏଥିରେ ଅବଶ୍ୟ ସ୍ଥାନୀୟ ମୁକ୍ତାରଙ୍କର ଗୁପ୍ତ ହାତ କମ୍ କାମକରିନଥିଲା । ତଥାପି ସତ୍ୟବାଦୀର ରାଜା, ପଦ୍ମନାଭ ରାଜାସାହେବ ନିର୍ଲିପ୍ତ ଭାବରେ ଗୋପାଳଙ୍କ ପୂଜା ଆରାଧନାରେ ଲାଗିରହିଲେ । ସେ ଜମି ସବୁ ତ ଆଗରୁ ଗୋପାଳଙ୍କୁ ସମର୍ପଣ କରି ରାଜା

ସେବକ ଭାବରେ ତାହା ଭୋଗକରୁଥିଲେ, ତେଣୁ ସେ ସବୁରେ ନଜର ବୋଲି ଦାବି କରୁ ନ ଥିଲେ । ସେ ହେତୁ ଠାକୁରଙ୍କ କାର୍ଯ୍ୟ ବଢ଼ିବା ପାଇଁ ସରକାର ସେ ସବୁ ନେବାରୁ ତାଙ୍କର ସେଥିରେ କଅଣ ଯାଏ ଆସେ ଭାବି ସେ ନୀରବ ରହିଲେ ।

ଯେଉଁ ପୋଖରୀରୁ ପଦ୍ମପର ଶୁଭ୍ର ପୁଷ୍ପ ଜାତହୁଏ, ସେଇ ପୋଖରୀରେ ପୁଣି ଗେଣ୍ଡା, କୋଚଆ ଓ ବିଷଧର ସର୍ପର ସୃଷ୍ଟି ହୁଏ । ଯେଉଁ ଶ୍ରୀରାମଚନ୍ଦ୍ରପୁର ପରି ଗ୍ରାମମାନ ଦିନେ ନିର୍ଭିକ ତ୍ୟାଗୀ ଦେଶପ୍ରେମୀ ମାନଙ୍କର ବାସସ୍ଥଳୀ ଥିଲା, ସେଥିରେ ଅପୋଗଣ୍ଡଙ୍କର ସୃଷ୍ଟି ମଧ୍ୟ ବିସ୍ମୟକର ନୁହେଁ । ସବୁ ଯୁଗରେ ଏପରି ଖଳ ଲୋକ ଦେଖାଯାଆନ୍ତି ଯେ କି ନିର୍ବିକାର ଚିତ୍ତରେ ଆତ୍ମ ସ୍ୱାର୍ଥ ଲାଭ ପାଇଁ ନିଜ ଲୋକଙ୍କ ଗଳାରେ ଛୁରି ଦେଇ ପାରନ୍ତି, ପଡ଼ୋଶୀର ବିପଦରୁ ଫାଇଦା ଉଠାନ୍ତି ।

ପଦ୍ମଚରଣ ଦାସ ତ ସରକାରଘର ମୁକ୍ତାର ବୋଲି ଗୃହଆଡ଼େ ପ୍ରଚାର ହୋଇଗଲା—ସରକାରଙ୍କ ଆଇନ କାନୁନ ନଜାଣି ଯେଉଁମାନେ ବିପଦରେ ପଡ଼ିଲେ, ସେମାନେ ଆପେ ଆପେ ଆସି ମୁକ୍ତାରଙ୍କ ପରାମର୍ଶ ଭିକ୍ଷା କଲେ । ସେ ନାନା ଆଇନର ଦୋହି ଦେଇ ସେମାନଙ୍କୁ ଆଉରି ଭୟଭୀତ କରାଇ ନିଜ ହାତ ଚିକ୍କଣ କରିବାରେ ଲାଗିପଡ଼ିଲେ । ତାଙ୍କର ନାନା ଫନ୍ଦି ଫିସାଦି ଫଳରେ ସତ୍ୟବାଦୀ ରାଜାଙ୍କର ଓ ଆଖପାଖ ଲୋକଙ୍କର ବହୁତ ସମ୍ପତ୍ତି ତାଙ୍କର ହାତ ପଏଠ ହୋଇଥିଲା । ସେ ଗୋଟିଏ ଗ୍ରୋଟକାଟିଆ ଜମିଦାରରେ ପରିଣତ ହୋଇଥିଲେ । ତଥାପି ତାଙ୍କର ଲୋଭ କମୁନଥିଲା ।

ପଦ୍ମନାଭ ରାଜାସାହେବଙ୍କର ଅଧିକାଂଶ ସମୟ ଦେବାର୍ଚ୍ଚନାରେ କଟେ । ସାଂସାରିକ କାର୍ଯ୍ୟରେ ସେ ବିଶେଷ ମନ ଦିଅନ୍ତି ନାହିଁ । ତାଙ୍କର କାହାରି ପ୍ରତି ବିରୋଧଭାବ ନ ଥାଏ । ତାଙ୍କ ଦୃଷ୍ଟିରେ କେହି ଖରାପ ନୁହନ୍ତି । ଭଗବତ୍ ପ୍ରେମରେ ମଜ୍ଜି ରହି ସେ ଏକପ୍ରକାର ପାଗଳ ହୋଇଯାଇଥାଆନ୍ତି । ସବୁରି ଭିତରେ ଭଗବତ୍ ସତ୍ତାର ସ୍ୱରୂପ ଦେଖନ୍ତି ।

ଦିନେ ଦେଉଳ ଭିତରେ ଗୋପାଳଙ୍କ ସାମନାରେ ସେ ତନ୍ମୟ ହୋଇ ତାଙ୍କ ଭଜନଟି ତାଳଦେଇ ଗାନ କରିବାରେ ଲାଗିଛନ୍ତି । ଆଖିରୁ ଆନନ୍ଦାଶ୍ରୁର ସୁଅ ଛୁଟିଛି । ହାତରେ ତାଳଦେଇ ସେ ଗାଇଚାଲିଛନ୍ତି—

ହେ ଜଗବନ୍ଧୁ ଏବେ ଦୋଷ ନ ଧର ଭବେ
ଦେଖି ଆମର ନୀଚ ଗୁଣକୁ
ହେଲ ବା ଭେଲ ହେଲ ତୋହର ଲୀଳାଖେଳା
ସବୁ ସମାନ କଳା କାହ୍ନୁକୁ । (ଘୋଷା)
ପତିତପାବନବାନା ଯେ ଚନ୍ଦେ ଉଡ଼େ ଅନା
ଧରିଛ ତାର ଲୁହା ପିଣ୍ଡକୁ
ଲୁହାରେ ଗଢ଼ି ପୁଣି ଧାରୁଆ ଛୁରି ସାଣି
ଦେଉଛନ୍ତି କଂସେଇ ହାତକୁ,
ସବୁ ସମାନ କଳା କାହ୍ନୁକୁ । (ଘୋଷା)
ସେଇତ ଏକା ଲୁହା ତୋର ପରଶେ ଆହା
ବଦଳି ଯାଏ ସୁନା ଖଣ୍ଡକୁ
ଯମୁନା ସ୍ୱଚ୍ଛ ବୁକେ ପାଣିର ଟୋପା ନାଚେ
ନିରେଖ ନର୍ଦ୍ଦମାର ପାଣିକୁ
ସବୁ ସମାନ କଳା କାହ୍ନୁକୁ । (ଘୋଷା)
ଦୁଇପାଣିତ ଯାଇ ମିଶି ପାବନ ହୋଇ
ଫୁଲାଇ ଦିଏ ଗଙ୍ଗା ବୁକୁକୁ
ସବୁ ତୋ ରାସଲୀଳା ସମ ଚକ୍ଷୁରେ ପରା
ଦେଖୁଛ ବସି ଉଚ୍ଚ ନୀଚକୁ
ସବୁ ସମାନ କଳା କାହ୍ନୁକୁ । (ଘୋଷା)

ତାଙ୍କ ପାଖରେ ସେହିପରି ଆଖି ବୁଜି ପଦମୁକ୍ତାରେ ଆସି ଭକ୍ତ ଢଙ୍ଗରେ ବସିପଡ଼ିଲେ । ଦେବୋପମ ରାଜାଙ୍କୁ ସମସ୍ତେ ଭକ୍ତି କରନ୍ତି, କିନ୍ତୁ ମୁକ୍ତାରଙ୍କୁ ଭୟ କରନ୍ତି । କେହି କେହି ରାଜାଙ୍କ ପାଖରେ ମୁକ୍ତାରଙ୍କୁ ଦେଖି ପେଚକ ଦର୍ଶନରେ ଅନିଷ୍ଟର ପୂର୍ବାଭାସ ଭଳି, କିଛି ସୂଚନା ପାଇ ଅନିଷ୍ଟ ହେବାର ଆଶଙ୍କା କରି ସେଠାରୁ ଆଡ଼େଇଗଲେ ।

ରାଜା ପ୍ରାର୍ଥନା ସାରି ଆଖି ଖୋଲି ଦାସଙ୍କୁ ଦେଖିଲେ । ଦାସେ ସାଦର ସମ୍ଭାଷଣ କରି ତାଙ୍କୁ ସେଠାରୁ ଅନ୍ୟତ୍ର ଡାକିନେଲେ । ସେ ଗୋଟିଏ ନିଛାଟିଆ ସ୍ଥାନରେ ଚୁପ୍‌ଚୁପ୍ ହୋଇ ବହୁ ସମୟ କଥାବାର୍ତ୍ତା ହେଲେ । କଥାର ସାରାଂଶ ହେଲା—ଦାସେ ସରକାରଙ୍କ ମୁକ୍ତାର, ସମସ୍ତ ଆଇନ ଓ ସରକାରଙ୍କ

ସମସ୍ତ ଗୁପ୍ତ ଯୋଜନା ତାଙ୍କୁ ଜଣା । ସେ ବୁଝି ଆସିଛନ୍ତି ଯେ ସରକାର କେବଳ ରାଜଦତ୍ତ ସାକ୍ଷୀଗୋପାଳଙ୍କ ଜମି ସବୁ ନେଇ ସନ୍ତୁଷ୍ଟ ନୁହନ୍ତି--ସରକାର ମନେକରନ୍ତି ସେଇ ସାକ୍ଷୀଗୋପାଳଙ୍କ ଜମିରୁ ଉଦ୍‌ବୃତ୍ତ ଧନରେ ରାଜା ବହୁତ ଧନ ସମ୍ପତ୍ତି ଘରେ ରଖିଛନ୍ତି । ସେ ସବୁ ସାକ୍ଷୀଗୋପାଳଙ୍କର ହୋଇଥିବାରୁ ସେ ସମସ୍ତ ବର୍ତ୍ତମାନ ସରକାରଙ୍କର । ତେଣୁ ପରଦିନ ସକାଳେ ସରକାରୀ କର୍ମଚାରୀ କୋରଖ ପରବାନା ଧରି ତାଙ୍କ ଘର କୋରଖ କରି ସମସ୍ତ ସମ୍ପତ୍ତି ନେଇଯିବେ ।

ଏକଥା ଶୁଣି ସରଳବିଶ୍ୱାସୀ ରାଜା ଦାସଙ୍କର ପରାମର୍ଶ ଲୋଡ଼ିଲେ । ଦାସେ ପ୍ରସ୍ତାବ ଦେଲେ ଯେ, ସେ ନିଜେ ସରକାରଙ୍କ ଲୋକ ହୋଇଥିବାରୁ ସରକାର ତାଙ୍କୁ ସନ୍ଦେହ କରିବେ ନାହିଁ, ତେଣୁ ରାଜା ଯଦି ଚାହାନ୍ତି ତେବେ ଧନସମ୍ପତ୍ତିକୁ ନିରାପଦରେ ରଖିବାକୁ ତାଙ୍କ ଘରକୁ ପଠାଇଦେଇପାରନ୍ତି । ଦାସଙ୍କ ପ୍ରସ୍ତାବ ଅନୁସାରେ ଲୁଚାଇ ରଖିବା ପାଇଁ ରାଜା ତାଙ୍କର ବଡ଼ ବଡ଼ ସିନ୍ଦୁକ ସହିତ ସମସ୍ତ ଧନସମ୍ପତ୍ତି ଡଙ୍ଗାରେ ଲଦି ରତ୍ନଚୀରା ନଦୀ ବାଟେ ଦାସଙ୍କ ଘରକୁ ପଠାଇଦେଇ ନିଶ୍ଚିନ୍ତହେଲେ ।

ଧନରତ୍ନଗୁଡ଼ିକ ଅଳଙ୍କାର ବା ତାଙ୍କ ପୂର୍ବ ରୂପରେ ରହିଲେ କାଳେ ଚିହ୍ନାପଡ଼ିଯିବେ, ଏହା ଭାବି ଦାସେ ସେଗୁଡ଼ିକ ବଦଳାଇବାରେ ଲାଗିପଡ଼ିଲେ । ତେଣୁ ସେ ସବୁ ଆଉ ରାଜାଙ୍କ ଘରକୁ ନ ଫେରି ଦାସଙ୍କ ଧାନ, ମୁଗ ଓ ଜମି-ବାଡ଼ିରେ ପରିଣତ ହୋଇଗଲେ । ଦାସଙ୍କ ଘରେ ଯେ ସୁନା ରୁପା ଓ ଟଙ୍କା ପଇସା ଧନସମ୍ପତ୍ତି ଆକାରରେ ଆଉ ରହି ନଥିଲା, ତାହାର ପ୍ରମାଣ ମିଳିଥିଲା ଅନେକ ଦିନ ପରେ, ଦସ୍ୟୁସର୍ଦ୍ଦାର ବିହାରୀ ନାୟକ ଠାରୁ । ବିହାରୀ ନାୟକ ଥିଲା ସେ କାଳର ଜଣେ ଦୁର୍ଦ୍ଧର୍ଷ ଦସ୍ୟୁ । ସେ ବହୁବାର କାରାବରଣ କରିଥିଲା । ବ୍ରିଟିଶ ସରକାର କେତେଁଠି ତାର ଗୋଟିଏ କଟାଇଥିଲେ, ତଥାପି ସେ ଜେଲ ଭାଙ୍ଗି ପଳାଇଆସିପାରୁଥିଲା । ତାର ଗୋଟିଏ ବଡ଼ ଦଳ ଥିଲା । ସେ ଦାସଙ୍କ ଘରକୁ ଗୋଟିଏ ବିରାଟ ଧନୀଲୋକର ଘର ବୋଲି ଶୁଣି, ତାଙ୍କ ଘରେ ବହୁତ ଧନରତ୍ନ ଥିବବୋଲି ବିଚାରି ସଦଳବଳେ ଯାଇ ଦିନେ ରାତିରେ ସିନ୍ଧି କରି ତାଙ୍କ ଘରେ ପଶିଲା । ଘରର ଲୋକମାନେ ଶୋଇଥିବା ଅବସ୍ଥାରେ ସେମାନଙ୍କୁ ବାହାରୁ ଶିକୁଳି ପକାଇଦେଲା । ଡକାୟତମାନେ ବହୁତ ଦରଣ୍ଡାଦରଣ୍ଡି କଲେ, କିନ୍ତୁ ଧନରତ୍ନ ଟଙ୍କା ପଇସାର କୌଣସି ସନ୍ଧାନ ପାଇଲେନାହିଁ । ସିନ୍ଦୁକରେ ମେଞ୍ଚାଏ ତମସୁକ ଓ ଅନ୍ୟତ୍ର ଧାନ ମୁଗ କୋଳଥ ଓ ବିରି ପ୍ରଭୃତି ରହିଥିବାର ଦେଖିଲେ ।

ବହାଗୀ ବଡ଼ ଦୁଃସାହସୀ । ସେ ନିରାଶ ହେବାରୁ ରାଗିଯାଇ ତାର ଅନୁଚର ମାନଙ୍କୁ କହିଲା, "ଏ ଚଣ୍ଡାଳକୁ କିଛି ଶାସ୍ତି ନ ଦେଇ ଫେରିଯିବା ଉଚିତ୍ ହେବ ନାହିଁ ।" ଏହା କହିବା ପରେ ତାର ଆଦେଶରେ ଧାନ କୋଠିରେ ମୁଗ ମିଶିଲା, ମୁଗରେ କୋଳଥ ବିରି, କୋଳଥରେ ଧାନ ମୁଗ ପ୍ରଭୃତି ମିଶିଲା । ଏପରି ସବୁତକ ମିଶାମିଶି ସରିଲା ପରେ ଦସ୍ୟୁଦଳ ମନର ଓରମାନ ମେଣ୍ଟାଇ ସେଠାରୁ ଚାଲିଗଲେ ।

ସକାଳୁ ଦାସେ ଉଠି ଅନ୍ୟ ଲୋକଙ୍କ ସାହାଯ୍ୟରେ ଶୋଇବା ଘରୁ ବାହାରିଲେ—ଲଟକାହୋଇଥିବା ଖଣ୍ଡେ କାଗଜ ଦେଖିଲେ । ସେଥିରୁ ପଢ଼ିଲେ "ବହାଗୀର ସାର୍ଟିଫିକେଟ"—'ଭୁଟା ଶ୍ରେପା ଧମ୍ମ ଲୋକ ବୋଲିଉଛୁ । ବହାଗୀ ତୋ ଧନକୁ ଭଲକରି ରଖାଇଯାଇଛି—ତୁ ପା' ।'ତାପରେ ଅମାରସବୁର ଅବସ୍ଥା ଦେଖି ସେ କାଗଜ ଲେଖାର ଅର୍ଥ ବୁଝିବାକୁ ତାଙ୍କୁ ଆଉ ଅସୁବିଧା ହେଲାନାହିଁ । ଯାହାହେଉ ସେ ଧନକୁ ଧାନ ନ କରି ଧନ କରି ରଖିଥିଲେ ବୋଲି ବହାଗୀ ସବୁତକ ନେଇ ତାଙ୍କୁ ଦାଣ୍ଡର ଭିକାରି କରିଦେଇଯାଇଥାଆନ୍ତା । ତେଣୁ ନିଜର ବୁଦ୍ଧିକୁ ଧନ୍ୟବାଦ ଦେଇ ସେ ଆତ୍ମପ୍ରଶଂସା ଲାଭକଲେ ।

## ଗ୍ଳାନି

ବର୍ଷାଦିନ ସରି ସରି ଆସୁଛି । ଗାଆଁ ଦାଣ୍ଡଟା ପଙ୍କକାଦୁଅରେ ଲଟପଟ । କୁମ୍ଭାଟୁଆ ଡାକିଲେଣି, କୁଆ ରାବିଲେଣି । ଉଷାରାଣୀ ସୂର୍ଯ୍ୟଦେବତାଙ୍କୁ ଆବାହନ କରୁଛନ୍ତି । ସିନ୍ଦୂର ଫାଟି ଫାଟି ଆସୁଛି । ଆକାଶଟା ପାଚିଲା ସୁନ୍ଦରୀ ଆମ୍ବ ପରି ଲଳପଳ ହେଉଛି । ଗଣେଶ ଚତୁର୍ଥୀ ବାସି । ସବୁ ଅଧ ଯାଏ ଗଣେଶ ପୂଜାରେ ବ୍ୟସ୍ତ ରହି ସ୍କୁଲ ଚାହାଳି, ଟୋଲ ପିଲମାନେ ନିଘୋଡ଼ ନିଦରେ ଶୋଇଛନ୍ତି । କିନ୍ତୁ ଦୁଇଟି ପିଲା ଗୋଟିଏ ଫାଳଗଦା ମୂଳରେ ଲୁଚି ରହି ହସରେ କୁରୁ କୁରୁ ହେଉଛନ୍ତି । ଜଣେ ବୃଦ୍ଧ ଦୁଆର ଖୋଲି ବାହାର ପିଣ୍ଡାକୁ ବାହାରିଆସିଲେ । ହଠାତ୍ ତାଙ୍କ ଆଖି ପଡ଼ିଗଲା ତାଙ୍କ ଚାଳରେ, ଚାଳରୁ ତଳ ପିଣ୍ଡା ଆଡ଼କୁ ଝୁଲୁଥିବା ଭଳି ଖଣ୍ଡେ ସିଝୁ ଡାଳ ଲମ୍ବା ହୋଇଛି । ସେ ପିଣ୍ଡାକୁ ଚାହିଁଲେ । ପିଣ୍ଡା ଉପରେ କୁଟାରେ ଛଆଣ ଗୋଟିଏ

ପିଲାର ସନ୍ତକ ମଧ୍ୟ ଥୁଆହୋଇଛି । ବୃଦ୍ଧ ରାଗରେ ଗର୍ଜି ଉଠିଲେ । ଛତରା ପିଲାଙ୍କ ଉଦ୍ଦେଶ୍ୟରେ ବିବିଧ ଭାଷା ସମ୍ବଳିତ ଗାଳି ଗୁଡ଼ିଏ ବର୍ଷଣ କରିବାକୁ ଲାଗିଲେ । ଲୁଚିଥିବା ପିଲାଙ୍କର ଯେପରି ଉଦ୍ଦେଶ୍ୟ ସାର୍ଥକ୍ୟ ହେଲା । ସେ ଗାଳିଗୁଡ଼ିକ ତାଙ୍କ ଦେହରେ ଆମୋଦଦାୟକ ଚନ୍ଦନ ଲେପନ ପରି ଲାଗିଲା । ସେମାନେ ହସ ସମ୍ଭାଳି ନ ପାରି ଆଉରି ଜୋର୍‌ରେ କୁରୁକୁରୁ ହୋଇ ହସିଉଠିଲେ । ଯେଉଁଆଡ଼ୁ ହସର ଶବ୍ଦ ଆସୁଥିଲା ବୃଦ୍ଧ ସେଇ ଆଡ଼କୁ ଦଉଡ଼ିଯାଇ ହସର ଉତ୍ପତ୍ତିସ୍ଥଳ ଉଦ୍ଦେଶ୍ୟରେ ତାଙ୍କର କ୍ଷେପଣାସ୍ତ୍ର ହାତବାଡ଼ି ଖଣ୍ଡିକ କ୍ଷେପଣକଲେ । ପାଳର ସାଂଜୁ ଭେଦି ସେ ଅସ୍ତ୍ର ଲକ୍ଷ ଭେଦ କରିପାରିଲା ନାହିଁ, ତଥାପି ପିଲାଏ ଛିନ୍ନଛତ୍ର ହୋଇ ପଡ଼ି ଉଠି ଦଉଡ଼ି ପଳାଇଲେ । ବୃଦ୍ଧ ମଧ୍ୟ 'ମୋ ସଙ୍ଗେ ଲାଗୁଥିଲେ, ଏବେ ଚଗଲା ପିଲାଏ ପାଇଲେ' କହି ଅଟ୍ଟହାସ ଟାଏ ହସି ନିଜ ଘର ଭିତରକୁ ପଶିଲେ ।

ସେ ଦିନ ଗାଆଁ ସାକରେ ଏହିପରି କାଣ୍ଡମାନ ଲାଗିଛି । କିଏ କେତେ ପ୍ରକାର ଅଭ୍ୟସ୍ତ ଓ ଅନଭ୍ୟସ୍ତ ଗାଳି ଅଭ୍ୟାସ କରି ଉଚ୍ଚ କଣ୍ଠରେ ବିସ୍ଥାନ କରିବାରେ ଲାଗିଛନ୍ତି । ଗଣେଶଚତୁର୍ଥୀ ରାତିଟିକୁ ହରିତାଳିକା ରାତି କୁହାଯାଏ । ପିଲାଏ ଅଧରାତିରେ ଗଣେଶ ପୂଜା ସାରି ଘରକୁ ଫେରିବା ବାଟରେ ଏହିପରି ହାସ୍ୟରୋଷୋଦ୍ଦୀପକ ବହୁପ୍ରକାର କାର୍ଯ୍ୟ ଘଟାଇଥାନ୍ତି । ଲୋକଙ୍କୁ ଚିଡ଼ାଇବା ଓ ହଇରାଣ କରି ମଜା ଦେଖିବା ପାଇଁ ଏ ସବୁ କାର୍ଯ୍ୟର ସୃଷ୍ଟି ।

ଲଣ୍ଡା ବୁଢ଼ା ନିଃସନ୍ତାନ । ପଛରେ ଲୋକେ ତାଙ୍କୁ ଆଣ୍ଟୁ ବୁଢ଼ା ବୋଲି ଟାପରା କରନ୍ତି । ତେଣୁ ତାଙ୍କ ଦୁଆରେ ବନ୍ଧାହେଲା ପିଲା ଜନ୍ମ ହେବାର ସନ୍ତକ ସିଝୁ । ଗୋବିନ୍ଦ ତାର ବଳଦ ଦୁଇଟିକୁ ଖୁବ୍ ହେପାଜତରେ ରଖିଥାଏ ଓ ସେଥିପାଇଁ ଗର୍ବ କରେ । ତେଣୁ ସେ ସକାଳୁ ଉଠି ଶଗଡ଼ ଯୋଚିବାକୁ ବଳଦ ଫିଟାଇ ଅଡ଼େଇ ଆଣିଲାବେଳକୁ ପଟେ ବଳଦ ତାର ଓ ଅନ୍ୟ ପଟେ ହଡ଼ା ବଳଦ ଅନ୍ୟ କାହାର । ଏହିପରି କାହାର ଶଗଡ଼ରୁ ଅନିକଳା ଯାଇଛି ତ କାହାର ଶଗଡ଼ ଚକ ଯାଇ ଗାଡ଼ିଆଭିତରେ ପଙ୍କରେ ପୋତା ହୋଇଛି । କିଏ ବା ଘରୁ ବାହାରକୁ ଆସିବା ବେଳକୁ ବାହାରୁ ତା ଦୁଆର ବନ୍ଦହୋଇଛି । ଜଣକର ଦାଣ୍ଡ ପାହାଚ ଉଡ଼ାହୋଇଛି । ଅନ୍ୟର ବାଡ଼ ପାହାଚ ନାହିଁ । ସକାଳୁ ଉଠି କିଏ ବାଡ଼ଦୁଆରେ ଗୋବର ମେଞ୍ଚାଏ ମାଡ଼ିଲାଣି ତ କିଏ ଦାଣ୍ଡ ଦୁଆରେ

ହଳହଳଆ ହଳହଳଆ ପାଣିଆ ଝାଡ଼ାପର ସୋରିଷ ବଟା ମାଡ଼ ପକାଇ ଛି ଛି ପାଡ଼ିକଲଣି ।

ଏ ସବୁ ନାଟକୀୟ ଘଟଣାକୁ ଲୁଚି କରି ଉପଭୋଗ କରୁଥିବା ସୂତ୍ରଧରମାନଙ୍କ ଆନନ୍ଦ ବର୍ଣ୍ଣନା କରିହେବନାହିଁ ।

ହରି ସ୍ୱାଇଁ ସକାଳୁ ତରତରରେ ଉଠି ପୁଣି କଚେରୀରେ କାମଥିବାରୁ ଏକ ମୁହାଁ ହୋଇ ଚାଲିଥିଲେ । ଲଣ୍ଡା ବୁଡ଼ା ବାଡ଼ ଫୋପଡ଼ାରେ ଦଉଡ଼ପକାଉଥିବା ପିଲାରୁ ଗୋଟିଏ ଅଳ୍ପବୟସ୍କ ପିଲା ତାଙ୍କ ଦେହରେ ବାଡ଼େଇ ହୋଇଗଲା । ସେ ପଡ଼ିଯିବା ଅବସ୍ଥାରୁ ନିଜକୁ ସମ୍ଭାଳି ନେଇ, ହଠାତ୍ ପିଲାଟିର ଡାହାଣ ବାହାକୁ ଧରିପକାଇଲେ । ତା ମୁହଁକୁ ଚାହିଁଦେଇ ଆଶ୍ଚର୍ଯ୍ୟ ହୋଇଗଲେ । ସେ ପିଲାଟିର ହାତ ଛାଡ଼ି ଦେଇ ତାକୁ କହିଲେ, "ହଇଓ ପୀତବାସ, ତୁମେ ବଡ଼ଲୋକ ଘରର ପିଲା । ତୁମେ ଏ ବାଳୁଙ୍ଗା ପିଲାଙ୍କ ସଙ୍ଗେ ମିଶି, ଏ ସବୁ କାର୍ଯ୍ୟ କରି, ଲୁଗାପଟା ମଇଳା କୋତରା କରି ଏ ପଙ୍କ କାଦୁଅରେ ଲଣ୍ଡଭଣ୍ଡ ହୋଇ ଦଉଡ଼ବାଟା କଅଣ ଭଲ ଦିଶୁଛି ? ତୁମ ବାପା ପଦ ମୁକ୍ତାର—ତୁମକୁ ଲୋକେ ପଛରେ କଅଣ କହିବେ ? ଏସବୁ ଶୁଣିଲେ ବାପାଙ୍କ ମୁଣ୍ଡ ତଳକୁ ହୋଇଯିବ ।" ଏହିପରି ଦୁଇ ଚାରି ପଦ ଉପଦେଶାତ୍ମକ କଥା କହିଦେଇ ସେ ତାଙ୍କର ବାଟେ ବାଟେ ଚାଲିଗଲେ । ପିଲାଟି ତାଙ୍କ ହାତରୁ ମୁକୁଳି ଅନ୍ୟ ସଙ୍ଗୀ ପିଲାଙ୍କ ପାଖକୁ ଦଉଡ଼ପକାଇଲା । ସମସ୍ତେ ମିଶି ପୁଣି ଠୋ ଠୋ କରି ହସିବାକୁ ଲାଗିଲେ ।

ପଦମୁକ୍ତାରଙ୍କର ପୀତବାସ ଏକମାତ୍ର ପୁତ୍ର—ଦାମ୍ପତ୍ୟ ଜୀବନର ବହୁ ବର୍ଷ ପରେ ଜନ୍ମ । ବଡ଼ ଅଲଅଳ ସନ୍ତାନ ତାଙ୍କର । ଅକଳନ୍ତା ସମ୍ପତ୍ତି, ତେଣୁ ବୃଥା ପରିଶ୍ରମ କରି ଗୁଡ଼ାଏ ପାଠ ପଢ଼ିବା ବା ତାର କଅଣ ଦରକାର ? ପୀତବାସ ଚାହାଳି ପାଠ ଶେଷକରି ସ୍କୁଲକୁ ଯାଆନ୍ତି, କିନ୍ତୁ ପାଠ ପଢ଼ିବା ନିଶାରେ ନୁହେଁ, କେବଳ ସଙ୍ଗୀମାନଙ୍କ ସଙ୍ଗେ ମିଶିବାର ନିଶାରେ । ସଙ୍ଗୀମାନଙ୍କ ସଙ୍ଗେ ପାଠ ଅପେକ୍ଷା ଖେଳର ବେଶି ଚର୍ଚ୍ଚା ହୁଏ । ତାଙ୍କର ସାଙ୍ଗ ବନା, ଗୁନା, ଅଗାଧୁ, ରାମା ପ୍ରଭୃତି ଗୋଟିକୁ ଗୋଟିଏ ପ୍ରତ୍ୟେକେ ଖେଳ ବା ସ୍କୁଲ ବହିର୍ଭୂତ କାର୍ଯ୍ୟରେ ଧୁରନ୍ଧର । ନଈରୁ ପୋଖରୀକୁ ଯେଉଁ ନାଳ କେନାଲ କଟାହୋଇ ସେଥିରେ ପାଣି ଯିବା ଆସିବା କରେ, ସେଇ ନାଳ ଉପରେ ଥିବା ଶଙ୍ଖ ଭିତରେ ଦେଇ ବର୍ଷାଦିନେ ପାଣି ଗଲାବେଳେ ବଡ଼ ସୁଅ

ପଡ଼େ । ଶଙ୍ଖ ଉପରୁ ମାଙ୍କଡ଼ଚର୍ମ ମାରି ସୁଅକୁ ଡ଼େଇଁ ପହଁରିବା, ପୋଖରୀ ତୁଠରେ ଓ ପୋଖରୀ ମଝିରେ ଥିବା ଦେଉଳ ବା ଦୀପଦଣ୍ଡିର ପଥର ସନ୍ଧିରୁ ଚିଙ୍ଗୁଡ଼ି ଧରିବା, କାନି ପକାଇ ମାଛ ଧରିବା ପ୍ରଭୃତିରେ ସେମାନେ ଅଭ୍ୟସ୍ତ । ଅନ୍ୟମାନଙ୍କୁ ଥଟ୍ଟା ଟାପରା କରିବା, ହଇରାଣ ହରକତ୍ କରିବା, ଲୋକେ ପୋଖରୀ ତୁଠରେ ଗାଧୋଉ ଥିଲା ବେଳେ ତୁଠ ପାଣି ଗୋଳିଆ କରି ଲୋକଙ୍କ ଉପରକୁ ପାଣି ଫୋପାଡ଼ି ଗାଳିଖାଇବା ପ୍ରଭୃତି କାର୍ଯ୍ୟରେ ମଧ୍ୟ ଊଣା ନୁହନ୍ତି ।

କେଉଁ ଗଛ କୋରଡ଼ରେ କେଉଁଠି ଚଢ଼େଇ ଛୁଆ ଦେଇଛି ତାର ହିସାବ ତାଙ୍କର ତୁଣ୍ଡେ ତୁଣ୍ଡେ ଥୁଆହୋଇଥାଏ । ପାଖଆଖ ଜଙ୍ଗଲ ମାନଙ୍କରେ ମାଚୁଥିବା କଣ୍ଟେଇକୋଳି, ଭଇଁଚ କୋଳି, ଲୁଣି କୋଳି, ମରିଗା କୋଳି, ମେହେଙ୍ଗା କୋଳି, ନରକୋଳି, ଖୀରିକୋଳି, ଜାମୁକୋଳି, ବେତକୋଳି, ବରକୋଳି, କରମଙ୍ଗା, ଆମ୍ବ, ପଣସ, କେନ୍ଦୁ, ତାଳ ପ୍ରଭୃତି ଗଛମାନଙ୍କରେ ସେମାନଙ୍କର ପୂର୍ଣ୍ଣ ଅଧିକାର । ସେ ସବୁ ଗଛରୁ ଆଉ କେହି ଫଳ କି କୋଳି ତୋଳିନେଲେ ମିଛ ତୋଳିଥିବ ତାର କପାଳ ଫାଟିଲା । ସେମାନେ ଲୁଚିକରି ଠିକ୍ ସମୟରେ ତାକୁ ଧରି ଆଗେ ନସ୍ତୁକ ଛେଚିବେ, ତାପରେ ଯାଇ ଯେଉଁ କଥା ।

ଅନେକ ଲୋକ ନଡ଼ିଆ ବରଡ଼ାର ଗୁଞ୍ଜିକୁ ଦୁଇଭାଗ କରି ଦୁଇପଟ ଦଉଡ଼ିରେ ବାନ୍ଧି ଥଳି ପରି କରନ୍ତି । ତା ଭିତରେ କଣ୍ଟା ଡାଳ, ସାହାଡ଼ା ଡାଳ ଓ ଗୋବର କୁଣ୍ଡା ପ୍ରଭୃତି ଭର୍ତ୍ତି କରି ସେ ଥଳିର ମୁହଁ ପାଖରେ ଦଉଡ଼ିଟିଏ ବାନ୍ଧି ଶୀତ ଦିନ ସନ୍ଧ୍ୟାରେ ତାକୁ ପୋଖରୀ, ଗଡ଼ିଆ ବା ନଈ ଭିତରକୁ ଠେଲି ଦିଅନ୍ତି । ସେ ଦଉଡ଼ିର ଅନ୍ୟ ମୁଣ୍ଡଟି କୂଳରେ ବା ଅଳ୍ପ ପାଣିରେ ଗୋଟିଏ ଖୁଣ୍ଟ ପୋତି ସେଥିରେ ଅଟକାଇଦିଅନ୍ତି । ସେ ଥଳିକୁ 'ମାଛବସା' ବା 'ବସା' ବୋଲି କହନ୍ତି । ବସା ପକାଇଥିବା ଲୋକ ସକାଳ କାଳି ଅନ୍ଧାରରୁ ଯାଇ ବସାଟି ଟାଣି ଉପରକୁ ଆଣି ଝାଡ଼ିଦିଅନ୍ତି । ସେଥିରୁ ଓଲୁଆ ଛେଲି କେରାଣ୍ଡି କଙ୍କଡ଼ା ପ୍ରଭୃତି ବାହାରିପଡ଼ନ୍ତି ।

ପୀତବାସଙ୍କ ଦଳ କିଏ କେଉଁଠି ବସା ଖୁଣ୍ଟ ପୋତିଛି ତାର ଓର ଉଣ୍ଡିଥାଆନ୍ତି । ସେମାନେ ରାତିରୁ ଉଠି ବସାଗୁଡ଼ିକ ଝାଡ଼ି ମାଛତକ ନେଇ କେବଳ ଗେଣ୍ଡା ସାମୁକା ଛାଡ଼ିଯାଇଥିବାରୁ ବସା ପକାଇଥିବା ଲୋକମାନେ

ବସା ଝାଡ଼ ନଷ୍ଟ କରି ସେ ଦଳର ଚଉଦ ପୁରୁଷର ଶ୍ରାଦ୍ଧ କରି ଘରକୁ ଲେଉଟନ୍ତି—କିନ୍ତୁ ମାଡ଼ ଭୟରେ ସେ ଦଳଙ୍କର ମୁହାଁମୁହିଁ ହୁଅନ୍ତିନାହିଁ ।

ବେଳେ ବେଳେ ପୀତବାସ ତାଙ୍କ ଦଳର ସାହାଯ୍ୟରେ କାହା ବାଡ଼ରୁ କାକୁଡ଼ି, କାହା ବାଡ଼ରୁ କୋଳି ଜବରଦସ୍ତି ସଂଗ୍ରହ କରିବା ବେଳେ କେହି କେହି ଗଛ ମାଲିକ ସେମାନଙ୍କୁ ଗାଳିଗୁଲଜ ଦେବା ଆରମ୍ଭ କରିଦିଅନ୍ତି । କିନ୍ତୁ ପୀତାଙ୍କ ଉପରେ ନଜର ପଡ଼ିଗଲେ ଥମକିଯାଇ ତାଙ୍କୁ କହନ୍ତି, "ଆଜ୍ଞା, ସୁନା ପୁଅକୁ କଣ ରୁପା ଅପରୂବ !" ଆପଣ ଇଚ୍ଛାକଲେ ବେତା ବେତା ଫଳ କୋଳି ଆପଣଙ୍କ ଦୁଆରେ ଗଦା ହୋଇଯିବ । ଆପଣ ବୃଥାରେ ଏ ଚଗଲା ପିଲାଙ୍କ କଥାରେ ପଡ଼ି ଏସବୁ କଷ୍ଟ ଓ ଦୁଃସାଧ୍ୟ କାମରେ ହାତ ଦେଉଛନ୍ତି । କିଏ ନଚହ୍ନି ଆପଣଙ୍କର ଯଦି କିଛି କରିପକାଇବ ତେବେ ଏ ସାଙ୍ଗମାନେ କଣ ଆପଣଙ୍କ ପିଠିରେ ପଡ଼ିବେ ବୋଲି ଭାବୁଛନ୍ତି ?"

ଲୋକଙ୍କର ଏସବୁ କଥାକୁ କାନ ଦେବାକୁ ଫୁରସତ୍ କେଉଁଠି ? ତେଣୁ ଏସବୁ କଥାକୁ ଖାତିର ନ କରି ପିତା ଆହୁରି ବେଶି ବେଶି ସେଇପରି କାର୍ଯ୍ୟ ସବୁ କରିବାକୁ ଲାଗିଲେ । ପୀତା ଟିକିଏ ବଡ଼ହେବାରୁ ତାଙ୍କ ବାପା ତାଙ୍କର ଘୋଡ଼ା ଚଢ଼ା ଶିକ୍ଷା ପାଇଁ ବ୍ୟବସ୍ଥା କରି ଗୋଟିଏ ଘୋଡ଼ା ଓ ଘୋଡ଼ା ଶଇଶ ରଖିଲେ ଓ ତାଙ୍କର ଖେଳ ଓ ଚିତ୍ତବିନୋଦନ ପାଇଁ ନାନାପ୍ରକାରର ଜୀବଜନ୍ତୁର ଗ୍ରେଟକାଟିଆ ଚିଡ଼ିଆଖାନାଟିଏ ମଧ୍ୟ କରାଇଲେ । ଦାଣ୍ଡିପିଣ୍ଡା ପଞ୍ଜୁରୀରେ ଗୋଟିଏ କଲରାପତିଆ ବାଘ ମଧ୍ୟ ରଖାଇଥିଲେ ।

ଶଇଶ ସଙ୍ଗେ ଘୋଡ଼ାଚଢ଼ା ଶିଖିବାର ଅଳ୍ପ ଦିନ ପରେ ସେ ନିଜେ ଏକା ଏକା ଘୋଡ଼ାରେ ବସି ବୁଲାଚଲା କଲେ । ଘୋଡ଼ା ଉପରେ ବସି ସେ ନୂଆ ପ୍ରକାରର ଆମୋଦପ୍ରମୋଦ ଉପଭୋଗ କରିବାର ବାଟ ସବୁ ଉଦ୍ଭାବନ କଲେ । ଲୋକଙ୍କୁ ଦୁଃଖ କଷ୍ଟ ଦେବାରେ, ଲୋକଙ୍କର କ୍ଷତିକରିବାରେ ସେ ଆନନ୍ଦ ଅନୁଭବ କରନ୍ତି । ଦୃଷ୍ଟାନ୍ତ ରୂପେ ଗୋଟିଏ ଦୁଇଟି ଘଟଣା ଏଠାରେ କହିଲେ ଯଥେଷ୍ଟ ହେବ । କୁମ୍ଭାରୁଣୀ ବୁଢ଼ୀଟିଏ ନୂଆ ହାଣ୍ଡିଆଟିକା ଗୁଡ଼ିଏ ମୁଣ୍ଡାଇ ଆସିଲାବେଳେ ତା ଦେହରେ ଘୋଡ଼ାକୁ ଘଷି ବୁଢ଼ୀକୁ ତଳେ ଗଡ଼ାଇ ଦେବା ପରେ ହଣ୍ଡି ବୋଝ ମୁଣ୍ଡରୁ ପଡ଼ି ହାଣ୍ଡି ଭାଙ୍ଗି ଯେଉଁ ଠୋ ଠୋ ଶବ୍ଦ ହୁଏ ଓ ବୁଢ଼ୀର ଯେଉଁ ବିକଳ ଚିତ୍କାର ଶୁଣାଯାଏ ତାହା ତାଙ୍କୁ ଆନନ୍ଦ ଦିଏ ।

ରାସ୍ତା କରରେ ଧାନ ମୁଗ ଶୁଖାହୋଇଥିଲେ, ତା ଉପରେ ଘୋଡ଼ାକୁ ଦଉଡ଼ାଇ ଦିଅନ୍ତି । ସେଗୁଡ଼ିକ ଘୋଡ଼ାଆଡ଼େ ବିଂଚ୍ଛି ହୋଇ ଯିବାରୁ ସ୍ତ୍ରୀଲୋକମାନେ ଦଉଡ଼ି ଆସି ସେ ସବୁ ବିକଳରେ ଗୋଟାଇପକାଇବାର ଦୃଶ୍ୟ ସେ ଟିକିଏ ଦୂରରୁ ଦେଖି ଆନନ୍ଦ ଉପଭୋଗ କରି ଘୋଡ଼ା ଝପଟାଇ ଚାଲିଯାଆନ୍ତି । ଏପରି ଆମୋଦଦାୟକ କାର୍ଯ୍ୟରେ ବେଳେ ବେଳେ ବାଧାଦେବା ବା କ୍ଷୋଭ ପ୍ରକାଶ କରିବା ଲୋକଙ୍କୁ ଘୋଡ଼ା ଚାବୁକରେ ଦୁଇ ଚାରି ଚାବୁକ ମଧ୍ୟ ଖାଇବାକୁ ପଡ଼େ ।

ପଦ ମୁକ୍ତାରଙ୍କର ଅଖଣ୍ଡ ପ୍ରତିପତ୍ତି । ଲୋକ କହନ୍ତି ସେ ବାଟ ଚାଲିଲା ବେଳେ ଗର୍ଭିଣୀ ଗାଈ ବାଟ ଛାଡ଼ିଦିଏ । ତାଙ୍କ ଭୟରେ ସମସ୍ତେ ଥରହର । ତାଙ୍କ ପୁତ୍ରମଣିଙ୍କ କାର୍ଯ୍ୟକଳାପ ବିଷୟରେ ତାଙ୍କ ପାଖେ ଯାଇ ଫେରାଦ ହେବା ତ ଦୂରର କଥା, ତାଙ୍କ କାନରେ ପକାଇବାକୁ ବା କାହାର ସାହସ ଅଛି ? ବଡ଼ଲୋକଙ୍କୁ ଉତ୍ତର ନାହିଁ କି ସ୍ୱର୍ଗକୁ ନିଶୁଣୀ ନାହିଁ—ଭାବି ଲୋକେ ନୀରବ-ରହନ୍ତି । କେବଳ ବେଳେବେଳେ ପୁତ୍ରଙ୍କ କୁକାର୍ଯ୍ୟ ବିଷୟରେ ଥରେଅଧେ ଉଡ଼ାଖବର ଆସି ମୁକ୍ତାରଙ୍କ କାନରେ ବାଜେ । କିନ୍ତୁ ସେ ତାକୁ ବିଶେଷ ଗୁରୁତ୍ୱ ଦିଅନ୍ତିନାହିଁ କି ସେ ଆଡ଼କୁ ନଜର ବି ଦିଅନ୍ତି ନାହିଁ । ସେ ଭାବନ୍ତି ଏ ପିଲାଖେଳ, ଟିକିଏ ବଡ଼ ହୋଇଗଲେ ପୁଅର ଆପେ ଆପେ ଦାୟିତ୍ୱଜ୍ଞାନ ଆସିବ ଓ ସବୁ ଠିକ୍ ହୋଇଯିବ ପୁଅ ଠିକ୍ ବାଟରେ ପଡ଼ିଯିବ ।

ପୁଅର ପାଠପଢ଼ା ବିଷୟରେ ବି ସେ ବେଶି ବ୍ୟସ୍ତ ହୁଅନ୍ତି ନାହିଁ । ବେଶି ଗୁଡ଼େ ପାଠ ବା କଣ ଦରକାର ? ବୁଦ୍ଧି ଥିଲେ ହେଲା । ପୀତାର, ତାଙ୍କ ପୁଅର କଅଣ ବୁଦ୍ଧିର ଅଭାବ ଅଛି ? ତା'ପରେ ସେ ନିଜେ ବା କେଉଁ ଗୁଡ଼ାଏ ପାଠ ପଢ଼ିଥିଲେ ? ବୁଦ୍ଧି ବଳରେ ସେ କଅଣ ବଡ଼ମଣିଷ ହେଲେ ନାହିଁ ? ଧନୀ ହେଲେ ନାହିଁ ? ତାଙ୍କ ବାପାଙ୍କର କଅଣ ଥିଲା—ଆଜି ତାଙ୍କର କେତେ ସମ୍ପତ୍ତି, କି ପ୍ରତିପତ୍ତି !

ଦିନ ଗଡ଼ିଚାଲିଲା । ପୀତା ମୁଠା ମୁଠା ଟଙ୍କା ନେଇ ମଉଜ ମଜଲିସରେ ବରବାଦ କଲେ । ମୁକ୍ତାରଙ୍କ ମନ ଟିକିଏ ଖରାପ ହେଲା । ସେ ତ ପୁଅକୁ ସିଧା କିଛି କହନ୍ତି ନାହିଁ—ଗୁମାସ୍ତା ହାତରେ କୁହାଇଲେ ।

ପୀତାଙ୍କୁ ଗୁମାସ୍ତା କହିଲେ, "ବାପା କହୁଥିଲେ ବୃଥାରେ ଏତେଗୁଡ଼େ ଟଙ୍କାପଇସା ଖର୍ଚ୍ଚ କରିବା ଉଚିତ୍ ନୁହେଁ ।" ତାର ଉତ୍ତରରେ ପୀତା ହସି

ହସି କହିଲେ, "ବାପାଙ୍କୁ କହିବ— ମୁଁ ତାଙ୍କ ବାପଧନ ଖରଚ କରୁନାହିଁ । ମୁଁ ମୋ ବାପାଙ୍କ ଟଙ୍କା ଖରଚ କରୁଛି ।" ବାପା ସେତିକ ଶୁଣି କଥାକୁ ହସରେ ଉଡ଼ାଇଦେଲେ, ପୀତାଙ୍କ ପ୍ରତ୍ୟୁତ୍ପନ୍ନମତିତାକୁ ତାରିଫ୍ କଲେ । ପୀତାଙ୍କ ଖର୍ଚ୍ଚ ସେହିପରି ଅବାଧ ଗତିରେ ଚାଲିଲା ।

ଆଜିକାଲି ଭଳି ସେତେବେଳକୁ ବୋତଲ-ମଦର ସେତେ ପ୍ରଚାର ହୋଇନଥାଏ । ସେ ମଦ କେବଳ ବଡ଼ ବଡ଼ ସାହେବଙ୍କ ମହଲରେ ଥାଏ । ତାର ନାମ ଥାଏ ବିଲାତି ମଦ । ତାହା ବିଲାତରୁ ଆସେ, ଆମ ଦେଶରେ ତିଆରି ହେଉ ନଥାଏ । ଭାଙ୍ଗ, ଅଫିମ, ଗୁଲି, ଚଣ୍ଡୁ ପ୍ରଭୃତି ମଦର ଅନ୍ୟ ଭାଇମାନେ ମଫସଲରେ ବେଶି ପ୍ରସାର ଲାଭ କରିଥାନ୍ତି ।

ସତ୍ୟବାଦୀ ମନ୍ଦିର ପଛପଟ ହାଟସାହିରେ ଗୋଟିଏ ସ୍ଥାନରେ ଗୁଲି-ଖଟିଟିଏ ଥାଏ । ଆଜିକାଲି କୌଣସି କୌଣସି ସାହେବ କ୍ଲବମାନଙ୍କରେ ଦେଶି ମଦୁଆ ସାହେବମାନଙ୍କ ଆଡ୍ଡା ଜମିଲାପରି ସେଇ ଗୁଲିଖଟିରେ ଗୁଲିଆମାନଙ୍କର ବେଶ୍ ଆଡ୍ଡା ଜମେ । କଅଁଳ ପିଜୁଳି ପତ୍ରକୁ ଶୁଖାଇ ତା ଭିତରେ ଅଫିମକୁ ଖାଇରକରିଦେଇ ବଳନ୍ଦିଆଯାଏ । ସେଇ ବଡ଼ିଭଳି ଗୁଲିକୁ ମାଟି ନଳୀରେ ଭରି ସେଥିରେ ଅଗ୍ନି ସଂଯୋଗ କରି ତାର ଧୂଆଁକୁ ସେବନ କରାଯାଏ । ସୁଯୋଗ୍ୟ ସଙ୍ଗୀମାନଙ୍କ ଗହଣରେ ପୀତବାସ ସେଇ ସଂସ୍ଥାରେ ଯୋଗଦେଲେ । ସେଇ ଖଟିରେ ତାଙ୍କର ବହୁତ ସମୟ କଟିଲା । ସେଠି ଜୁଆଖେଳର ମଧ୍ୟ ବ୍ୟବସ୍ଥା ଥିଲା । ସେଇଠାରେ ଜଣେ ଅସତ୍‌ଚରିତ୍ରା ସ୍ତ୍ରୀଲୋକ ମଧ୍ୟ ଚଟକ ଓ ଅନ୍ୟାନ୍ୟ ଖାଦ୍ୟ ସବୁ ପ୍ରସ୍ତୁତ କରି ଯୋଗାଉଥିଲା । ସେଥି ଯୋଗୁଁ ପୀତାଙ୍କର ଘରକୁ ନ ଆସିଲେ ମଧ୍ୟ ଅସୁବିଧା ହେଲାନାହିଁ ।

ମଝିରେ ମଝିରେ ସେ ଆଦୌ ଘରକୁ ନ ଆସିବାରୁ ତାଙ୍କ ପାଇଁ ରନ୍ଧା ହୋଇ ରହିଥିବା ଖାଦ୍ୟ ସବୁ ବାହିହେଲା । ପୁଅର ଏପରି ଆଚରଣ ଦେଖି ତାଙ୍କ ମାଆ ବିଚଳିତ ହୋଇପଡ଼ିଲେ । ସେ ସ୍ୱାମୀଙ୍କ ସଙ୍ଗେ ପରାମର୍ଶ କରିବା ପରେ ପୁଅର ମନ ଘରଧରିବାର ବ୍ୟବସ୍ଥା ପାଇଁ ପୁଅର ହାତକୁ ଦିହାତ କରିବା ପାଇଁ କଥା ହେଲା । ପୁଅ ପାଇଁ କନ୍ୟା ଖୋଜା ଚାଲିଲା ।

ପାଖଆଖ ଲୋକେ ମୁକ୍ତାରଙ୍କୁ ଡ଼ରି ତାଙ୍କ ମୁହଁ ଉପରେ କିଛି ନ କହିଲେ ମଧ୍ୟ 'ଏପରି ପିଲାକୁ କିଏ ଝିଅ ଦେବ' ବୋଲି ତାଙ୍କ ପଛରେ ଟୁପୁରୁ ଟାପର ହେଲେ । ଯେତେ ଧନୀଲୋକ ହେଲେ ମଧ୍ୟ ତାଙ୍କ ଚାଲିଚଳନ ଓ ପୀତାଙ୍କ

ପିତ୍ତୁଳିଆ ଗୁଣ ବର୍ଣ୍ଣନାକର ଶତ୍ରୁମାନେ କହିଲେ—ଏପରି ସ୍ଥାନରେ ଝିଅ ଦେବା ଅପେକ୍ଷା ଝିଅର ତଣ୍ଟି ଚିପି ମାରିଦେବା ବରଂ ଭଲ ।

ଠିକଏ ଦୂରଦୂରାନ୍ତରୁ କେହି ରାଜି ହୋଇ ପ୍ରସ୍ତାବ ଦେଲେ ଖଳଲୋକେ ଲୁଚିକରି ଯାଇ ସେ ପ୍ରସ୍ତାବ ସବୁ ଭାଙ୍ଗିବାରେ ଲାଗିଲେ । ମୁକ୍ତାରେ ବହୁଆଡ଼କୁ ମଧ୍ୟସ୍ଥ ପଠାଇଲେ । ସବୁ ମଧ୍ୟସ୍ଥ ଯେ ଭଲଲୋକ ବା ମୁକ୍ତାରଙ୍କ ନିମକ୍‌ସଚ୍ଚା ଲୋକ ଥିଲେ ତାହା ନୁହେଁ । ତେଣୁ ସେମାନେ ପ୍ରାୟ ଅକୃତକାର୍ଯ୍ୟ ହୋଇ ଫେରିବାର ସମ୍ବାଦ ଜଣାଇଲେ ।

## ପାଞ୍ଚ

ପୁରୀ ଜିଲ୍ଲାର ବ୍ରହ୍ମଗିରି ଥାନା । ଏବେ ବି ବାଟଘାଟର ବେଶି ସୁବିଧା ହୋଇନାହିଁ—ସେତେବେଳର ଅବସ୍ଥା ନକହିଲେ ଭଲ । ଅଧିକାଂଶ ସ୍ଥାନ ବଢ଼ି ଅଞ୍ଚଳ ଭାବେ ଖ୍ୟାତ । ସେଥିରେ ଲମ୍ବିତଳ ଗାଆଁ । ସେଠାକୁ ଖରାଦିନେ ଶଗଡ଼ ଗୁଳାରେ ଯିବା ଛଡ଼ା ଅନ୍ୟ ଦିନେ ପ୍ରାୟ ଯାଇ ହୁଏ ନାହିଁ । ଶୀତଦିନଆ ସକାଳ । ପିଲାମାନେ ପୂର୍ବଦିନଠାରୁ ସଂଗ୍ରହ କରିଥିବା ଶୁଖିଲା ପତ୍ର ଓ ଡାଳ-ଗୁଡ଼ଏ ଜମାଇ ଗାଁଦାଣ୍ଡ ମଝିରେ ଧୂନି ଲଗାଇ ନିଆଁ ପୁଆଁ ସାର ଉଠ୍ ଉଠ୍ ହେଉଛନ୍ତି । ବୁଢ଼ାବୁଢ଼ୀମାନେ ରଡ଼ନିଆଁରେ ହାତ ସେକୁଛନ୍ତି । ଖରା ପଡ଼ ଗଲାଣି । ହଠାତ୍ ଗାଆଁ ମୁଣ୍ଡ ଆଡ଼ୁ ଘୋଡ଼ା ଟାପୁ ଓ ସବାରିର 'ହମର ଭାଇରେ, ଖମର ଖାଇରେ'' ଶବ୍ଦରେ ସମସ୍ତେ ଚମକି ଉଠିଲେ । ପିଲାମାନେ ଦାଣ୍ଡରେ ଧୂଳି ଉଡ଼ାଇ ଦଉଡ଼ାଦଉଡ଼ ଆରମ୍ଭ କରିଦେଲେ । କେହି କେହି ପିଲା ନୂଆବୋହୂ ଆସୁଥିବ ଭାବି ସବାରି ନିକଟକୁ ଦଉଡ଼ିଯାଇ ସବାରିରେ ବସିଥିବା ଦାଢ଼ିଆ ପୁରୋହିତ ବୁଢ଼ାକୁ ଦେଖି 'ଛି, ବୁଢ଼ାଟେ' ବୋଲି ମୁହଁ ମୋଡ଼ିଦେଇ ପଳାଇଆସିଲେ ।

ଘୋଡ଼ା ଓ ସବାରି ଗାଁରେ ପଶିବାରୁ ତା ପଛରେ କେତେ ପିଲା ଦଉଡ଼ିବାକୁ ଲାଗିଲେ । ଆଗନ୍ତୁକଙ୍କୁ କେତେକ ଲୋକ ପଚରାପଚରି ପରେ ସତ୍ୟବାଦୀ ପାଖ ଗାଁରୁ ସବାରି ଓ ଘୋଡ଼ା ଧରି ମୁକ୍ତାରେ କନ୍ୟା ଦେଖି ଆସିଛନ୍ତି ବୋଲି ଗହଳି ହୋଇଗଲା । ମୁକ୍ତାରଙ୍କ ପଟୁଆର ସଳଟେ ସେ ଗାଁର ଧୂଳି

ମହାପାତ୍ରଙ୍କ ଦୁଆର ଆଡ଼କୁ ମୁହାଁଇଲା । ମହାପାତ୍ରଙ୍କ ଝିଅ ଦାଣ୍ଡଦୁଆରେ ଠିଆ ହୋଇଥିଲା । ସେ କୌତୂହଳରେ ଘର ଭିତରକୁ ଦଉଡ଼ିଯାଇ ବୋଉକୁ କୁଣ୍ଢାଇ ଧରି କହିଲା, "ବୋଉ ବୋଉ, ଆମ ଦାଣ୍ଡରେ କେଡ଼େ ସୁନ୍ଦର ଘୋଡ଼ା ଓ ପାଟ କନା ଢିଆ ସୁଆରି—ଆ ଦେଖିବୁ ଆ !" ବୋଉ ଆଗରୁ ସବୁ ଶୁଣିଥିଲେ । ସେ କହିଲେ, "ମାଆଲୋ, ଭାଗ୍ୟରେ ଥିଲେ ସେ ସବୁ ତୋର ହେବ । ଯା ଯା, ତୋର ଯେ ଶ୍ୱଶୁର ହେବେ ସେ ତୋତେ ଦେଖିବାକୁ ଆସିଛନ୍ତି । ଆ, ମୁଁ ତୋତେ ପେଡ଼ିଲୁଗା ଖଣ୍ଡେ ପିନ୍ଧାଇ ବେଶ କରିଦେବି । ତାଙ୍କ ଲୋକ ତୋତେ ପରି ଦେଖିବେ !" ଏହା କହି ଝିଅକୁ ଭିତର ଖଞ୍ଜାକୁ ନେଇଗଲେ ।

ମହାପାତ୍ରଙ୍କ ପିଣ୍ଡାରେ ମସିଣା ପଡ଼ିଲା, ଗୋଡ଼ଧୂଆ ପାଣି ଥୁଆହେଲା, ପାନବଟା ଆସିଲା । କିଛି ସମୟ ପରେ କନ୍ୟା ଦେଖା କାମ ସରିଲା । କନ୍ୟାଟି ଗୌରବର୍ଣ୍ଣ, କିନ୍ତୁ ସେ ଟିକିଏ ଓଲଗ୍ରବା ମୁହାଁ, ଅର୍ଥାତ୍ ମୋଟା ଚକୁଳିପିଠା ପରି ମୁହଁ । ସେଥିରେ ପୁଣି ବନ୍ଦ ଥିବା ଭଳି ପୂର୍ବରୁ ବସନ୍ତ ହୋଇଥିବାରୁ କେତୋଟି ଦାଗ ମଧ୍ୟ ରହିଛି । ତଥାପି ମୁକ୍ତାରଙ୍କର ଅପସନ୍ଦ କରିବାର କିଛି ନ ଥିଲା । ସେ କନ୍ୟା ପକ୍ଷକୁ ରାଜି ହେବା ଭଳି ପ୍ରସ୍ତାବମାନ ଦେଇ ବାହାରିଗଲେ ।

ମହାପାତ୍ରଙ୍କ ଘରେ ବି ସମସ୍ତେ ଖୁସି । ଝିଅର ବୟସ ଏଗାର ହେଲାଣି । ଘରଣୀ ଯେତେ ବ୍ୟସ୍ତ କଲେ ମଧ୍ୟ ମହାପାତ୍ରେ ବର ଖୋଜାରେ ବିଶେଷ ମନ ଦେଉନଥିଲେ । ଅସଲ କଥା ହେଲା, ନିଜଆଡ଼ୁ ପ୍ରସ୍ତାବ ଗଲେ କନ୍ୟାଦାୟରୁ ନିସ୍ତାର ହେବା ପାଇଁ ମହାପାତ୍ରଙ୍କୁ ନିଶ୍ଚୟ କିଛି ଦେଣା ନେଏଣା ପାଇଁ ଖର୍ଚ୍ଚ କରିବାକୁ ପଡ଼ିବ । ମହାପାତ୍ରେ ନଥିଲିବାଲା ନ ହେଲେ ମଧ୍ୟ ଟିକିଏ ହାତଚପା ଲୋକ । ଖରଚବାରଚ ଗୁଡ଼ାକ ତାଙ୍କ ଆଖିରେ ଯାଏନାହିଁ । ତେଣୁ ତାଙ୍କ ଘରେ ସ୍ତ୍ରୀ ଓ ପିଲାମାନେ ଲୁଚିକରି ଗୁଡ଼ଜଳ ଚାକ ଭୁଜା ଖଜା ମାଛତରକାରୀ ଖାଇଲା ବେଳକୁ ତାଙ୍କପାଇଁ ବଡ଼ାହୁଏ ବଗଡ଼ାଭାତ ଓ କୋଳଥଡ଼ାଲି । ଥରେ ଝିଅ ଆଣି ଶାଗ ଭଜା ବାଢ଼ିଦେଇଥିବାରୁ "ଘରେ ତେଲ ଅଣି ଶାଗ ଭାଜୁଚ, ମତେ ଉଚ୍ଛନ୍ନକରିଦେବ" ବୋଲି ପାଟିକରି ସେ ଗାଁ କମ୍ପାଇଦେଇଥିଲେ । ଅବଶ୍ୟ ପେଟମରା ବେମାରକୁ ଆୟତ୍ତ କରିବାକୁ କୌଣସି ଅଫିମଖୋର ଶୁଭକାଂକ୍ଷୀଙ୍କ ପରାମର୍ଶରେ ସେ ଅଫିମ ସେବନ କରି କଳାକୃଷ୍ଣ ଭକ୍ତ ହୋଇପଡ଼ିଥିଲେ । ସେ ପେଟମରା ଦୁଃଖରୁ ପାରହୋଇ ସୁଖରେ ରହିବାପାଇଁ ତାଙ୍କ ଅଫିମ ଖର୍ଚ୍ଚ ପାଇଁ ମନକୁ ବୋଧ ଦେବା ଉଦ୍ଦେଶ୍ୟରେ ମଝିରେ ମଝିରେ ଗୁବାକ ସିଦ୍ଧାନ୍ତରେ

ଷଣ୍ଢ଼ାସୀ ବୋଲି କହି ଶ୍ଳୋକ ବୋଲନ୍ତ—"ଯାବତ୍ ଜୀବେତ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ, ଆପ୍ଲୁଂ ସେବେତ୍ । ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ।"

ତାଙ୍କ ବସ୍ତ୍ରରରେ ପେଟ ବେମାର ଯୋଗୁଁ ମୃତ୍ୟୁ ତ ଆଗରେ ଦଣ୍ଡିଲାଣି, ଝିଅ ବାହାଘରେ ମିଛରେ ମୁଠାଏ ଟଙ୍କା ଖର୍ଚ୍ଚ କରି ଲାଭ କଅଣ ? ଝିଅ ବର୍ତ୍ତମାନ ବାହା ହେଲେ କେତେ, ନହେଲେ ବା କଅଣ ବଗିଡ଼ି ଯାଉଛି ? ସେ ନିଜେ ଥିବେ ଯେ ତାଙ୍କୁ କଏ କହିବ ? ପଛରେ ଯିଏ ଯାହା କହୁଥିବେ କହୁଥାନ୍ତୁ—ତାଙ୍କର ଯାଏ କେତେ ଆସେ କେତେ ? ଏବେ କନ୍ୟାସୁନା ନେଇ ବୁଢ଼ାବର ବାହାକଲେ ସିନା ଗାଆଁ ଲୋକେ ତାଙ୍କୁ କେମିତି କୁଟି ଖାଇଯିବେ—ତାଙ୍କ ମଲା ପରେ କଅଣ ଝିଅକୁ ସେମିତି ବର ଅଭାବ ରହିବ ଯେ ଝିଅ ଅଭିଆଡ଼ୀ ରହିଯିବ ? ତେଣୁ ମରିବା ପର୍ଯ୍ୟନ୍ତ କେଉଁଠା ଦିନ ଘରଣୀ କଥାରେ ମୁଣ୍ଡ ନପୂରାଇ ଗାଳେଇ ଦେଇ ରହିଗଲେ ଗଲା ।

ସେ ଯାହାହେଉ, ବରଡ଼ କପାଳକୁ ଶିକା ଛିଡ଼ିଲାପରି, ମୁକ୍ତାରଙ୍କ ଭଳି ଏଡ଼େ ବଡ଼ଲୋକ ମନକୁମନ ଆସି ଦୁଆରେ ହାତ ପତେଇ ଛିଡ଼ାହେବା, କେବଳ ଭାଗ୍ୟରେ ଲେଖାଥିଲେ ହିଁ ହୁଏ । ତାପରେ ମୁକ୍ତାରଙ୍କ ଆଡ଼ୁ ପ୍ରସ୍ତାବ ଆସିଲାଣି ଯେ ସେ କନ୍ୟାପଟ ଓ ବରପଟ ଦୁଇପଟର ଖର୍ଚ୍ଚ ତୁଲାଇ ମହା ଆଡ଼ମ୍ବରରେ ବାହାଘର କରିବେ । ଏଥିକୁ ତାଙ୍କର ଆଉ ଆପତ୍ତି ଥିବାର କଅଣ ଅଛି ? ବାହାଘର ତ ଖୁବ୍ ସଲଟଣରେ ହେବ—ଖର୍ଚ୍ଚଟା କେଉଁଆଡ଼ୁ ହେଲା ଲୋକେ ବା କପରି ଜାଣିବେ ? ଓଲଟି ତାଙ୍କୁ ବାହାବା ଦେବେ । କଥାରେ ଅଛି—ମନ୍ଦ ଖୋଜୁଥିଲା କାକର ପାଣି, ବଇଦ ବୋଇଲା ଦେ ତୋରାଣି । ମହାପାତ୍ରଙ୍କ ମନ ସବୁଠୁ ବେଶି ଖୁସି ।

ମୁକ୍ତାରେ ଫେରିଯିବା ପରେ କାଖରେ ଲୁଗା ଜାକ, ଗାମୁଛଖଣ୍ଡିକ ପିନ୍ଧି ମହାପାତ୍ରେ ପୋଖରୀପାଣି ଉଦ୍ଦେଶ୍ୟରେ ନଈବନ୍ଧ ଆଡ଼କୁ ଚାଲିଲେ । ବାଟରେ ଅଲକ୍ଷଣା ଗ୍ରାମ ବାରିକଟା କେଉଁଠୁ ଆସି ହାବୁଡ଼ଗଲା । ସମସ୍ତେ କହନ୍ତି ସେ ଜବାରୁ ଶିଘ୍ର ବାହାରକରେ । କିଛି ନ ଥିଲେ ସବୁ କଥାରେ ଗୋଟିଏ କେଁ ପୁରାଇବ । ତାକୁ ଦେଖି ସେ ବାଟ ଭାଙ୍ଗି ଚାଲିଯିବାକୁ ଚେଷ୍ଟା କଲେ, କିନ୍ତୁ ଗ୍ରାମତ ନଛୋଡ଼ବନ୍ଧା ଲୋକ । ସେ ମହାପାତ୍ରଙ୍କ ଆଗକୁ ଆସି ଓଳଗିଟାଏ ହୋଇପଡ଼ି, ମହାପାତ୍ରେ ଆଶୀର୍ବାଦଟାଏ ପାଇଁ ପାଟି ମେଲା କରିବା ପୂର୍ବରୁ

ତାହାର ବକ୍ତବ୍ୟ ଆରମ୍ଭ କରିଦେଲା । ସେ ହାତ ମକଚି ମକଚି କହିଲା—ସାଆନ୍ତେ, ଶୁଣିଲି ଆପଣଙ୍କ ଝିଅର ବାହାଘର ପ୍ରସ୍ତାବଟା କେଉଁଠି ପକ୍‌କା କରିଦେଲେ ବୋଲି ! ମୁଁ ବୁଢ଼ାବାରିକଟା, ଆପଣଙ୍କ ଚଉଦ ପୁରୁଷର ଦାନା ଖାଇ ଆପଣଙ୍କ ଓଳିତଳେ ପଡ଼ିଛି । ମୁଁ ଆର ଗାଁକୁ ଗୋଟିଏ କାମରେ ଯାଇଥିଲି ବୋଲି ମୋତେ ଟିକିଏ ଅପେକ୍ଷା କଲେ ନାହିଁ ? କିଛି ନବୁଝି ନସୁଝି ମତେ ନ ପଚାରି ସେପରି ଗୋଟିଏ ଜାଗାରେ ହଁକରିଦେଇ ବସିଲେ ?

ତାର କଥା ଶୁଣି ମହାପାବେ ବଗିଡ଼ିଯାଇ କହିଲେ—"ହଇରେ, ମୁଁ କଅଣ ବା ଭୁଲଟା କରିପକାଇଲି ? କଅଣ ପାଦ ଶୁଦ୍ଧିରେ କିଛି ଗୋଳମାଳ ଅଛି ? ପାତ୍ର କଅଣ ବୁଢ଼ା, ଛୋଟା,କଣା ନା କାଲ ? ଖଣ୍ଡିଆ ନୁହେଁ କି ଖାବରା ନୁହେଁ, ନରୋଗ,କନ୍ଦର୍ପପରି ଦେହେରା, ବଡ଼ଲୋକ ଘରର ପିଲା, ଅମାପ ସମ୍ପତ୍ତି । ତୁ ବାରବୁଲାଟାଏ, ବାରଆଡ଼େ କାନଦେଇ ବାରକଥା ଶୁଣିଶୁଣି ତୋର ମୁଣ୍ଡ ବଗିଡ଼ିଗଲାଣି । ଯାଆ ଯାଆ ବାହାପିଆଟା, ଆଗରୁ ଉଠ୍—ମୁଁ ତତେ ପଚାରିକରି ଭାବିଚିନ୍ତା କରିଥାନ୍ତି ! ହଇରେ, ତତେ ପଚାରିଥାନ୍ତି—କଅଣ ଲେମ୍ବୁ ନା ଲୁଣ—ହଇରେ ? ଏଡ଼େ ବଡ଼ଲୋକ ଆସି ମୋ ଝିଅର ଗୁଣଗାନ ଶୁଣି ମୋ ଖାତିରରେ ଯିନା ମୋ ଦୁଆରେ ଠିଆହେଲା ! ଏମିତି ଭାଗ୍ୟ ଏଗାଁରେ କେତୁଟା ଲୋକଙ୍କର ଅଛି କହିଲୁ ? ହିଂସ୍ର କୁଗୁଡ଼ାକ ସହିନପାରି ତତେ ନାରଦକରି ପଠାଇଚନ୍ତି ନାହିଁ ? ହଉ ହଉ, ମୋତେ ବାଟ ଛାଡ଼ ।"

ଖୀମା ପୁଣି ହାତ ମକଚି ମକଚି କହିଲା, "ମୁଁ ତ ସେଇଆ କହୁଥିଲି ସାଆନ୍ତେ ! ଆପଣ ଟିକିଏ ଭାବିଲେ ନାହିଁ ! ଏତେ ବଡ଼ ଧନୀ, ଶାସନଗାଁର ଉଚ୍ଚ ଶାସନୀ ବ୍ରାହ୍ମଣ, ସେ କାହିଁକି ଆମ କରିବାଡ଼ ଗାଁକୁ ତୁମ ଆମ ପରି ଲୋକଙ୍କ ପାଖକୁ ଆସନ୍ତେ ? ସେପଟେ ଝିଅ ନ ମିଳିବାରୁ ଏପଟକୁ ଆସିଲେ ।"

ମହାପାବେ ଖିଙ୍କାରି ହୋଇ ପଚାରିଲେ—"କଅଣଟା ଗୋଳମାଳ ଅଛି ?"

ଖୀମା ହାତ ମକଚି ମକଚି କହିଲା – ହଁ ସାଆନ୍ତେ···ନାହିଁ ସାଆନ୍ତେ··· ସତ-ମିଛ, ପୁଣି ମିଛ-ସତ । ମୁଁ ତ ବୁଲିବା ଲୋକ—ମୁଁ ଏଇ କେତେଦିନ ତଳେ ସେ ଗାଁଆଡ଼େ ଗୋଟେ ଶୁଭକାମରେ ବୋଝ ନେଇ ଯାଇଥିଲି ଯେ, ଶୁଣିଲି ପିଲାଟିର ଆଉ ଯାହା ଦୋଷଗୁଣ ଥାଉ ପଛେ ସେ ଗୁରୁ ନିଶାରେ ପାଣ୍ଡ୍ କରିସାରିଲାଣି । ଆପଣ ଜାଣୁ ଜାଣୁ ଯେତେ ବଡ଼ଲୋକର ପିଲା ହେଲେ ବ

ଏପର ଗୋଟିଏ ବାଜୁଙ୍ଗା ଗଂଜୁଡ଼ାଟା ହାତରେ ଆପଣଙ୍କର ସୁନାମୁଣ୍ଡା ପର ଝିଅଟିକୁ ଦେଇଦେବେ ? ସେ କଅଣ ଆପଣଙ୍କ ଝିଅପର ନଣ୍ଡହପିଲାକୁ ଯୋଗ୍ୟ ନା ସେ ତାକୁ ଭଲରେ ରଖିବ ?''

ଏହା ଶୁଣି ମହାପାତ୍ରେ ଠୋ ଠୋ କରି ହସିଉଠିଲେ । ପୋଖରୀ-ପାଣି ପିବା ପୂର୍ବରୁ ନିଶାଟା ଟିକିଏ ଜୋର୍‌ରେ ଧରିଆସୁଥିଲା । ସେ କହିଲେ— ହଇରେ ଓଲୁ,ଭଣ୍ଡାରୀଜାତିଟା ଘର ଗୁଲକ ବୋଲି ସମସ୍ତେ କହନ୍ତି । ତୁ ବାରିକ ଜାତିରେ ଜନ୍ମହୋଇ, ହଇରେ, ତୁ ଏଡ଼କ ବଣ ଓଲୁଟାଏ ବୋଲି ମୁଁ ଜାଣି ନଥିଲି । ତୋ ମୁଣ୍ଡରେ ଟିକିଏ ମଗଜ ନାହିଁ । କହୁଛୁ ଗୁରିନିଶା ପାଣ । ହଇରେ ହେ, ଇଏତ ବାହାଦୁରୀର କଥା-–କେତେ ଲୋକଙ୍କୁ ଏ ସୁବିଧା ମିଳେ ? କେତେ ଲୋକ ଏକଥା କରିପାରିବେ ? ନିଶା ଗୁଡ଼ାକ କଅଣ ହେଇଚି ହାତୀ ଘୋଡ଼ା ଖାଇବା ପାଇଁ ? ମରଦପୁଅ ତ ନିଶା ଖାଇବ ନାହିଁ ଆଉ କିଏ ଖାଇବ— ମାଇପେ ? ଯାଆ ଯାଆ, ବୁଢ଼ାଟିଏ ହେଲୁଣି– ତୋର ଏତିକି ଅକଲ ନାଇଁ । ଯାଆ ଯାଆ, ମତେ ଆଉ ଗୁଡ଼େ ବାତାନ ବତାନା । କାଲି ସକାଳୁ ଆସିବୁ, ବାହାଘର ବ୍ୟବସ୍ଥା ସବୁ କରିବା । ବନ୍ଧୁବାନ୍ଧବ ଡାକରାତାଲିକା, ବେଦ୍ଧ ତାଲିକା ସବୁ କରିବା ।

ଏହା କହି ସେ ନଈ କୂଳକୁ ଗୁଲିଗଲେ । ଖ୍ରାମ ବି ଭୋଜି ପାଇଁ ଏସବୁ ଆୟୋଜନ କଥା ଶୁଣି ଖୁସିରେ ତା ଘରକୁ ଲେଉଟିଲା ।

× × × ×

ବଡ଼ ଜାକଜମକରେ, ଧୂମ୍‌ଧାମ୍‌ରେ ବାହାଘର ହୋଇଗଲା । କମଳା ମୁକ୍ତାରଘରର ବୋହୂ ହୋଇ ଆସିଲା । ମଫସଲୀ ପିଲା, ଦୁଇଗୁରିଦିନ ଘର ମନେପକାଇ କନ୍ଦାକଟା କଲା । କିନ୍ତୁ ଗୁକରବାକରଙ୍କ ଆଦର ଅଭ୍ୟର୍ଥନା, ଶାଶୁଙ୍କ କୋମଳ ବ୍ୟବହାର ପ୍ରଭୃତି ଯୋଗୁଁ ସେ ଘରକଥା ଭୁଲିବାକୁ ଲାଗିଲା । କାମ ତ କିଛି ନ ଥାଏ, ପୋଇଲା ଗୁକରତ ତା ହାତରେ କିଛି କାମ ଲଗାଇ ଦିଅନ୍ତି ନାହିଁ । ତାକୁ ଏପଟ ସେପଟ ଏ ଘରକୁ ସେ ଘର ବୁଲି ସବୁ ଜିନିଷ, ଜୀବଜନ୍ତୁ ଦେଖିବାକୁ ଭଲଲାଗେ । ସେ ତ ଏତେ ଜିନିଷ କେବେ ଦେଖି ନ ଥିଲା, ତେଣୁ ଯାହା ଦେଖିଲେ ତା ବିଷୟରେ ଆଶ୍ଚର୍ଯ୍ୟ ହୋଇ ଏଇଟା କଅଣ ସେଇଟା କଅଣ ଖାଲି ପଗ୍ଗରିବସେ । ଏହିପରି ଖେଳା ବୁଲା କରୁ କରୁ ତାର ସମସ୍ତ ସରିଯାଏ । ସମସ୍ତ ସବୁଦିନ ସମାନ ଯାଏ ନାହିଁ । ଦୁଇଗୁରିବର୍ଷ

ପରେ, ତାର ଶାଶୂ ତା ପାଇଁ ଘରର ମାଲିକାନା ଖାଲି ରଖି ହଠାତ୍ ହଇଜା ରୋଗରେ ପଡ଼ି ସ୍ୱର୍ଗାରୋହଣ କଲେ ।

ବାହାଘର ହେଉ, ଯାହାହେଉ, ପୀତବାସଙ୍କର ମନ କେବେ ଘର ଧରିଲା ନାହିଁ । ସେ ସାଙ୍ଗ ସୁଖ ମେଳରେ ସେହିପରି ବାହାରେ ବାହାରେ ସମସ୍ତ କଟାଇବାରୁ ତାଙ୍କ ପାଳିତ ଜୀବଜନ୍ତୁଗୁଡ଼ିକ ବି ତାଙ୍କଠାରୁ ଆଦର ନ ପାଇ ସ୍ନେହ ପାଇବାକୁ କମଳା ଆଡ଼କୁ ଆଉଜିଲେ । ଦାମ୍ପତ୍ୟ ସ୍ନେହ ବା ପ୍ରେମ କି ପ୍ରକାର ପଦାର୍ଥ ତାହା କମଳା ତ କେବେ ପାଇନାହିଁ, ତେଣୁ ଜୀବଜନ୍ତୁଙ୍କ ସଙ୍ଗେ ତାର ସ୍ନେହ ଆଦାନ ପ୍ରଦାନ ତା ପାଇଁ ଯଥେଷ୍ଟ ହୁଏ । ଶ୍ୱଶୁରଘର ପରଠାରୁ ବାପଘର ସଙ୍ଗେ ତ କୌଣସି ସମ୍ପର୍କ ନଥିଲା,ତେଣୁ ବାପଘର କଥା ମନେପଡ଼ିଲେ ସେ ପଶୁପକ୍ଷୀଙ୍କ ଗହଣରେ ସେ କଥା ଭୁଲିବାକୁ ଚେଷ୍ଟା କରୁଥିଲା ।

ସେ ତ ବଡ଼ଘରକୁ ବୋହୂ ହୋଇ ଆସିଲା—ତାକୁ ନବା ଆଣିବା କଲେ, ତାଙ୍କ ଘରକୁ ଗୃହୀଁ ଦିଆନିଆ କଲେ ଝିଅ ଜୋଇଁ ଡାକରା କରିବା କଥା ; ମହାପାତ୍ରେ ତ ସେପରି କରିପାରି ନ ଥାନ୍ତେ, ଯାହା ବା ଦିଅନ୍ତେ ସେ ସ୍ତ୍ରୀକୁ ବୁଝାଇଦେଲେ—"ମଳୟ ପବନ ବୋହୁଥିବା ସ୍ଥାନରେ ତାଳପତ୍ର ପଙ୍ଖାକୁ କେବଳ ହାସ୍ୟାସ୍ପଦ ହୁଏ । ଆମେ ବୃଥାରେ ହାସ୍ୟାସ୍ପଦ ହେବା କାହିଁକି ? ଝିଅ ଜୋଇଁଙ୍କର ଯଦି ଇଚ୍ଛାହୁଏ ସେ କଅଣ ମନକୁ ଆମ ଘରକୁ ଆସିପାରିବେ ନାହିଁ ?" ସେତେବେଳେ ଚିଠିପତ୍ର ବା ଡାକଘରର ଏତେ ପ୍ରଚଳନ ନଥିଲା । କେବଳ ଗାଆଁ ଗାଆଁ ବୁଲୁଥିବା ଚଣ୍ଡା ଯୋଗୀ ଭିକାରିଙ୍କ ହାତରେ ଖବର ଦିଆନିଆ ହେଉଥିଲା ।

ମୁସଲମାନ ଉପଦ୍ରବ ପରେ ହିନ୍ଦୁ ସମାଜରେ ବହୁ ପରିବର୍ତ୍ତନ ଘଟିଥିଲା । ବାଲ୍ୟବିବାହ ଓ ପରଦାପ୍ରଥା ଅତି ଉତ୍କଟ ରୂପ ଧାରଣ କରିଥିଲା । ଉଚ୍ଚଜାତିର ବାଲ୍ୟବିଧବାମାନେ ପିତାଗୃହରେ ଜୀବନ କଟାଉଥିଲେ । ପିତାମାତା ଜୀବିତ ଥିବା ପର୍ଯ୍ୟନ୍ତ ସେ ଘରେ ତାଙ୍କର ପ୍ରଭୁପତ୍ତି ଅଖଣ୍ଡ ରହୁଥିଲା । କିନ୍ତୁ ସେମାନଙ୍କର କାଳ ହେବା ପରେ ବିଚରା କନ୍ୟାମାନେ ନାନା ଦୁରବସ୍ଥା ଭୋଗୁଥିଲେ ।

ପିଲାଦିନୁ ଯେଉଁମାନେ ବୋହୂହୋଇ ଶାଶୁଘରକୁ ଯାଉଥିଲେ ସେମାନେ ପରଦା ଭିତରେ ରହୁଥିଲେ । ଦିନରେ ସ୍ୱାମୀଙ୍କ ସଙ୍ଗେ ତ ଦେଖା ହେବା ଦୂରର

କଥା, କୌଣସି ପୁରୁଷ ଲୋକର ଛାଇ ମଧ୍ୟ ତାଙ୍କ ଉପରେ ପଡ଼ୁନଥିଲା । ଶାଶୁ ଓ ଗୁରୁ ସ୍ଥାନୀୟ ସ୍ତ୍ରୀଲୋକମାନଙ୍କ ସଙ୍ଗେ ଚୁଁ ଠାରରେ କଥାବାର୍ତ୍ତା ହେବାକୁ ପଡ଼ୁଥିଲା ।

ବୋହୂ ହୋଇ ଆସିଲା ପରେ ଗ୍ରେଟଝିଅଟିକୁ ଗ୍ରେଷେଇବାସଠାରୁ ଘର ସଫା, ବାସନମଜା ପ୍ରଭୃତି ସବୁ ଘରକାମ କରିବାକୁ ପଡ଼ୁଥିଲା । କାଳ-ଅନ୍ଧାରରୁ ଉଠି ଏହିସବୁ କାମ ସେମାନେ କରୁଥିଲେ । ଏହାଛଡ଼ା ବାଡ଼ପଟ ଓଳାଇବା, ସାଇର ସମସ୍ତଙ୍କ ବାଡ଼ଦୁଆର ଗୋବର ଲୁଣ୍ଡାରେ ଲିପିବା, ତାପରେ ବାଡ଼ପଟ ଗଡ଼ଆ ବା ପୋଖରୀରେ ଗାଧୋଇପାଧୋଇ ସାରି କେହି ଉଠିବା ପୂର୍ବରୁ ଘରକୁ ପଳାଇଆସିବାକୁ ପଡ଼ୁଥିଲା । ରାତିରେ ଶାଶୂ ପ୍ରଭୃତିଙ୍କ ଗୋଡ଼ ଘଷିସାରିବାପରେ ତାଙ୍କୁ ଅଧରାତିକୁ ଶୋଇବାକୁ ଯିବାକୁ ଅନୁମତି ମିଳୁଥିଲା । ଏସବୁ କରିବାରେ ବ୍ୟତିକ୍ରମ ହେଲେ ବା ସୁବିଧା ଅସୁବିଧା ହେଲେ, ଶାଶୂ ନଣନ୍ଦମାନେ କଟୁ ବ୍ୟବହାର କରୁଥିଲେ ।

ଶାଶୂମାନଙ୍କର ମାଡ଼ ଗାଳି ସହିନପାରି କନିଅର ମଞ୍ଜି ପ୍ରଭୃତି ବିଷ ଖାଇ ଅନେକ ବୋହୂ ଆତ୍ମହତ୍ୟା କରୁଥିଲେ । ଥରେ ଗୋଟିଏ ଖଣ୍ଡ ଝିଅ ଶାଶୂର ମାଡ଼ ଭୟରେ ଶାଶୂଘରକୁ ଆସିବାକୁ ରାଜି ନହେବାରୁ ତାର ବାପ ମା ବୁଝାଇସୁଝାଇ ତାକୁ ଶାଶୂଘରକୁ ଛାଡ଼ୁଥିଲେ । କେତେ ଦିନ ପରେ ବାପ ଆସିବାରୁ ଝିଅଟି ଠାରଠାରି କରି ତାର ଗାଲ ଓ ଶରୀରର ଅନ୍ୟ ସ୍ଥାନରେ ଶାଶୁର ଚିମୁଟା ଖଣ୍ଡିଆ ଦାଗ ଦେଖାଇ କହିଲା, ‘ବାପା, ଗୁଛି ପଳା ମା ମା-ଲେ-ନି, ଏ-ଏ କଅ-ଅ-ନ ।”

ଅନେକ ସମୟରେ ବାପ ଭାଇ ଆସିଲେ ଝିଅକୁ ଦେଖିବା ପୂର୍ବରୁ ଶାଶୂମାନେ ସେମାନଙ୍କ ଅପାରଗତା ବିଷୟରେ ଦୀର୍ଘ ଭାଷଣମାନ ଦେଇ ଝିଅକୁ ନଦେଖାଇ ସେମାନଙ୍କୁ ବିଦା କରିଦିଅନ୍ତି । ଥରେ ଜଣେ ଅଛିଲିଆ ଲୋକ ତାର ଝିଅ ଘରେ ପହଞ୍ଚିବା ସଙ୍ଗେ ସଙ୍ଗେ ଝିଅର ଶାଶୁ ତାଙ୍କୁ କହିଲା, “ତୁମେ ଏପରି ଝିଅ ବଢ଼ାଣ କରିଛ ଯେ ତାକୁ ଗୃହକାର୍ଯ୍ୟ ପୁଂଜେ ଭଲକରି ଶିଖାଇ ଘରେ କରିଆସିନାହିଁ । ଚକୁଳି ପିଠାଟାଏ ଲେଉଟାଇ ଆସୁନି । ସନ୍ତୁଳା ବା ଶାଗ ଖରଡ଼ାଟାଏ କରିଆସୁନାହିଁ ।” ତାର ଉତ୍ତରରେ ସେ ସମୁଦୁଣୀଙ୍କ ବାଗ ଅଣ୍ଡା କରି ହସାଇବାକୁ କହିଲେ, “ଭାତ ମୁଠେ ରାନ୍ଧିବା ଗୋଟେ କାମରେ ଲେଖା ନା ଚକୁଳି ଗୋଟାଏ ପିଠାରେ ଲେଖା, ନା ସନ୍ତୁଳା ଓ ଶାଗଖରଡ଼ା ଗୋଟାଏ

ଲେଖାଏଁ ତରକାରୀରେ ଲେଖା ? ପଲାଉ, କାକରା, ନାନମାନ, ମାଲପୁଆ, ଖଜା, ଆରସାପିଠା, ମଦ୍ଧୁର ବେସର, ମାଛ ମାଂସର ବିଭିନ୍ନ ତରକାରୀ ପ୍ରଭୃତି ସିନା ମୋ ଝିଅ ଆମ ଘରେ ରନ୍ଧା ହେବାର ଦେଖିଛି—ଏ ବାଜେ ଜିନିଷ ଗୁଡ଼ାକ ରାନ୍ଧିବାକୁ କହିଲେ ସେ କେଉଁଠୁ ରାନ୍ଧିଜାଣିବ ? ତୁମେ ଏ ବାଜେ ଜିନିଷ ସବୁ ରନ୍ଧାଇ ମୋ ଝିଅର ହାତ ଖରାପ କରିଦେଲଣି । ତୁମେ ଆଗେ ଏ ଭଲ ଭଲ ଜିନିଷ ସବୁର ରନ୍ଧା ଶିଖି ସେ ସବୁ ଆମଘର ଭଦ୍ରଲୋକଙ୍କୁ ଖୁଆଅ, ତେବେ ତୁମେ ରାନ୍ଧିବ ଓ ସେ ରାନ୍ଧିବ, ଦେଖିବ କାହାର ହାତ ଭଲ ।'' ଏ ଉତ୍ତରରେ ସମୁଦ୍ଧୁଣୀ ହସିବ କି ରାଗିବ ଠିକ୍ କରିନପାରି ରାଗ ତମ ତମ ହୋଇ ସେଠାରୁ ଉଠି ପଳାଇଲା ।

ଶାଶୁ ପ୍ରଭୃତି ନିଜ ଗୁରୁଜନଙ୍କ ଗୋଡ଼ ଘଷା ଛଡ଼ା ଗାଁ ପାଖଆଖର ଅନ୍ୟାନ୍ୟ ବୁଢ଼ୀଶ୍ରେଣୀସ୍ଥ ଲୋକ ଆସି ବୋହୂର ଗୋଡ଼ଘଷା ପରୀକ୍ଷା କରି ଯାଉଥିଲେ । ଥରେ ଗୋଟିଏ ଗୋଦରା ବୁଢ଼ୀ ଗୋଡ଼ଘଷା ଖାଇବା ପାଇଁ ଗୋଟିଏ ନୂଆବୋହୂ ପାଖରେ ଆସି ପହଞ୍ଚିଲା । ବୋହୂଟି ତରତରରେ ଶିକା ଦେହରୁ ରାଶିତେଲ ଆଣିବା ପରିବର୍ତ୍ତେ ଭୁଲରେ ପୁଲଙ୍ଗ ତେଲ ଘଡ଼ିଟି ଆଣି ପୁଲଙ୍ଗ ତେଲ ଲଗାଇ ଘଷିଦେବାରେ, ବୁଢ଼ୀ ତାକୁ ଗାଳିଦେଇ ପାଟି କରିବାରୁ, ଶାଶୁ ଆସି ବୋହୂ ଗାଲକୁ ଦୁଇ ଖୁଦା ମାରି ବୁଢ଼ୀକୁ କ୍ଷମାପ୍ରାର୍ଥନା ମାଗି ବୁଢ଼ୀର ଅଭିଶାପରୁ ତାର ବଂଶକୁ ରକ୍ଷାକଲା ।

ଏପରି ଦୁଃଖୀ ବନ୍ଦୀ ଜୀବନରୁ ସାମୟିକ ଉଦ୍ଧାର ଲାଭ କରିବାକୁ ବାପାଙ୍କ ଭାଇ କେବେ ଆସି ଦିନେଅଧେ ପାଇଁ ବାପଘରକୁ ନେବାକୁ, ସେମାନଙ୍କ ପଥ ଚାହିଁ ଚାହିଁ ବୋହୂମାନଙ୍କର ସମୟ କଟୁଥିଲା । ସେମାନେ ନାଥଯୋଗୀ ମାନଙ୍କ ମାଧ୍ୟମରେ ବାପଘର ଖବର ଜାଣିବାକୁ ଓ ବାପଘର ସଙ୍ଗେ ସମ୍ପର୍କ ରଖିବାକୁ ନାଥଯୋଗୀର ବାଟକୁ ଉଦ୍‌ଗ୍ରୀବ ହୋଇ ଚାହିଁରହୁଥିଲେ । "ଲଇଖଣ ଯୋଗୀ'' କବିତାଟିରୁ ନାଥଯୋଗୀର ସେତେବେଳ ସମାଜରେ ପ୍ରୟୋଜନୀୟତା ଓ କାର୍ଯ୍ୟକଳାପର ପରିଚୟ ମିଳିପାରିବ ।

ଲଖଣିଆ ନାଥ କେନ୍ଦେରା ବଜାଏ ଗାଆଁ ଗାଆଁ ବୁଲି ବୁଲି
ଗାଆଁ ବାଡ଼ପଟେ କେନ୍ଦେରା ମୂର୍ଚ୍ଛନା ପବନରେ ଯାଏ ଖେଳି ।
ଶାଶୁ ଶୁଣେ ଗୀତ ଦିଅଇ ବରଦ 'ସୀତା' ଦୁଃଖ ଶୁଣିବାକୁ
ଝିଅ କହେ ବୋଲ ଜେମାଦେଈ କଥା, ବରିଲା ଯେ ସାଧବକୁ ।

ଗ୍ରେଷ୍ଟ ପିଲା ଆସି ବେଢ଼ିଯାନ୍ତି ପାଶେ କହନ୍ତି, ତୁ ଗପ କହ,
ନୂଆ ବୋହୂ ଉପ୍ରେ କବାଟକଣରେ ବସନେ ପୋଛୁ ତା ଲୁହ ।
ଲଇଖଣ ନଶ୍ଚେ ଯାଇଥିବ ତାର ବାପଘର ଆଡ଼େ ଏବେ
ମାଆ ଦେଇଥିବ ଖବର ତା ହାତେ ହେଳା ନ କରିଣ କେବେ ।
ମନେ ନାଚଯାଏ ତାର ଗାଆଁ ଛବି, ଚମ୍ପା, ରମା ସାଙ୍ଗ କଥା
କେତେ ବୁଲିଥିଲା ଆନନ୍ଦ ମନରେ ନତ ନ କରି ତା ମଥା ।
ଏବେ ବୋହୂ ହୋଇ ଶାଶୁଘରେ ବନ୍ଦୀ, ସହେ ସବୁରି ଗଞ୍ଜଣା
ବସିବା ଖାଇବା ସବୁଥିରେ ଦୋଷ ମହାଦୋଷୀରେ ସେ ଗଣା ।
ଗୁଡ଼ଲ ଫୁଂଙ୍କକ ଆଞ୍ଜୁଳାରେ ଧରି ଲଇଖଣ ଥାଏ ଗୁହାଁ
ବାଗ ଦେଖି ଧୀରେ ଲଇଖଣ ଆସେ ଗୁଡ଼ଲ ପାଇବା ପାଇଁ ।
ଫୁସୁ ଫୁସୁ କରି କହଇ ବୋହୂକୁ ଲଇଖଣେ ଧୀରେ ଧୀରେ
ଅଥବା ଅଣ୍ଟାରୁ କାଢ଼ିଣ ଚିଠାଉ ଗୁଞ୍ଜିଦିଏ ତା ହାତରେ ।
ବୋଉ ଲେଖିଥିବ, ବାପା ବା ଆସିବେ ତାହାକୁ ନେବାକୁ ଫେରି
ଲୁଚାଇ ଚିଠିଟି ପଢ଼ିବା ପାଇଁକି ଗୃହଯାଏ ସିଏ ତ୍ୱରି ।
କେବେ କେବେ ପୁଣି ନଣନ୍ଦର ଆଖି ପଡ଼ିଗଲେ ଚିଠି ପରେ
ଛଡ଼ାଇନେଇ ସେ ବଡ଼ପାଟି କରି ସବୁରି ଆଗରେ ପଢ଼େ ।
କେତେ କେତେ ଖିଅ ବାହାରେ ଚିଠିରୁ ନାନା କଥା ଉଠେ ଆସି
ବାପା ମାଆଙ୍କର ଖରାପ ବଢ଼ାଣ ସବୁ ପାଇଁ ବୋହୂ ଦୋଷୀ ।
ଗାଳଖାଏ ବୁଢ଼ା ଲଇଖଣ ଯୋଗୀ କ ଗଞ୍ଜଣା ସହେ ବୋହୂ
ତଥାପି ସେ ଯୋଗୀ ନ ଛାଡ଼େ ଅଭ୍ୟାସ ସିଏ ଯେତେ ତାକୁ କହୁ ।
ଦୁଃଖୀଜନ ସାଥୀ ଲଇଖଣ ଯୋଗୀ ବୁଝେ ଦୁଃଖୀ ମନ କଥା
ମାଆ ସନ୍ତକରେ ଲାଘବ କରଇ ଟିକେ ବୋହୂ ମନ ବ୍ୟଥା ।
ଯାଇଛି ସେ ଯୁଗ ସହେ ନାହିଁ ବୋହୂ ଶାଶୁ ନଣନ୍ଦର ଦାଉ
ଲଇଖଣ ବଂଶ ଗଲେଣିତ ଲୁଚି କେନ୍ଦେରା ନ ବାଜେ ଆଉ ।

× × ×

କମଳାକୁ କିନ୍ତୁ ନାଥଯୋଗୀ କୌଣସି ସାହାଯ୍ୟ କରିବାର ଉପାୟ ନ ଥିଲା । ଆଗରୁ କୁହାଯାଇଛି, ତାର ବାପ ମା 'ଦେଲ ନାଶ ହେଲ ପାରି'

ନ୍ୟାୟୁରେ ବଡ଼ଲୋକଘରେ ଝିଅକୁ ଦେଇ ସମସ୍ତ ସମ୍ପର୍କ ଛିନ୍ନକରିଥିଲେ । ତେଣୁ ସେ ଥିଲା ସଂପୂର୍ଣ୍ଣ ନିଃସଙ୍ଗ । ତାର ସୁଖରେ ସୁଖୀ ହେବାକୁ ବା ଦୁଃଖରେ ଦୁଃଖୀ ହେବାକୁ ଆଉ ଦ୍ୱିତୀୟ ବ୍ୟକ୍ତି କେହି ନ ଥିଲେ ।

ଶାଶୁଙ୍କ ତିରୋଧାନ ପରେ ଘରର ସମସ୍ତ ଦାୟିତ୍ୱ ତା ଉପରେ ପଡ଼ିଲା । କିନ୍ତୁ ସେ ସବୁ ତୁଲାଇବା ପାଇଁ ତାର କୌଣସି ଶିକ୍ଷା ବା ଶକ୍ତି ନଥିଲା । ସେ କଅଣ ଜାଣେ ଯେ କଅଣ ବା ବୁଝିବ ? ଘରଟି ମୁରବିହୀନ ହୋଇଗଲା । ଘରେ ନାନାପ୍ରକାରର ବିଶୃଙ୍ଖଳା ଦେଖାଗଲା । ଗୃହକର ଗୃହକର୍ତ୍ତୀଙ୍କ ଭିତରେ କଳି-ଗୋଳ ଓ ଘରେ ଚୋରି ଗଫଲତି ସବୁ ଆରମ୍ଭ ହୋଇଗଲା ।

ଦିନେ ସେ ଗାଆଁରେ ବଡ଼ ହଇଚଇ ଲାଗିଲା । ପୋଲିସ ଚଉକିଦାର ସବୁ ପଇନ୍ତରା ମାରିଲେ । ଦାଣ୍ଡରେ ଘାଟରେ ଲୋକମାନେ ଭେଳା ଭେଳା ହେଲେ । ଦଉଡ଼ିଦେଇ ଆତ୍ମହତ୍ୟା କରିଥିବା ସୀତା ନାମକ ବୋହୂଟିର ଲାସଟି ଡାକ୍ତରମାଇନା ପାଇଁ ବୁହାହୋଇ ସହରକୁ ଗଲା । ସେତେବେଳକୁ ଲୋକଙ୍କର ମହା ପୋଲିସଭୟ । ସୀତାର ଶ୍ୱଶୁର ପୁଲିସକୁ କିଛି ଅଣ୍ଟାଗୁଞ୍ଜା ଦେଇ ଖୁସି କରିବାକୁ ଚେଷ୍ଟା କଲେ । ତଥାପି ସମସ୍ତଙ୍କର କୋକୁଆଭୟ । ଇଏ ଧରାହେବ, ସିଏ ଧରାହେବ, ଗୁଜବରେ ଗାଆଁଟି ସାରା ଥରହରହେଲା ।

ସୀତା ସେଇ ଗାଆଁର ଝିଅ, ସେଇ ଗାଆଁର ବୋହୂ । ପିଲାଦିନୁ ତା ଉପରେ ପୀତବାସର ଆଖି ଥିଲା । ତାର ପିଲାଦିନେ ପୀତା ଓ ତାଙ୍କ ସଙ୍ଗୀମାନେ ତାକୁ ଥଟ୍ଟାଟାପରା କରୁଥିଲେ । ପିଲାଦିନେ ଖେଳୁ ଖେଳୁ ସେ କେଉଁଠି ପୀତାକୁ ବାହାହେବ ବୋଲି କହିଥିଲା । ସେତେବେଳେ ତ ଅତି ପିଲାଦିନୁ ବାହାଘର ହୁଏ, ବାହାଘର ପରେ ଝିଅ ଘରେ ଲୁଚିକରି ରହେ । ପୁଣି ବୟସ ହେଲେ ବା ଗୃହଯୋଗ୍ୟା ହେଲେ ଶାଶୁଘରକୁ ଯାଏ । ସୀତା ବାହାହୋଇ ବଡ଼ ହେବାରୁ ସେଇ ଗାଆଁର ବୋହୂ ହୋଇଥିବାରୁ ତାକୁ ବେଶି ଲୁଚିବାକୁ ପଡ଼ିଲା । ଘରେ କବାଟକଣରେ ଲୁଚିରହିଲା ଓ କେତେବର୍ଷ ପରେ ଶାଶୁଘରକୁ ଆସିଲା ।

ପୀତା ତାକୁ ବହୁତ ଦିନୁ ଦେଖିନଥିଲେ । ଦିନେ ପୋଖରୀ କୂଳରେ ବୁଲୁ ବୁଲୁ ସେ ଦେଖିଲେ, ଆଉ କେତୋଟି ସ୍ତ୍ରୀଲୋକଙ୍କ ସଙ୍ଗରେ ସଦ୍ୟସ୍ନାତା, ପୂର୍ଣ୍ଣଯୌବନା ସୀତା ପାଣିପୂର୍ଣ୍ଣ କଳସିଟିଏ କାଖରେ ଧରି ମରାଳ ଗତିରେ ଆସୁଛି । ପୀତବାସ ପ୍ରଥମେ ଦୋଦୋଲିଚିତ୍ତା ହେଲେ, କିନ୍ତୁ ତାକୁ ଗୁହାଁରିବାରୁ ସେ ତାଙ୍କୁ ଗୁହାଁ ଟିକିଏ ମୁରୁକିକରି ହସିଦେଲା ।

ପୀତା ତ ସବୁବେଳେ ନିଶାରେ ଭୋଳ, ସେ ମୁରୁକିହସରୁ କଅଣ ବୁଝିଲେ କେଜାଣି, ସ୍ଥାନ-କାଳ-ପାତ୍ର କଥା କିଛି ନ ବିଚାରି, ତା ପାଖକୁ ଝପଟିଯାଇ ତାକୁ କୁଣ୍ଢାଇପକାଇ ତା ଗାଲରେ ଗୋଟିଏ ଚୁମା ଆଙ୍କିଦେଲେ । ତା ହାତରୁ ଗରାଟି ଖସିପଡ଼ିଲା । ସେ ବରଡ଼ାପତ୍ର ପରି ଥରିବାକୁ ଲାଗିଲା । ତାର ସାଥୀମାନେ କରକର ହୋଇ ହସି ହସି ସେଠାରୁ ଦଉଡ଼ିପଳାଇଗଲେ ।

ସେ ଏକୁଟିଆ ଏକାମୁହାଁକେ ଦଉଡ଼ି ଦଉଡ଼ି ଶାଶୁଘରକୁ ପଳାଇଆସିଲା । ଭୁଣ୍ଡିବାଇଦ ତ ସହସ୍ର କୋଶ, ଗୃହେଁ ଗୃହେଁ ସେ ଘଟଣାଟା ଗୃହଆଡ଼େ ପ୍ରଘଟ ହୋଇଗଲା । ସେ କୁଳଟାଟାଏ ବୋଲି ଗୃହଆଡ଼େ ପ୍ରଚାର ହୋଇଗଲା । ତାକୁ ଦେଖାଇ ଶିଖାଇ କିଏ କେତେ କଥା କହିଲେ, କିଏ କେତେ କଥା ଯୋଡ଼ି ଯୋଡ଼ି କଥାଟାକୁ ବଡ଼ କରିବାକୁ ଲାଗିଲେ ।

ତାର ସ୍ୱାମୀ ତାକୁ ଖୁବ୍ ଭଲପାଉଥିଲେ । ଶାଶୁ ଶ୍ୱଶୁର ଖୁବ୍ ଆଦର କରୁଥିଲେ । କିନ୍ତୁ ଏ ଘଟଣା ପରେ ସବୁ ବଦଳିଗଲା । ସେ ସେମାନଙ୍କର ପାଖରେ ଘୃଣ୍ୟ ବୋଲି ବିବେଚିତହେଲା । ତାର ବଞ୍ଚିରହିବା ଅସହ୍ୟ ହୋଇ-ପଡ଼ିଲା । ସେ ଦିନରାତି କାନ୍ଦି କାନ୍ଦି କଡ଼ାରା କାମୁଡ଼ି ପଡ଼ିରହିଲା । ଶେଷରେ ବାଧ୍ୟହୋଇ ଦୁଆର କିଳି ବେକରେ ଦଉଡ଼ି ଲଗାଇ ଆତ୍ମହତ୍ୟାକଲା ।

ଏହାର ପ୍ରଭାବ ଯେ କମଳା ଉପରେ କମ୍ ପଡ଼ିଲା ତା ନୁହେଁ । ତାର ଶ୍ୱଶୁର ପ୍ରକାଶ୍ୟରେ ଓ ଅନ୍ୟମାନେ ଗୁପ୍‌ଚୁପ୍‌ରେ ବା ତାକୁ ଶୁଣାଇ ଶୁଣାଇ ନାନା ପ୍ରକାର କଥା କହିଲେ—ଗରିବଘରର ଝିଅ ସେ, କିଛିତ କେବେ ଦେଖି ନ ଥିଲା, ଏଠାକୁ ଆସି ଏତେ ଧନ ଦେଖି ଭୋଳ – ଘର ସମ୍ଭାଳିବ କିଏ ? ଖାଲି ଖେଳିବାରେ ବ୍ୟସ୍ତ । ଝେଲୁଥା ଲୋ ମା ଖେଳୁଥା ! ଏଣେ କୁମ୍ଭୀର ନେଇ ମଟି ଗଣ୍ଡରେ କଲଣି – ପିଲାର ମନ ଘର ଧରୁ ନାହିଁ । ଯିଏ ସ୍ୱାମୀର ମନ ନ ନେଇ ସ୍ୱାମୀକୁ ସମ୍ଭାଳି ନପାରିବାରୁ ଯାହାର ସ୍ୱାମୀ ସ୍ତ୍ରୀ ତା ଝିଅ ବୋହୂଙ୍କ ପଛରେ ଗୋଡ଼ାଏ, ତା ଠାରୁ ବେଶି ହୀନମାନୀ କିଏ ଅଛି ? ତାର ଜୀବନ ଧିକ୍ ।

ଏହି ସବୁ କଥା ଶୁଣି ଶୁଣି କମଳା କଳାକାଠ ପାଲଟିଗଲା । ଏଣିକି ତାର ଚିନ୍ତା ହେଲା, କିପରି ସ୍ୱାମୀଙ୍କୁ ନିଜ ହାତରେ ସେବାକରି ବାଟକୁ ଆଣିବ । ସେ ତାର ଚେଷ୍ଟାରେ ଲାଗିପଡ଼ିଲା ।

ସ୍ୱାମୀ ଘରକୁ ଆସିଲାକ୍ଷଣି, କମଳା ତାଙ୍କର ଗୋଡ଼ ଧୋଇଦେଇ ପତିଦେବତାଙ୍କ ଗୋଡ଼ଧୁଆ ପାଣି ସେବା କରେ । ସ୍ୱାମୀ ବୁଲି ବୁଲି ଆସି ଖଟଉପରେ ପଡ଼ିଗଲେ, ସେ ଧାଇଁଯାଇଁ ସ୍ୱାମୀଙ୍କ ଗୋଡ଼ ଘଷିବସେ । କିନ୍ତୁ ତାର ଗୋଡ଼ଘଷା ତାଙ୍କୁ ଭଲଲାଗେନାହିଁ, ସେ ଗୋଡ଼ ଛୁଞ୍ଚାଡ଼ି ଦିଅନ୍ତି । ସେ ଜବରଦସ୍ତି କିଛି ସମୟ ଘଷି ସେଠାରୁ ଉଠି କବାଟରେ ବାହାରିଆସେ । ସେ ଏହା ଭିତରେ ରନ୍ଧାବଢ଼ା ଶିଖି, ବହୁପ୍ରକାରର ସୁଆଦିଆ ରନ୍ଧାରନ୍ଧି ପିଠାପଣା କରି ସ୍ୱାମୀଙ୍କୁ ନେଇ ଦେଇ ଖୁସି କରିବାକୁ ଚେଷ୍ଟାକରେ । କିନ୍ତୁ କୌଣସି ଥରେ କିଛି ଲାଭ ହୁଏନାହିଁ, ସବୁଥରେ ସେ ବିଫଳ ହୁଏ । ସ୍ୱାମୀ ବେଳେ ବେଳେ ଘରକୁ ଆସନ୍ତି, କିନ୍ତୁ ଘରେ ଥିଲାବେଳେ ମଧ୍ୟ ତାଙ୍କ ମନ ଆଉ କେଉଁଠାରେ ଥାଏ ।

ଦିନେ ସେ ବହୁ ପ୍ରକାରର ପିଠାପଣା ଇତ୍ୟାଦି କରି ଠା'ବାଢ଼ିଲା । ପ୍ରଥମେ ସ୍ୱାମୀ ଖାଇବାକୁ ମନାକରୁଥିଲେ । ସେ ବହୁତ କାକୁତି ମିନତି ହେବାରୁ ଶେଷରେ ଆସି ଖାଇବା ପାଖରେ ବସିଲେ । ତାଙ୍କର ଚକ୍ଷୁ ଅର୍ଦ୍ଧନିମିଳିତ ଓ ଚକ୍ଷୁର ରଙ୍ଗ ଜବାପୁଷ୍ପପରି ରକ୍ତବର୍ଣ୍ଣ ଧାରଣ କରିଥିଲା । ସେ କମଳାର ସବୁ କଥା ବୁଝିପାରିବା ଭଳି ଅବସ୍ଥାରେ ଥିଲେ କି ନାହିଁ ସନ୍ଦେହ । ସେ ଖାଇବା ପତରରେ ଅଳ୍ପ ଟିକିଏ ହାତ ମାରିଦେଇ ଉଠିପଡ଼ିଲେ । କମଳା ଆଉ ଟିକିଏ ଖାଇବା ପାଇଁ ଯେତେ ନେହୁରା ହୋଇ କହିଲା ସେ ଶୁଣିଲେ ନାହିଁ । କମଳା ଶେଷରେ ଅଭିମାନରେ କହିଲା—କଣ ମୋର ରନ୍ଧା ଭଲ ଲାଗିଲା ନାହିଁ ? କାହିଁକି କେଉଁଥିରେ ହାତ ନ ଦେଇ ଉଠିଗଲ ?

ତା ଉତ୍ତରରେ, ଚଡ଼ା କଣ୍ଠରେ ପୀତବାସ ଉତ୍ତର ଦେଲେ—ତୁ ଝା କଅଣ ଖୁଆଇବୁ ? ମୁଁ ଖାଇକରି ଆସିଛି । ଗୁଲି ଆଡ଼ାର ଚନ୍ଦୁଣୀ ଯେପରି ରାନ୍ଧେ, ତୋ ରନ୍ଧା ତା ରନ୍ଧାର ପାସଙ୍ଗରେ ପଡ଼ିବନି । ଖାଲି କଅଣ ଭଲ ରାନ୍ଧେ, ସେ ବି ଖୁଆଇଜାଣେ । ଖାଇଲାବେଳେ ତାର ଯେଉଁ ନାଚ, ସେ ଯେପରି ନାଚି ନାଚି ହାତରେ ପିଠା ଧରି ଆସି ଖୁଆଇଦେଇଯାଏ ତା ମଜା ତୁ କେଉଁଠୁ ଦେଇପାରିବୁ ? ତା ଖାନା ଆଗରେ ତୋ ଖାନା ଗୋବର ଘଷି ସଙ୍ଗେ ସମାନ ।

ସ୍ୱାମୀଙ୍କର ଏ ଭର୍ତ୍ସନାପୂର୍ଣ୍ଣ କଥା ଶୁଣି କମଳା ବା କି ଉତ୍ତର ଦେବ ? ସେ ସିନା ରାନ୍ଧିବ, ଆଉ ଘରର ବୋହୂ ହୋଇ ନାଚିବ ବା କିପରି ? ସେ ତାର ଅନ୍ତରର କୋହ ଚାପି ମାରିବ ରହିଲା ।

କମଳା ବିନବାଡ ଏହିସବୁ କଥା ଭାବବାକୁ ଲାଗିଲା । ଏ ଚନ୍ଦ୍ରଯୀ କିଏ ? କେତେ ସୁନ୍ଦରୀ ହୋଇଥିବ, ପୁଣି ନାଚ ଜାଣେ, ସେ ତାର ସ୍ୱାମୀଙ୍କର ମନ ପୂରା କିଣିନେଇଛି । ସେ ବିଚାରୀ କରେ କଅଣ ? ସେ ତ କବାଟ କଣରେ ଅପାଠୁଆ ବୋହୂ ! ଘର ଭିତରେ ସିନା ଖେଳ ବୁଲେ, ବାଡ଼ିଦୁଆର ଡେଇଁ ତ କେବେ ବାହାରକୁ ଯାଇନାହିଁ ! ବାହାର ଦୁନିଆ କଅଣ ତାକୁ ଜଣା ନାହିଁ !

ସେତେବେଳେ ତ ସିନେମା ଥିଏଟର କି ରେଡ଼ିଓ ନ ଥିଲା ଯେ ଘରେ ଓ ବାହାରେ ସବୁବେଳେ ନବ୍ୟସଭ୍ୟତାର ଧ୍ୱନି, ନାଚଣା ଗାଉଣା, ବାଜଣା ସବୁ ଶୁଭିବ ବା ପ୍ରେମ ଗୀତର ଲହରୀ ଖେଳିବ ! ପ୍ରେମନାଚ କଅଣ ସେ କେଉଁଠାରୁ ବୁଝିବ ? ସେ କେବଳ ପିଲାଦିନେ ଗାଆଁ ଯାତ୍ରା ଥରେ ଦୁଇଥର ଦେଖିଛି । ଦୂତ, ରଜା, ରାଣୀ ସବୁ ବାହାରନ୍ତି । କିନ୍ତୁ ଏସବୁ ତ କିଛି ଦେଖି ନାହିଁ !

ସେ ସ୍ୱାମୀଙ୍କର ସେହି କଥାଗୁଡ଼ାକ ଭାବିଲା ବେଳକୁ ତାର ମୁଣ୍ଡ ଭିତରଟା କେବଳ ଅଡ଼ୁଆଡ଼ଡ଼ୁଆ ହୋଇଗଲା । ସେ କେବଳ ନିର୍ଜୀବ ପରି ବସିରହି ଉପରକୁ ବଲବଲ କରି ଚାହିଁରହିଲା । ଜୀବଜନ୍ତୁଙ୍କ ସଙ୍ଗେ ହସଖୁସିରେ ଖେଳିବାକୁ ଆଉ ମନ ଲାଗିଲା ନାହିଁ । ଚାକରବାକରଙ୍କ ସଙ୍ଗେ ଅତି ଦରକାର ନ ପଡ଼ିଲେ ଆଉ କଥାବାର୍ତ୍ତା ମଧ୍ୟ କରି ପାରିଲା ନାହିଁ । ଖାଇବା ପିଇବାରେ ମଧ୍ୟ ସ୍ପୃହା କମିଗଲା । ଶେଷରେ ସେ ଏକୁଟିଆ ମୂକହୋଇ ମୁମୂର୍ଷୁ ପରି ପଡ଼ିରହିଲା । ତାକୁ ଯେପରି ଲାଗିଲା ସେ ସବୁଠାରୁ ହୀନ, ତାକୁ ଦୁନିଆ ଲୋକ ସମସ୍ତେ ହେୟ ମନେ କରୁଛନ୍ତି ।

## ଛଅ

ବିଷ୍ଣୁଶର୍ମା ହିତୋପଦେଶରେ କହିଯାଇଛନ୍ତି—ଯୌବନଂ ଧନ ସମ୍ପତ୍ତି ପ୍ରଭୁତ୍ୱମବିବେକତା, ଏକୈକୋପି ଅନର୍ଥାୟ କିମୁଯତ୍ର ଚତୁଷ୍ଟୟଂ । ଏସବୁ ଦୁର୍ଗୁଣ ଗୁଡ଼ିକର ତ ପୀତବାସ ସମ୍ପୂର୍ଣ୍ଣ ଅଧିକାରୀ ଥିଲେ ! ତେଣୁ ପାରିପାର୍ଶ୍ୱିକ ପରିସ୍ଥିତି ପ୍ରତି ପୀତାଙ୍କର ନଜର ନଥାଏ, ଘର ପ୍ରତି ଦୃଷ୍ଟି ନଥାଏ । ଗୁଲିନିଶା, ପଶା ପାଲି, ଜୁଆଖେଳ ପ୍ରଭୃତିରେ ବନ୍ଧୁମାନଙ୍କ ସହିତ ମଉଜ ମଜଲିସରେ ସେ ମଜଗୁଲ ହୋଇ ରହିଥାଆନ୍ତି । ପଇସାପଇ ଦରକାର ହେଲେ, ଘରର

ଆସବାବପତ୍ର କିଛି ଯୋଗାଡ଼କରି ସେ ସବୁକୁ ନଅ ଛଅ କରି ଶସ୍ତାରେ ବିକି ବା ବନ୍ଧାଦେଇ ନିଜ ଖର୍ଚ୍ଚବାର୍ଚ୍ଚ ତୁଲାଇନିଅନ୍ତି । ବାପାତ ବାର୍ଦ୍ଧକ୍ୟ ରୋଗରେ ଶଯ୍ୟାଶାୟୀ, ତାଙ୍କଠାରୁ ଅର୍ଥ ପ୍ରାପ୍ତିର ଆଶା ବି କମ୍ । ବାପାଙ୍କ ପାଖକୁ ଗଲେ ଟଙ୍କା ବଦଳରେ ସେ ଖାଲି ବକର ବକର ହୋଇ ବୃଥା ଉପଦେଶ ଗୁଡ଼ାଏ ଦିଅନ୍ତି । ସେଗୁଡ଼ାକ ତାର ଏ କାନରେ ପଶି ସେ କାନରେ ବାହାରିଯାଏ । କେବଳ ସମୟ ନଷ୍ଟହେବା ସାର ହୁଏ । ତେଣୁ ପୀତା ତାଙ୍କ ପାଖକୁ ପ୍ରାୟ ଯାଆନ୍ତି ନାହିଁ ।

ବୃଦ୍ଧ ହରିହର ବାର୍ଦ୍ଧକ୍ୟ ରୋଗଶଯ୍ୟାରେ ପଡ଼ିରହି ତାଙ୍କର ଗତ ଓ ଭବିଷ୍ୟତ କଥା ଭାବି ଭାବି ଅସ୍ଥିର ହୁଅନ୍ତି । ଭାବନ୍ତି, ପୁଅ କଅଣ ହେବ ବୋଲି ସେ ଭାବିଥିଲେ, ସେ କଣ ହେଲା ? ବଡ଼ହେଲେ ବାହାଶାହା ହେଲେ, ଘରର ଦାୟିତ୍ୱ କାନ୍ଧରେ ପଡ଼ିଲେ ସେ ବାଟକୁ ଆସିଯିବ ବୋଲି ଭାବିଥିଲେ, କିନ୍ତୁ କଅଣ ହେଲା ! ସେ କଅଣ ଆଉ ବାଟକୁ ଫେରିବ ? ସେ ଏତେ କଷ୍ଟରେ ଧନ-ସମ୍ପତ୍ତି କରିଥିଲେ, ସେ ସବୁର ଅବସ୍ଥା କଅଣ ହେବ ? ସେ ନିଜେ ଯୌବନ ଓ କ୍ଷମତାର ମନ୍ତ୍ରଯନ୍ତ୍ରରେ ସମାଜର ଭୂତ ପିଶାଚମାନଙ୍କୁ ଆୟତ୍ତ କରି ବଶ କରି ରଖିଥିଲେ, କିନ୍ତୁ ବର୍ତ୍ତମାନ ତାଙ୍କୁ ଜଳଜଳ ଦିଶୁଚି ସମାଜର ସେଇ ନିଷ୍ପେଷିତ ଭୂତ ପ୍ରେତ ଓ ଖଳ ପିଶାଚମାନେ ତାଙ୍କ ଧନ ସମ୍ପତ୍ତି ଆଡ଼କୁ ଆଙ୍ଗୁଠି ଦେଖାଇ ଧାଇଁ ଆସୁଛନ୍ତି ଯେପରି କି ସବୁ ଗିଳି ଶେଷ କରିଦେବେ ।

ମଣିମାଙ୍କୁ ସେ ଠକିଥିଲେ, ମଣିମା ବଂଶକୁ ସର୍ବସ୍ୱାନ୍ତ କରିଥିଲେ । କିନ୍ତୁ ସେ ମଣିମାଙ୍କୁ ଦରିଦ୍ର ଅବସ୍ଥାରେ ବି ଦିନେ ବିବ୍ରତ ବା ବିଚଳିତ ହେବାର ଦେଖିନଥିଲେ । ସେ ଶ୍ରେଷ୍ଠ ପୁଅଟିକୁ ଛାଡ଼ି, ଗୋପାଳ ଗୋପାଳ ଡାକି ଡାକି ନିର୍ବିକାର ଭାବେ ଆଖି ମୁଦିଲେ । କିନ୍ତୁ ସେ ବା ଗୋପାଳଙ୍କୁ କେବେ ଡାକିଛନ୍ତି ? ଗୋପାଳ କାହିଁକି ନିଜ କୋଳରେ ତାଙ୍କୁ ସ୍ଥାନ ଦେବେ ? ଚିନ୍ତା ଚିତା ଦ୍ୱୟମଧ୍ୟେ ଚିନ୍ତା ଏବ ଗରୀୟସୀ ସେ ଚିନ୍ତାରେ ହିଁ ଖାଦ୍ୟପେୟ ଛାଡ଼ି ମ୍ରିୟମାଣ ହୋଇ ପଡ଼ିରହିଲେ ।

ଦିନରାତି ନାନା ଦୁଃସ୍ୱପ୍ନ ଦେଖି ସେ ଛଟପଟ ହେଲେ । ତାଙ୍କୁ ସବୁ ଅନ୍ଧାର ଦିଶିଲା । ତାଙ୍କ ନଜର ଚିତାଗ୍ନି ଲେଲିହାନ ଜିହ୍ୱା ମେଲାଇ ତାଙ୍କ ଆଗରେ ନାଚିଲା ପରି ଲାଗିଲା । ପ୍ରଭାତ ଓ ମଧ୍ୟାହ୍ନର ସମସ୍ତ ମଧୁର ସ୍ମୃତିକୁ

ପଛକୁ ଠେଲି ତାଙ୍କ ଜୀବନ ସେଇ ଭବିଷ୍ୟତ ଚିତାଗ୍ନିର ଧୂମାଳ ଦିଗନ୍ତ ଆଡ଼କୁ ଟାଣି ହେବାକୁ ଲାଗିଲା । କବିଙ୍କ ଉକ୍ତିରେ ତାଙ୍କର ହେଲା "ଦିନର ଶେଷ" ।

ପଶ୍ଚିମ ନଭଦେଶେ ଆଲୋକ ଆସେ ଲିଭି
ମାନସେ ଦିଶି ଉଠେ ତରୁଣ ରବି ଛବି ।
ଅଶାନ୍ତ ସାଥେ ନେଇ ପ୍ରଭାତ ଗଲା କାହିଁ
ଧୂମାଳି ଦେହଧରି ଆଗତ ଆସେ ଧାଇଁ ।
କେତେ ରବି ଲିଭିଛି ସେଇ ସେ ଧୂଆଁ ତଳେ
ଦିନ ପହିଁଚ ଯାଏ ସେଠାରେ ବଳେ ବଳେ ।

କିଛି ଦିନ ପରେ ଚହଳପଡ଼ିଗଲା—"ମୁକ୍ତାରେ ଗୁଜିଗଲେ ।" ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି । ଅବଶ୍ୟ ଏ ଯୁଗରେ ସେ ବାଣୀ କାହିଁକିରୁନାହିଁ; ସେ ଯଦି ସେକାଳରେ ନମରି ଏକାଳରେ ମରିଥାନ୍ତେ, ତେବେ ହୁଏତ ଖବରକାଗଜମାନେ ତାଙ୍କର ଫଟୋ ଦେଇ ଅଭିଧାନରୁ ନାନାପ୍ରକାର ସୁଗୁଣର ବିଶେଷଣ ବାଛିକରି ତାଙ୍କ ନାମ ପାଖରେ ଯୋଡ଼ି ଛପାଇ ଥାନ୍ତେ । ସେ ଭଲ କି ମନ୍ଦ ଲୋକ ତାହା ଖବରକାଗଜ ପଢ଼ୁଥିବା ଯମଦୂତମାନେ ବି ଠିକ୍ କରି ପାରନ୍ତେ ନାହିଁ । ସେଥିରେ ଯମ ଭେଳିକା ବନିଯାଇ ତାଙ୍କୁ ସ୍ୱର୍ଗକୁ ନିବାକୁ ବାଟ ଛାଡ଼ି ଦେଇ ଥାଆନ୍ତେ । ସେ ଯାହାହେଉ, ତାଙ୍କ ମୃତ୍ୟୁରେ ବ୍ୟସ୍ତ ହେବା ଲୋକ ଖୁବ୍ କମ୍ ଥିଲେ । ସମସ୍ତଙ୍କ ମୁହଁରୁ ଯେପରି ଗୋଟିଏ ଆଶ୍ୱସ୍ତିର ନିଶ୍ୱାସ ବାହାରି ପଡ଼ୁଥିଲା । ଉପରେ ଉପରେ ବ୍ୟସ୍ତହୋଇ କେତ୍ରି କେତ୍ରି ପାଖଲୋକ ଆଖିରେ ପାଣି ଲଗାଇ କନାରେ ପୋଛୁବା ଛଡ଼ା ଅନ୍ୟମାନେ ପ୍ରାୟ ଗୁଣୁ ଗୁଣୁ ହୋଇ ତାଙ୍କର ଦୁର୍ଗୁଣ ଗାଇବାକୁ ଲାଗିଲେ ।

ପୀତା ତାଙ୍କ ସଖାମାନଙ୍କର ପରାମର୍ଶରେ ଏକ ବିରାଟ ଶ୍ରାଦ୍ଧଭୋଜର ଯୋଜନା ପ୍ରସ୍ତୁତକଲେ । ସହରକୁ ଯାଇ ଜମିବାଡ଼ି ବନ୍ଧାଦେଇ ଭିନ୍ନ ଭିନ୍ନ ମହାଜନଙ୍କଠାରୁ କଡ଼ା ସୁଧରେ ଟଙ୍କା କରଜ କରି ଆଣିଲେ । ବହୁତ ଟଙ୍କା ପଇସା ଖର୍ଚ୍ଚକରି ମହାଜାକଜମକରେ ପିତାଙ୍କର ଶୁଦ୍ଧଘର କଲେ । ଲୋକେ କହନ୍ତି ସେ ଖଣ୍ଡମଣ୍ଡଳରେ ଶହେବର୍ଷ ଭିତରେ ବି ମଧ୍ୟ ଏପରିକା ଶୁଦ୍ଧିଘର କାହାର ହୋଇନଥିଲା ।

ସେ ଶୁଦ୍ଧିଶ୍ରାଦ୍ଧର ପ୍ରଭାବରେ ମୁକ୍ତାରଙ୍କ ଆତ୍ମା ସ୍ୱର୍ଗକୁ ଗଲା କି ନାହିଁ ତାହା ଅବଶ୍ୟ କେବଳ ଭଗବାନ ଜାଣନ୍ତି, ଶୁଦ୍ଧି କାର୍ଯ୍ୟର ଆଡ଼ମ୍ବରରେ ଓ

ପଣ୍ଡିତମାନଙ୍କର ମନ୍ତ୍ର ଧ୍ୱନିରେ ତାଙ୍କ ଆତ୍ମା ସ୍ୱର୍ଗ ଆଡ଼କୁ ନିଶ୍ଚୟ ଉଠିଥିବ । କିନ୍ତୁ ସେ ତାଙ୍କ ଜୀବନକାଳ ମଧ୍ୟରେ କେଉଁ ନିରାଶ୍ରୟ, ଅସହାୟର ସମ୍ପତ୍ତି ଆତ୍ମସାତ୍ କରି, କାହାକୁ ବୃଥାରେ ମାଲିମକଦ୍ଦମାରେ ପକାଇ, କାହାର ସମ୍ପତ୍ତି ଲୁଟିକରି, କାହାକୁ ଅନାହାରରେ ମାରି ସେ ଯେତେଗୁଡ଼ାଏ ଅସନ୍ତୁଷ୍ଟ ଭୂତ ପ୍ରେତ ସୃଷ୍ଟି କରିଥିଲେ, ସେଗୁଡ଼ାକୁ ସତ୍ୟବାଦୀର ଧର୍ମପ୍ରାଣ ମଣିମାଙ୍କର ଆତ୍ମା ଅଟକାଇ ଦେଇନଥିଲେ । ସେମାନେ ମୁକ୍ତାରଙ୍କୁ ସ୍ୱର୍ଗର ବାଟ ଓଗାଳି ତାଙ୍କୁ ନର୍କକୁ ଠେଲିଦେଇଥିବେ । ସେ ଯାହାହେଉ,ସେ ନର୍କକୁ ଗଲେ କି ସ୍ୱର୍ଗକୁ ଗଲେ, କିନ୍ତୁ ତାଙ୍କ ଅତୃପ୍ତ ଆତ୍ମାର ଅନ୍ତିମ ପ୍ରାର୍ଥନା ସେହିପରି ରହିଗଲା । ତାଙ୍କ ପୁଅ ପୀତା ଆଉ ବାଟକୁ ନଆସି ସେଇ ଅବାଟରେ ଅବାଧଗତିରେ ଆଗେଇଚାଲିଲେ । "ବୁଡ଼ିଗଲା ଗୋଡ଼ ତଳକୁ ତଳକୁ"—ସେ ଆଉ ଉପରକୁ ଉଠିବେ ବା କିପରି ?

ଦିନକୁଦିନ ପୀତାଙ୍କ ମଉଜମଜଲିସ ଯେତିକି ଜୋର୍‌ରେ ଚାଲିଲା, ଦେଣା ସେତିକି ପରିମାଣରେ ବଢ଼ିଲା । ସାଙ୍ଗସାଥୀଙ୍କର କୁପରାମର୍ଶରେ ଖର୍ଚ୍ଚାନ୍ତ ହେଲାବେଳକୁ ଦେଣାଦାର ମହାଜନମାନଙ୍କ ଉତ୍ପାତରେ ସେ ବ୍ୟସ୍ତ ହୋଇ-ପଡ଼ିଲେ । ସୁଖ ବେଳର ସାଥୀମାନେ ତାଙ୍କର ଆର୍ଥିକ ଦୁରବସ୍ଥା ଦେଖି ତାଙ୍କର ବିପଦ ବେଳକୁ ମୁହଁ ପୋଛିଦେଇ ଦୂରରେ ଯାଇ ଠିଆହେଲେ । ଶତ୍ରୁମାନେ ତାଙ୍କୁ ନାନା ପ୍ରକାର ମାଲିମକଦ୍ଦମାରେ ପକାଇ ଅସ୍ତ ବ୍ୟସ୍ତ କଲେ । ଯେଉଁ ସାଥୀମାନେ ତାଙ୍କର ଅତି ପ୍ରିୟଥିଲେ ସେମାନଙ୍କ ଭିତରୁ କେହି କେହି ଶତ୍ରୁ ପଟର ହାତ ହୋଇ ତାଙ୍କ ବିରୁଦ୍ଧରେ ମିଛ ମକଦ୍ଦମାରେ ସାକ୍ଷୀ ହେବାକୁ ପଛଘୁଞ୍ଚା ଦେଲେ ନାହିଁ । ସେ ଅଭାବ ଅନଟନରେ ବୁଡ଼ିରହିବା ସଙ୍ଗେ ସଙ୍ଗେ, ଚାକରବାକର ଦରମାପଇ ନପାଇ ଗୋଟି ଗୋଟି ହୋଇ ଖସିଗଲେ । ଅତିଥି ଅଭ୍ୟାଗତ, ସାଙ୍ଗସୁଖ, ଆଉ କେହି ସେ ଘରେ ପାଦ ମଧ୍ୟ ପକାଇଲେ ନାହିଁ । ଅଧିକାଂଶ ସୌଖୀନ୍ ପୋଷା ଜୀବଜନ୍ତୁ ଖାଦ୍ୟ ଓ ଯତ୍ନ ଅଭାବରେ ଅସ୍ଥିସାରଶୂନ୍ୟ ହୋଇ ଗୋଟିକ ପରେ ଗୋଟିଏ ଇହଲୀଳା ସାଙ୍ଗକଲେ । ଘୋଡ଼ା ଗାଈ ପ୍ରଭୃତି ଗୃହପାଳିତ ପଶୁ ଅଳ୍ପ ମୂଲ୍ୟରେ ବିକି ମଧ୍ୟ ହୋଇଗଲେ—ଆଉ ସୌଖୀନ ଜୀବଙ୍କୁ ପଡ଼ୋଶୀ ଓ ଚାକରବାକର ନେଇ ପୋଷିଲେ ।

ଯେ ଘରଦ୍ୱାର କୋଠାବାଡ଼ିଗୁଡ଼ିକ ମୁକ୍ତାରଙ୍କ ସମୟରେ ପରିଷ୍କାର ପରିଚ୍ଛନ୍ନ ରହି ଚକ୍ ଚକ୍ ଦିଶୁଥିଲା, ସେଗୁଡ଼ିକ ମଇଳା ଆବର୍ଜନା ପୂର୍ଣ୍ଣ ହୋଇଗଲା ।

ଧିଲେଇ ଓ ସାମୟିକ ମର୍ମାନ୍ତ ଅଭାବରୁ କୋଠା କାନ୍ଥରୁ ଚୂନ ଖସିଲା ! ଦୂରରୁ ଦେଖିଲେ ଭୂତ କୋଠି ପରି ସେ ଘର ଖାଁ ଖାଁ ଗୋଡ଼ାଇଲା ପରି ଲାଗିଲା ।

କମଳା ନ ଖାଇ ନ ପିଇ ଚିନ୍ତାରେ ପଡ଼ ପଡ଼ ଶେଷରେ ତାର ମୁଣ୍ଡ ଗୋଳମାଳ ହୋଇ ତାକୁ ଅପସ୍ମାର ବାତ ଧରିଲା । ସେ ବେଳେ ବେଳେ ଚେତା-ଶୂନ୍ୟ ହୋଇଯାଏ । ଠିଆହୋଇଥିଲା ବେଳେ କି ବୁଲାଚଲା କରୁଥିଲା ବେଳେ ହଠାତ୍ ଦୁମ୍‌କରି ତଳେ ପଡ଼ି ଖଣ୍ଡିଆ ଖାବରା ହୁଏ । ପୀତବାସ ଅଭାବରେ ପଡ଼ି ବାହାରେ କାହାକୁ ମୁହଁ ଦେଖାଇ ନ ପାରି ଘରେ ରହିବାକୁ ଚେଷ୍ଟା କଲେ ! କିନ୍ତୁ ଘରେ କଅଣ ଅଛି ବା ଆଉ କିଏ ଅଛି ଯେ ତାଙ୍କ ଘରେ ସେ ଖୁସିରେ ରହିବେ ? କମଳା ଥାଇ ନ ଥିଲା ପରି; କେତେବେଳେ ବାତ ମାରି ପଡ଼ିବ ତାର ଠିକଣା ନାହିଁ ।

ଦିନେ ପୀତବାସ ଘର ଭିତର ବାରଣ୍ଡାରେ ବସିଛନ୍ତି, ହଠାତ୍ କୋଠାର ଲଣ୍ଡାଗୁଡ ଉପରୁ ଅଗଣା ଭିତରକୁ କଅଣ ଗୋଟାଏ ଦୁମ୍ କରି ପଡ଼ିବାର ଶବ୍ଦ ହେଲା । ସେ ଅଗଣାକୁ ଦୌଡ଼ିଯାଇ ଦେଖିଲେ କମଳା ରକ୍ତାକ୍ତ ଅବସ୍ଥାରେ ମେଞ୍ଚାଏ ହୋଇ ପଡ଼ିଛି । ମୁଣ୍ଡରେ ଆଘାତ ବାଜିବା ସଙ୍ଗେ ସଙ୍ଗେ ପ୍ରାଣବାୟୁ ଉଡ଼ିଯାଇଛି । ଛାତ ଉପରୁ ଲୁଗା ତୋଳିବାକୁ ଗଲାବେଳେ ହୁଏତ ତାକୁ ବାତ ମାରିଛି, ସେ ଅଚେତ ଅବସ୍ଥାରେ ତଳକୁ ଖସିପଡ଼ି ମୃତ୍ୟୁ ବରଣ କରିଛି । ପୀତବାସଙ୍କର ଦୁଃଖକରିବାର କିଛି ନ ଥିଲା କି ସୁଖୀ ହେବାର କିଛି ନ ଥିଲା । କମଳା ପ୍ରତି ତାଙ୍କର କୌଣସି ଆକର୍ଷଣ ନ ଥିଲା । ସେ ବି ତା ସଙ୍ଗରେ କେଉଁଦିନ ସଂପର୍କ ରଖିଥିଲେ ଯେ ପତ୍ନୀହରା ହୋଇ ବା ନିଃସଙ୍ଗ ଅନୁଭବ କରି ଦୁଃଖ କରିବେ ? ଯାହାହେଉ କମଳାର ଶେଷକୃତ୍ୟ କରିବା ତ ତାଙ୍କର କର୍ତ୍ତବ୍ୟ, ତେଣୁ ସେ ସାଇବାଲାଙ୍କୁ ଡାକିବାକୁ ଗଲେ । ଦୁଇ ଗୃହଜଣ ଆସି କମଳାର ଏପରି ଅବସ୍ଥା ଦେଖି ଶବ ଉଠାଇବେ କଅଣ ଗୁନିଆ ହୋଇ ଗୁଡ଼ ପକାଇଲେ । ସେଥିରୁ କେହି ଜଣେ ଚଉକିଦାରକୁ ଖବର-ଦେଇଦେଲା । ଚଉକିଦାର ଲାସ ଉଠାଇବା ବନ୍ଦ ରଖିବାକୁ କହି ଥାନାକୁ ଦୌଡ଼ିଲା ।

ଥାନାରୁ ଦାରୋଗା ପ୍ରଭୃତି ଆସି ହତ୍ୟା ମାମଲା ହୋଇପାରେ ବୋଲି ସନ୍ଦେହ କରି ଲାସ ସହରକୁ ଚାଲାନ କରିବାକୁ ଆଦେଶଦେଲେ ଓ ସନ୍ଦେହରେ ପୀତବାସଙ୍କୁ ସାଙ୍ଗରେ ନେଇଗଲେ । ଦିନା କେତେ କେସ୍ ଚାଲିଲା ।

ଚୀତାଙ୍କର ପୁଅସବୁ ଅଣ୍ଟାଗୁଞ୍ଜା ବାବଦରେ ଓ କଚେରୀ ଅମଲାଙ୍କ ବାବଦରେ ବେଶ୍ କିଛି ଖର୍ଚ୍ଚ କରିବା ପରେ ସେଥିରୁ ମୁକ୍ତି ମିଳିଲା । ତାଙ୍କୁ ଏକୁଟିଆ ବହୁତ ଥର ସହରକୁ ଦଉଡ଼ାଦଉଡ଼ କରିବାକୁ ପଡ଼ିଲା । କେହି କେହି ତାଙ୍କର ଏ ଅବସ୍ଥାର ସୁବିଧା ନେଇ ତାଙ୍କୁ ସାହାଯ୍ୟ କରିବାର ଛଳନା କରି ବି କିଛି ପଇସା ହାତରେ ପକାଇଲେ ।

ମୁକ୍ତାରେ ଥିଲାବେଳେ ସତ ଆତ୍ମହତ୍ୟା ମୋକଦ୍ଦମାରେ ମଧ୍ୟ କେହି ତାଙ୍କୁ ଛୁଇଁ ପାରି ନଥିଲେ । କିନ୍ତୁ ନିଜ ସ୍ତ୍ରୀର ମୃତ୍ୟୁରେ ସେ ଗୁଡ଼ାଏ ଦୋଷରୁ ଘା ହୋଇ ପୂରା ସର୍ବସ୍ୱାନ୍ତ ହୋଇଗଲେ ।

କମଳାର ଶ୍ରାଦ୍ଧଘର ସରିଲା । ମକଦ୍ଦମା ଅଡୁଆ ବି ତୁଟିଲା । ତାଙ୍କ ମନ ହାଲୁକା ହେଲା । ବର୍ତ୍ତମାନ ବନ୍ଧନ ପୂରା ତୁଟିଛି । କଣ୍ଟା ହୋଇ ରହିବାକୁ ସ୍ତ୍ରୀ ଆଉ ନାହିଁ । ତାକୁ ସେ ନ ପଚାରି ଅବହେଳା କରୁଛନ୍ତି ବୋଲି ଆଉ କେହି କହିବେ ନାହିଁ । ସେ ଅପବାଦରୁ ପୂରା ମୁକ୍ତ ହେଲେ । ଏଣିକି ଚନ୍ଦ୍ରୀ ସଙ୍ଗେ ସେ ଅବାଧରେ ମିଶିପାରିବେ । ସେ ଅନେକ ଦିନୁ ଏ ଜଞ୍ଜାଳ ସବୁରେ ବ୍ୟସ୍ତ ରହି ଚନ୍ଦ୍ରୀ ଘରକୁ ଯାଇପାରିନଥିଲେ । ତାଙ୍କର ଧାରଣା, ଅନ୍ୟମାନଙ୍କଠାରୁ ଚନ୍ଦ୍ରୀ ତାଙ୍କୁ ବେଶି ଭଲପାଏ, ଏକଥା ମଧ୍ୟ ସେ ନିଜ ଆଉ କେତେଥର ତାଙ୍କୁ କହିଛି । ତେଣୁ ସେ ଭାବିଲେ, ନିଶ୍ଚୟ ଏତେଦିନ ନ ଦେଖି ଚନ୍ଦ୍ରୀ ଝୁରୁଥିବ ଓ ତାଙ୍କୁ ଦେଖିଲେ ବଡ଼ ଆଦର କରିବ । ସେ ଚନ୍ଦ୍ରୀ ଘରକୁ ଗଲେ, କିନ୍ତୁ ଫଳ ଫଳିଲା ଠିକ୍ ଓଲଟା । ଚନ୍ଦ୍ରୀ ପରି ବାରନାରୀ ତାଙ୍କୁ ପ୍ରକୃତରେ ଭଲ ପାଇବ କାହିଁକି ? ସେ ଭଲ ପାଉଥିଲା ତାଙ୍କ ଟଙ୍କାକୁ । ଏବେ ତ ଟଙ୍କା ନାହିଁ—ତାଙ୍କଠାରେ ଆଉ ତାର କଅଣ ଆକର୍ଷଣ ଅଛି ? ସେ ନଦେଖିଲେ ଯେଉଁ ଚନ୍ଦ୍ରୀ ଦିନେ ଏତେ ଆଦର କରି କେତେ ସୁଖାଦ୍ୟ ଭଲ କରି ରାନ୍ଧି ଖୁଆଉଥିଲା, ସେ ମଧ୍ୟ ପ୍ରଥମେ ପ୍ରଥମେ ଭଲକରି କଥାବାର୍ତ୍ତା କଲା ନାହିଁ । ଶେଷରେ ଅର୍ଥପ୍ରାପ୍ତିର କୌଣସି ଆଶା ନ ଦେଖି ଧେକ୍‌ରେକ୍ କରି ଦୁର୍ବ୍ୟବହାର କରିବାକୁ ମଧ୍ୟ ପଛାଇଲା ନାହିଁ । ତଥାପି ତାଙ୍କର ଜ୍ଞାନୋଦୟ ହେଲା ନାହିଁ । ସେ ତାକୁ ଖୁସି କରିବାକୁ ନାନା ଉପାୟ ଉଦ୍ଭାବନ କରିବା ପାଇଁ ଚିନ୍ତା କଲେ । ସେ ଯେତିକି ଯେତିକି ତାଙ୍କର ପାଖରୁ ଦୂରେଇଲା, ଇଏ ସେତିକି ସେତିକି ତା ଆଡ଼କୁ ଟାଣିହେଲେ ।

# ସାତ

ସତ୍ୟବାଡ଼ିର ମନ୍ଦିର ନିର୍ମାଣ ହେବା ପରେ ସେବକସାଇ ସାଙ୍ଗକୁ ସାନବଜାର, ବଡ଼ବଜାର ଓ ବ୍ୟବସାୟୀମାନଙ୍କର ବାସସ୍ଥଳୀ ଗୋପାଳପୁର ପାଟଣା ପ୍ରଭୃତି ଗଢ଼ି ଉଠିଲା । ସତ୍ୟବାଡ଼ି ବାର ଯାତ୍ରାଯାତ୍ରା ଓ ବ୍ୟବସାୟର କେନ୍ଦ୍ରସ୍ଥଳୀ ହେଲା ।

ବହାସ୍ତି ଓଡ଼ା ସେ କାଳେ ସତ୍ୟବାଡ଼ି ଗୋପାଳପୁର ପାଟଣାର ଜଣେ ପ୍ରଖ୍ୟାତ ନଡ଼ିଆ ବ୍ୟବସାୟୀ ଓ ଜମିଦାର । ଗୋପାଳଙ୍କର ସେ ଜଣେ ପରମ ଭକ୍ତ ଓ ଦୟାଳୁ ବ୍ୟକ୍ତି । ସେ ପଇସା ଯେପରି ରୋଜଗାର କରନ୍ତି, ଅତିଥି ଅଭ୍ୟାଗତ, ସନ୍ଥ ଓ ବାବାଜମାନଙ୍କର ସେବାରେ ସେହିପରି ଖୋଲା ହାତରେ ଖର୍ଚ୍ଚ ମଧ୍ୟ କରନ୍ତି । ତାଙ୍କ ଦୁଆରୁ କେବେ କେହି ଅତିଥି ଅଭ୍ୟାଗତ କି ଅଭାବଗ୍ରସ୍ତ ବ୍ୟକ୍ତି ଖାଲି ପେଟରେ କି ଖାଲି ହାତରେ ଫେରନ୍ତି ନାହିଁ । ସାଧୁସନ୍ଥଙ୍କ ପାଇଁ ସବୁବେଳେ ତାଙ୍କ ଦୁଆର ଖୋଲା । ସତ୍ୟବାଡ଼ି ରାଜା ବା ବଡ଼ମଣିମାଙ୍କୁ ଓଡ଼ା ମହାଶୟ ଅତ୍ୟନ୍ତ ଭକ୍ତିକରୁଥିଲେ । ତାଙ୍କର ପୁଅ ସାନମଣିମାଙ୍କୁ ମଧ୍ୟ ଖୁବ୍ ସ୍ନେହ କରନ୍ତି, ଗୋପାଳଭକ୍ତ ଭାବରେ ନିଜର ଲୋକ ବୋଲି ମନେକରନ୍ତି । ତାଙ୍କର ନଡ଼ିଆ ବ୍ୟବସାୟ ଯୋଗୁଁ ଭାରତର ନାନା ସହରରେ ବଡ଼ ବଡ଼ ବ୍ୟବସାୟୀଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ।

ପ୍ରଥମେ ଇଂରେଜମାନଙ୍କର ରାଜତ୍ୱବେଳେ ଓଡ଼ିଶା ପ୍ରଦେଶ ବୋଲି କିଛି ନ ଥିଲା । ଓଡ଼ିଶାରୁ ଖଣ୍ଡେ, ବିହାର, ପଶ୍ଚିମବଙ୍ଗ, ବଙ୍ଗଳାଦେଶ ଓ ଏବର ଆସାମ ପଟର ପ୍ରଦେଶଗୁଡ଼ିକ, ଏ ସବୁ ମିଶି ବଙ୍ଗଳା ପ୍ରେସିଡ଼େନ୍ସି ପ୍ରଦେଶ ହୋଇଥିଲା । କଲିକତା ତାର ଥିଲା ରାଜଧାନୀ । ଏବେ ସେଇ ଗୋଟିଏ ପ୍ରଦେଶରୁ କେତେ ପ୍ରଦେଶ ହେଲାଣି । ସେଥିରୁ ବଙ୍ଗଳାଦେଶ ବୋଲି ଆଉ ଗୋଟିଏ ଦେଶ ମଧ୍ୟ ବାହାରି ପଡ଼ିଲାଣି । ପ୍ରତ୍ୟେକର ଗୋଟାଏ ଗୋଟାଏ ରାଜଧାନୀ ହେଲାଣି । ଏବେ ମାଲିମକଦ୍ଦମା ପାଇଁ ବା ଉଚ୍ଚ ପ୍ରଶାସକଙ୍କ ପାଖକୁ ଯିବାକୁ ହେଲେ ଲୋକେ ପାଖାପାଖି ରାଜଧାନୀକୁ ଚାଲିଯାଇପାରୁଛନ୍ତି । କିନ୍ତୁ ସେତେବେଳେ କଲିକତା ଥିଲା ଏକମାତ୍ର ରାଜଧାନୀ । ସେଇଠାରେ ପ୍ରଦେଶର ପ୍ରଧାନ ଗୋରାଶାସକ ରହୁଥିଲେ । କିଛି ବଡ଼ ଧରଣର ଆପତ୍ତି ଥିଲେ ଲୋକ

କଲିକତା ହାଇକୋର୍ଟକୁ ଯାଉଥିଲେ ବା କଲିକତାର ଗୋରା ଶାସକଙ୍କ ପାଖରେ ଦରଖାସ୍ତ ପେଶ କରୁଥିଲେ । ତା ପରେ ହେଲା ବିହାର-ଓଡ଼ିଶା ପ୍ରଦେଶ ଓ ତାର ରାଜଧାନୀ ହେଲା ପାଟନା ।

ସାନମଣିମାଙ୍କ ଆର୍ଥିକ ଅନଟନ ଓ ଦୁରବସ୍ଥା ଦେଖି ବହୁତ ଓଡ଼ିଆ ଚିନ୍ତିତ ହୋଇପଡ଼ୁଥିଲେ । ସେ ଭାବିଲେ, ସରକାର ଯେଉଁ ନେଇଥିବା ଜମିବାଡ଼ି ଓ ସାକ୍ଷୀଗୋପାଳଙ୍କ ମନ୍ଦିରର କ୍ଷମତା ବିଷୟରେ ଲାଟ ସାହେବଙ୍କ ପାଖେ ଓଜର ଆପତ୍ତି କଲେ, ପୁରୀ ରାଜାଙ୍କ ପରି ମଣିମାଙ୍କୁ ମଧ୍ୟ କିଛି ଭତ୍ତା ଓ କ୍ଷମତା ମିଳିପାରେ । ସେଥିପାଇଁ ସେ ମଣିମାଙ୍କୁ ଦରଖାସ୍ତ କରିବାକୁ ପ୍ରବର୍ତ୍ତାଇଲେ ଓ ସେ ନିଜ ଖର୍ଚ୍ଚରେ ତାଙ୍କୁ ନେଇ ରାଜଧାନୀକୁ ଯାଇ ସେଠାରେ ଲାଟ ସାହେବଙ୍କ ସହିତ ଦେଖା କରିବାର ବ୍ୟବସ୍ଥା କରିବେ ବୋଲି କହିଲେ । ମଣିମା ତାଙ୍କ କଥା ଶୁଣି କହିଲେ, "ନା ଆଜ୍ଞା, ସେ କଥା କୁଆପି ହେବ ନାହିଁ । ଗୋପାଳଙ୍କର ଯାହା ଇଚ୍ଛା ସେ ତାହା କରି ଚାଲିଛନ୍ତି । ଆମର ସେଥିରେ ଆପତ୍ତି କରିବାର କଅଣ ଅଛି ? ଗୋପାଳ ଚାହୁଁଥିଲେ ଆମର ସବୁ ଥାଆନ୍ତା, କେହି ନେଇ ପାରି ନ ଥାନ୍ତେ । ତାଙ୍କର ଇଚ୍ଛା ନାହିଁ, ତେଣୁ ସବୁ ଚାଲିଗଲା । ସେଥିରେ ଆମର ବାଧା ଦେବା ଉଚିତ ନୁହେଁ । ସୁଖ ବା ଦୁଃଖ ଆସୁ ଯାହା, ବହିବ ଧୀର ଚିତ୍ତେ ତାହା । ସବୁ ଗୋପାଳଙ୍କ ଇଚ୍ଛା—ସାହେବ କଣ କରିବ, କିଏ ବା କଣ କରିବ ? ଭଗବାନ ଭକ୍ତକୁ ପରୀକ୍ଷା କରନ୍ତି । ଗୋପାଳ ଆମ ଭକ୍ତି ପରୀକ୍ଷା କରୁଛନ୍ତି । ଆପଣ ଆଶୀର୍ବାଦ କରନ୍ତୁ—ଆମେ ଧୈର୍ଯ୍ୟ ନ ହରାଇ ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉ ।"

ଏଥିରେ ଓଡ଼ିଆଙ୍କର ଆଉ କହିବାର କିଛି ନ ଥିଲା । ତେଣୁ ସେ ତାଙ୍କୁ ଆଉ ସେ ବିଷୟରେ ବେଶି ବାଧ କଲେନାହିଁ ।

ସେହି ସାନମଣିମା ବା ଶେଷ ମଣିମା ଶ୍ରୀ ଶ୍ରୀ ଭାଗୀରଥି ରାଜାସାହେବ, ସତ୍ୟବାଦୀ ରାଜା ଶ୍ରୀ ଶ୍ରୀ ପଦ୍ମନାଭ ରାଜାସାହେବଙ୍କ ସାନ ରାଣୀଙ୍କ ପୁଅ । ତାଙ୍କର ହେଉ ହେଲାବେଳକୁ ତାଙ୍କ ପିତାଙ୍କୁ ବହୁତ ବୟସ ହୋଇଯାଇଥିଲା । ତାଙ୍କ ମାତାଙ୍କର ବାର ଓଷା ତେର ଉପାସ ପରେ ସେ ଜନ୍ମ ହୋଇଥିଲେ । ତାଙ୍କର ବାଲ୍ୟ ଅବସ୍ଥାରେ ସେ ପିତୃହୀନ ହୋଇ ମାଆଙ୍କ ଦ୍ୱାରା ଲାଳିତ ପାଳିତ ହେଲେ ।

ସେ ରାଜବଂଶରେ ଜନ୍ମ, କିନ୍ତୁ ସେ ଜନ୍ମ ହେଲା ବେଳକୁ ତାଙ୍କର କୌଣସି ରାଜ ବିଭବ ନ ଥିଲା । ହାତୀ ଘୋଡ଼ା କି ରାଜପ୍ରାସାଦ କିଛି ନ ଥିଲା । ଗୋଟିଏ ଚାଳିଆ ଉଆସରେ ତାଙ୍କର ଜନ୍ମ । ପିଲାଦିନୁ କଉପୁନି ପରିଧାନ କରି ସେ ଅନ୍ୟ ପିଲାଙ୍କ ସଙ୍ଗେ ସାହିବାଡ଼ି ବଜାରରେ ଧୂଳିରେ ଖେଳନ୍ତି । ସେ ଖେଳିଲାବେଳେ କେହି କେହି ବୟସ୍କଲୋକ ମଧ୍ୟ "ମଣିମା, ଜୁହାର" କହି ତାଙ୍କୁ ସମ୍ମାନ ଦେଖାଇ ଆଡ଼େଇ ହୋଇ ଚାଲିଯାଆନ୍ତି । ସେଥିରୁ ସେ ବୁଝନ୍ତି, ଅନ୍ୟ ପିଲାଙ୍କରଠାରୁ ସେ ଟିକିଏ ଭିନ୍ନ ଅଲଗା ।

ଖେଳ ପଡ଼ିଆରୁ ଘରକୁ ଫେରିଆସି ସେ ମାଆଙ୍କୁ କହନ୍ତି, "ମାଆ, ଆଜି ଖେଳ ପଡ଼ିଆରେ ଆମେ ବାଲି ଫିଙ୍ଗାଫିଙ୍ଗି ହେଉଥିଲୁ । ଜଣେ ବୁଢ଼ାଙ୍କ ଉପରେ ବାଲି ପଡ଼ିଗଲା । ସେ ଅନ୍ୟମାନଙ୍କୁ ଧରି ମାଡ଼ ଗାଳି ଦେଲେ, ମୋର ମଧ୍ୟ ଦୋଷ ଥିଲା, କିନ୍ତୁ ସେ ମୋତେ କିଛି ନ କହି ନମସ୍କାରଟିଏ କରି ଚାଲିଗଲେ କାହିଁକି ?"

ଏହା ଶୁଣି ମାଆଙ୍କ ଚକ୍ଷୁରୁ ଧାର ଧାର ହୋଇ ଲୁହ ଗଡ଼ିପଡ଼ିଲା । ସେ ଉତ୍ତର ଦେଲେ, "ବାପା, ତୁମେ ଦୁଷ୍ଟାମି କରି କାହାର ଅନିଷ୍ଟ କରିବା କି କାହାକୁ ହଇରାଣ କରିବା ଠିକ୍ ନୁହେଁ । ତୁମେ ଗୋପାଳ ଭକ୍ତଙ୍କ ବଂଶରେ ଜନ୍ମ । ଗୋପାଳ ଗଜପତି ବଂଶର ଗୃହଦେବତା ବା ଇଷ୍ଟଦେବତା, ତେଣୁ ତୁମ ଦୁଷ୍ଟାମିକୁ ଗୋପାଳଙ୍କ ବାଳଲୀଳା ବୋଲି ମନେକରି ସେ ବୃଦ୍ଧ ହୁଏତ ଗୋପାଳଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ଚାଲିଗଲେ । ତୁମ ଦୁଷ୍ଟାମି ପାଇଁ ଅନ୍ୟମାନେ ତୁମକୁ ଦଣ୍ଡ ଦେବା ଉଚିତ ନୁହେଁ ବୋଲି ବୃଦ୍ଧ ଭାବିଲେ । ତୁମେ ଦୋଷ କଲେ କି ଭଲକଲେ ସେ କଥା ସବୁ ବୁଝିବେ ସ୍ୱୟଂ ଗୋପାଳ ।"

ସେଇକାଳୁ ଗୋପାଳଙ୍କ ଉପରେ ମଣିମାଙ୍କର ଅଗାଧ ବିଶ୍ୱାସ ଓ ଅଟଳ ଭକ୍ତି ଜନ୍ମିଲା । ସେ ତାଙ୍କର ସବୁକଥା ପାଇଁ ଗୋପାଳଙ୍କ ଉପରେ ନିର୍ଭର କରନ୍ତି । ଅଭାବ ଅନଟନ ଓ ବିପଦ ପଡ଼ିଲେ ବିବ୍ରତ ନ ହୋଇ ଗୋପାଳଙ୍କ ପାଖେ ଅଳିକରନ୍ତି, ତାଙ୍କ ପାଖେ ଫେରାଦ ହୁଅନ୍ତି ।

ମାଆଙ୍କର ତ ବାର ମାସରେ ତେର ଉପାସ । ଉପାସ ବ୍ରତରେ ଠାକୁରଙ୍କ ମହିମା କୀର୍ତ୍ତନ ଓ ପୁରାଣ ଶୁଣିବାରେ ତାଙ୍କର ସମୟ କଟେ । ପ୍ରାୟ ପ୍ରତିଦିନ ପୁରାଣ-ପଣ୍ଡା ଆସି ପୁରାଣ ପାଠକରେ । ତାଙ୍କୁ ବି ଖାଲି ଶୁଣି ଶୁଣି ବହୁତ ପୁରାଣ କଥା ଜଣା । ସେ ପୁଅକୁ ପାଖରେ ବସାଇ ବହୁତ ପୁରାଣ

ଓ ଧର୍ମଗପ ସବୁ କହନ୍ତି । ତାଙ୍କର ବ ଇଚ୍ଛା ପୁଅ କିଛି ଲେଖାପଢ଼ା ଶିଖୁ । ଲେଖାପଢ଼ା ଶିଖିଲେ ପୁରାଣ ବହି ପଢ଼ିବ ଏବଂ ତାହା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବିଷୟ ସବୁ ଜାଣିପାରିବ । ସେତେବେଳକୁ ତ ଏବପରି ସ୍କୁଲ କଲେଜ ସବୁ ନ ଥାଏ । ମାଟିବଂଶ ଅବଧାନଙ୍କ ନାହାକ ଚାହାଳି ଗୁଡ଼ିଏ ଥାଏ । ଚାହାଳିରେ ଖଡ଼ି ଧରି ବ୍ରହ୍ମା ବିଷ୍ଣୁ ମହେଶ୍ୱର କହି ମୁଣ୍ଡ ନୁଆଁ ଇବୋଟି ବୁଲାଇବାଠାରୁ ପାଠ ଆରମ୍ଭ ହୋଇ, ପଣକଆ, କଡ଼ାଗଣ୍ଡା, ଫେଡ଼ାଙ୍କ, ଓଡ଼ାଙ୍କ, ସୋଧି ଓ ଲୀଳାବତୀ ସୂତ୍ର ଅନୁସାରେ, ପିଗୃଡକୁ ମାଣେ ଜମି କାଢ଼ି ଦେବା ଅଙ୍କ ପର୍ଯ୍ୟନ୍ତ ସବୁ ପଢ଼ାହୁଏ । ସାହିତ୍ୟରେ ଚଉତିଶା, କାବ୍ୟ, ଅଳଙ୍କାର ପ୍ରଭୃତି ମଧ୍ୟ ପଢ଼ାହୁଏ । ଶାସନ ଗାଁ ଆଖପାଖରେ ସଂସ୍କୃତ ଟୋଲ ଗୋଟାଏଅଧେ ଥାଏ । ସେମାନଙ୍କରେ ସଂସ୍କୃତ ବ୍ୟାକରଣ ଠାରୁ ଦର୍ଶନଶାସ୍ତ୍ର, ଜ୍ୟୋତିଷଶାସ୍ତ୍ର ପର୍ଯ୍ୟନ୍ତ ସବୁ ସେଠାରେ ପଢ଼ାହୁଏ ।

ସେ ସବୁ ଛଡ଼ା ନୂଆ ହୋଇ ସରକାରୀ ଭର୍ଣ୍ଣାକୁଲର ସ୍କୁଲ ସବୁ ବସିଥାଏ । ସେଠାରେ ଇଂରେଜି ଛଡ଼ା ଆଉ ସବୁ ମାଇନର ସ୍କୁଲ ପାଠ ଓଡ଼ିଆରେ ପଢ଼ାହୁଏ । ଚାହାଳି ଓ ଟୋଲର ଶିକ୍ଷକମାନେ ତାଙ୍କ ପାରିଶ୍ରମିକ ପାଇଁ ପିଲାଙ୍କ ଉପରେ ବା ମଠ ଦେଉଳ ଜମିଦାର ପ୍ରଭୃତିଙ୍କ ଉପରେ ନିର୍ଭର କରନ୍ତି । ଭର୍ଣ୍ଣାକୁଲର ସ୍କୁଲ ଶିକ୍ଷକମାନେ ସରକାରଙ୍କଠାରୁ ମାସକୁ ୪ ୬ ଟଙ୍କା କରି ଦରମା ପାଆନ୍ତି । ସେତେବେଳେ ଟଙ୍କାକୁ ମହଣେରୁ ବେଶି ଚାଉଳ ମିଳୁଥିଲା, ତେଣୁକରି ସେଇ ଟଙ୍କାରେ ସେମାନେ ଖୁବ୍ ସୁଖରେ ଥାଆନ୍ତି । ଭର୍ଣ୍ଣାକୁଲର ସ୍କୁଲମାନଙ୍କରେ ପାଠ ପଢ଼ା ନିୟନ୍ତ୍ରିତ କରିବା ପାଇଁ ସରକାରୀ ଇନ୍‌ସପେକ୍ଟରମାନେ ନିଯୁକ୍ତ ହୋଇଥାଆନ୍ତି । ଓଡ଼ିଶାରେ ଇଂରାଜି ପାଠ ପଢ଼ୁଆ କେହି ନ ଥିବାରୁ ମାଟ୍ରିକ ପାଶକରା ବଙ୍ଗାଳୀମାନେ ସାଧାରଣତଃ ଇନ୍‌ସପେକ୍ଟର ପଦରେ ନିଯୁକ୍ତି ପାଇଥାଆନ୍ତି ।

ଶିକ୍ଷକମାନେ ପୁରୁଣାକାଳିଆ ରୀତିରେ ପାଠ ପଢ଼ାନ୍ତି । ଶୁଣାଯାଏ, ଥରେ କଲିକତାରୁ ସଦ୍ୟ ଆସିଥିବା ଜଣେ ଇନ୍‌ସପେକ୍ଟର ଏପରି ଗୋଟିଏ ସ୍କୁଲ ପରିଦର୍ଶନ କରିବାକୁ ଯାଇଥିଲେ । ପୁରୁଣା ଜ୍ୟୋତିଷ ଶାସ୍ତ୍ର ଅନୁସାରେ ପୃଥିବୀ ସ୍ଥିର ଅଛି ଓ ତାର ଚାରିପଟେ ସୂର୍ଯ୍ୟ ବୁଲୁଛି ବୋଲି ଲେଖାଅଛି । ପଠାଣିସାମନ୍ତ ସିଦ୍ଧାନ୍ତଦର୍ପଣରେ ମଧ୍ୟ ସେ କଥା ମାନିନେଇଛନ୍ତି । ଇନ୍‌ସପେକ୍ଟର ଗଲାବେଳକୁ ଶିକ୍ଷକ ପିଲାଙ୍କୁ ସେଇକଥା ପଢ଼ାଉଛନ୍ତି । ଇନସ୍‌ପେକ୍ଟର ନୂଆ ବୈଜ୍ଞାନିକ

ପଦ୍ଧତିରେ ଲେଖା ବହି ସବୁ ସେ ସ୍କୁଲମାନଙ୍କରେ ଚାଲୁ କରିବାର ନିର୍ଦ୍ଦେଶ ପାଇଥାଆନ୍ତି । ସେ ନୂଆ ସରକାରୀ ସ୍ୱୀକୃତ ବହି ଦେଖାଇ ଶିକ୍ଷକଙ୍କୁ ବୁଝାଇଲେ, "ପୃଥିବୀ ସ୍ଥିର ନୁହେଁ, ସେ ସୂର୍ଯ୍ୟ ଚାରିପଟେ ବୁଲୁଛି । ନୂଆ ବହି ପଢ଼ି ସେ ସବୁ ପଢ଼ାଇଲେ ତୁମକୁ ଟିକିଏ ବେଶି ପରିଶ୍ରମ ପଡ଼ିବ । ତେଣୁ ତୁମର ଦରମା ମାସକୁ ଆଉ ଟଙ୍କାଏ ବଢ଼ିବାର ସରକାର ସ୍ଥିର କରିଛନ୍ତି । ତୁମେ ଏ ନୂଆ ପାଠ ପିଲାଙ୍କୁ ପଢ଼ାଅ । ତୁମର ମାସିକ ଦରମା ଏକ ଟଙ୍କା ବଢ଼ିବ ।"

ଇନ୍‌ସପେକ୍ଟରଙ୍କ କଥାରେ ବିବ୍ରତ ହୋଇଯାଇ ବୃଦ୍ଧ ଶିକ୍ଷକ କହିଲେ, "ମୁଁ ଆପଣଙ୍କ ନୂଆ ବହି ଦେଖିଛି । କିନ୍ତୁ ଏ ବୁଢ଼ା ଦିନେ ମୁଁ ଆଉ ଅଧର୍ମ କରି ପାପରେ ଭାଗୀ ହୋଇ ପାରିବି ନାହିଁ । ଟଙ୍କାଟିଏ ପାଇଁ ଆଉ ପୂଜ୍ୟା ବସୁମାତାଙ୍କୁ ସୂର୍ଯ୍ୟଙ୍କ ଚାରିପଟେ ଘିରି ଘିରି କରି ବୁଲାଇ ପାରିବି ନାହିଁ, ମତେ କ୍ଷମା କରନ୍ତୁ ।"

ଏହିପରି ଥିଲା ସେତେବେଳର ସ୍କୁଲ ଓ ପାଠପଢ଼ା । ମଣିମା ତ ଯେତେହେଲେ ରଜାଘରର ପିଲା ! ସେ ତ ଅନ୍ୟ ପିଲାଙ୍କ ସଙ୍ଗେ ଚାହାଳୀକୁ ଯିବେ ନାହିଁ । ପାଖ ଚାହାଳୀର ଜଣେ ଅବଧାନ ଶେଷରେ ଅଳ୍ପ ପାରିଶ୍ରମିକରେ ରାଜିହୋଇ ଉଆସକୁ ଆସି ତାଙ୍କୁ ଲେଖା ପଢ଼ା ଶିଖାଇଲେ । ସେ ପୁରାଣ ପ୍ରଭୃତି ପଢ଼ିପାରିଲେ ଓ ଲେଖାଲେଖି କିଛି ମଧ୍ୟ କରିପାରିଲେ । ତାଙ୍କର ପଢ଼ା ଶେଷହେଲା ।

ମଣିମାଙ୍କର ବୟସ ବଢ଼ିଲା । ପୁଅର ହାତକୁ ବିବାହ କରି ବୋହୂ ହାତରେ ଘରର ଭାର ଦେଇ ନିଶ୍ଚିନ୍ତ ହେବାକୁ ମାଆ ବ୍ୟାକୁଳ ହୋଇପଡ଼ିଲେ । ଧନସିନା ନାହିଁ ନାଆଁ ତ ଅଛି ? "ବଡ଼ ମାଛର କଣ୍ଟାସାର" । ମଣିମାଙ୍କ ପାଇଁ ବାହାଘର ଜୁଟିବା କିଛି ବିଶେଷ ଅସୁବିଧା ହେଲା ନାହିଁ । ବିନା ଆଡ଼ମ୍ବରରେ ଆଉଗୋଟିଏ ଉଚ୍ଚ ରାଜବଂଶୀୟ ଦରିଦ୍ର ପରିବାରର ବାଳିକା ସଙ୍ଗରେ ଯଥାରୀତି ବାହାଘର ହୋଇଗଲା । ବୋହୂ ମଧ୍ୟ ପୋଇଲିଟିଏ ସଙ୍ଗରେ ଧରି ସତ୍ୟବାଦୀର ଉଆସକୁ ଆସିଲା । ମାଆଙ୍କ ଆଶା ପୂରିଲା । ସେ ଗୋପାଳଙ୍କ ନାମ ଡାକି ଡାକି ଆନନ୍ଦରେ ଆଖି ବୁଜିଲେ ।

ସଂସାର ଚଳାଇଲେ ନିଃସମ୍ବଳ ମଣିମା । ଅଭାବ ଭିତରେ ତାଙ୍କର ଆବିର୍ଭାବ, ତେଣୁ ଅଭାବ ତାଙ୍କୁ ବାଧେ ନାହିଁ । ନଅର ଉଆସ ବୋଲି ଯାହାକୁ

କୁହାଯାଏ, ସେ ହେଉଛନ୍ତି ଚନ୍ଦନ ପୋଖରୀ ଉପରେ ଗୃହ ବଖରା ଚାଳଘର । ମାଟି ପିଣ୍ଡା, ମାଟି ଚଟାଣ, କିନ୍ତୁ ମାଟି ଗୋବରରେ ଲିପା ପୋଛା ହୋଇ ସବୁବେଳେ ପରିଷ୍କାର ପରିଛନ୍ନ ଦିଶେ ।

ଉଆସରେ ଦିନଯାକ ସବୁବେଳେ ଗହଳ, କିନ୍ତୁ ସେ ମଣିଷଙ୍କ ଗହଳ ନୁହେଁ--- ସେ ପାତ୍ର ମନ୍ତ୍ରୀ ବା ଚାକର ବାକରଙ୍କ ଗହଳ ନୁହେଁ । ସେ ସବୁ କେବଳ ପୋଷା ଜୀବଜନ୍ତୁଙ୍କର ଗହଳ । ଘର ସଫା, ରନ୍ଧାବଢ଼ା ପ୍ରଭୃତି ପୋଇଲି କରେ । ହଂସ ଜଗିବାରେ, ଭାଡ଼ର ପାରା, ପଞ୍ଜୁରୀର ସାରୀ, ଶୁଆ, ବଣିଙ୍କର କଥା ବୁଝିବାରେ, ତାଙ୍କୁ ପାଠ ପଢ଼ାଇବାରେ କମ୍ପା ଠେକୁଆ, ନେଉଳ, ବିରାଡ଼ି କୁକୁର ପ୍ରଭୃତିଙ୍କ ସଙ୍ଗେ ଖେଳିବାରେ ରାଣୀଙ୍କର ସମୟ କଟେ । ରାଣୀ ଓ ପୋଇଲିଙ୍କ ବେଶପରିପାଟି ଓ ରୂପ ଯୌବନରେ ବିଶେଷ କିଛି ତଫାତ୍ ନଥାଏ । ଦୁହିଁଙ୍କ ବର୍ଣ୍ଣ ଶ୍ୟାମଳ । ସେତେବେଳେ ତ ସ୍ନୋ ବା ପାଉଡ଼ର ପ୍ରଭୃତି ପ୍ରସାଧନ ସାମଗ୍ରୀର ବ୍ୟବହାର କିଛି ନ ଥିଲା—ସେ ସବୁ ବ୍ୟବହାର କରୁଥିଲେ ହୁଏତ ରାଣୀ ଟିକିଏ ଅଲଗା ଦିଶୁଥାଆନ୍ତେ । ଦୁହେଁ ତେଲ ହଳଦୀ ଦେହରେ ମାଖନ୍ତି, ତେଣୁ ଦୁହିଁଙ୍କ ଚମଡ଼ା ତେଲ ଚକ୍ ଚକ୍ ହୋଇ ଝଟକି ଦିଶେ ।

ଓଡ଼ିଆ କୁଳଆଦରର ଲକ୍ଷଣ ହେଲା ପାନ । ଝିଅ ଶାଶୁଘରକୁ ଆସିଲା ବେଳେ ଆଉ ଯାହା ଆଣୁ ନ ଆଣୁ, ଆଗ ପାନଡ଼ବା, ଗୁଆକାତି, ପିକଦାନ ପ୍ରଭୃତି ନିଶ୍ଚୟ ଆଣିଥିବ । ପାନ ଅଭ୍ୟାସରେ ପାଟିରେ ପାନଖିଲର ସ୍ଥାୟୀ ଉପସ୍ଥିତିଯୋଗୁଁ ଦୁହିଁଙ୍କ ଗାଲଗୁଡ଼ିକ ଗିରିଶୃଙ୍ଗ ଭଳି ଉଚ । ଦାନ୍ତଗୁଡ଼ିକ ଜହ୍ନି ମଞ୍ଜି ପରି କଳା । ଓଠଗୁଡ଼ିକ ଲିପଷ୍ଟିକ୍ ନ ଲଗି ମଧ୍ୟ ସବୁବେଳେ ଲାଲ । ଦୁହିଁଙ୍କ ମୁଣ୍ଡରେ କୃଷ୍ଣ କେଶଗୁଚ୍ଛର ଗୋଟିଏ ଗୋଟିଏ ଜୁଡ଼ା । ରାଣୀଙ୍କ ଜୁଡ଼ାରେ ମଲ୍ଲିମାଳଟିଏ ଖଞ୍ଜାହୋଇଥିଲେ, ପୋଇଲି ମୁଣ୍ଡରେ ଗୋଟେ ଦୁଲଟା ଗୋଟିକିଆ ଗେଣ୍ଡୁ ବା ମଲ୍ଲି ଖୋସାହୋଇଥାଏ । ଦୁହେଁଯାକ ପିଲାଦିନରୁ ଖେଳସାଥୀ । ଜଣେ ଜଣକୁ ନଦେଖିଲେ ଦଣ୍ଡେ ରହି ପାରନ୍ତି ନାହିଁ । ତେଣୁ ରାଣୀ ଶଶୁର ଘରକୁ ଆସିଲେ ମଧ୍ୟ ପୋଇଲି ତାଙ୍କ ସଙ୍ଗେ ସଙ୍ଗେ ଆସିଲା । ତାର ଜୀବନରେ ଏକମାତ୍ର ଆଶ୍ରୟ ରାଣୀ, ଏକମାତ୍ର ଆକାଂକ୍ଷା ରାଣୀଙ୍କର ସ୍ନେହ, ଈଶ୍ୱରଙ୍କ ଠାରେ ଏକମାତ୍ର ପ୍ରାର୍ଥନା ରାଣୀମା ଅଇସୁଲକ୍ଷଣୀ ହୋଇ ସୁଖରେ ଥାଆନ୍ତୁ । ରାଣୀଙ୍କର ତ କିଛି ପିଲାପିଲି ନାହିଁ, ତେଣୁ ଘରେ ପିଲାପିଚିକାର ଜଞ୍ଜାଳ ବା ଗଣ୍ଡଗୋଳ କେଉଁଠୁ ଆସିବ ? ଦୁହିଁଙ୍କର ଗପସପ ବେଶ୍ ଜମେ, କେବେକେବେ ମତପାର୍ଥକ୍ୟ

ହେଲେ ରାଣୀ ରାଗିଯାଇ ପୋଇଲଙ୍କୁ ଦୁଇ ଗୃହଚ୍ଛେଦ କଥା କହି ଗାଳିଦିଅନ୍ତି । ସେ ସବୁ ଗାଳି ପୋଇଲଙ୍କି ନୀରବରେ ସହିଯାଏ ।

ଅବଶ୍ୟ ରାଣୀଙ୍କୁ ଗାଳି ଦେଇ ଆସେ ନାହିଁ । ସେ ଗାଳି ଦେବା ଦରକାର ପଡ଼ିଲେ ଦୁଇଗୃହ ପଦ ଶିଖିଥିବା ଗାଳିକୁ ବାରଂବାର କରି କହନ୍ତି, ଯଥା—"ତୁ ମରିବୁ ମର ମର ।" "ତୋର ଶୁଦ୍ଧି ହେବ ଯଦ ହେଉ" "ତୋର ସତ୍ୟାନାଶ ହେଲେ ହେଉ" "ତୁ ଖରାପ ହେଲେ ହ"—ଏ ସବୁ ଶୁଣିଶୁଣି ବି ପୋଇଲି ଅଭ୍ୟସ୍ତ ହୋଇଯାଇଥାଏ—ତେଣୁ ତାକୁ କିଛି ଏସବୁ ବାଧେ ନାହିଁ । ଅଳ୍ପ ସମୟ ପରେ ଦୁହେଁ ରଗାରଗି କଥା ଏକାବେଳେକେ ଭୁଲି ଯାଆନ୍ତି । 'ଉଆସ'ର ଏକପଟିଆ ହୋଇ ଗାଁଗଣ୍ଡା ବଜାରରୁ ଦୂରରେ । ରାଣୀ ଓ ପୋଇଲି ଯାନିଯାତ୍ରାକୁ ମନ୍ଦିରକୁ ନଗଲେ ଆଉ ଗୋଟିଏ ମଣିଷର ମୁହଁ ଦେଖିବା ସେମାନଙ୍କର ସ୍ୱପ୍ନ । ସେ ଦୁହେଁ ମିଳିମିଶି ନ ଚଳିଲେ ବା ବଞ୍ଚି ରହନ୍ତେ କିପରି ?

ଆର୍ଥିକ ଉନ୍ନତି ଉଦ୍ଦେଶ୍ୟରେ 'ମଣିମା' ବହୁ ପ୍ରକାର ବ୍ୟବସାୟରେ ହାତ ପୂରାଇ ସବୁଥିରେ ବିଫଳ ହେଲେ । ରାଜାପୁଅକୁ ବଣିଜ ଅଡ଼ୁଆ । ଧାରଉଧାର କରି ଫାଙ୍କିବା, ମିଛ କହିବ, ଜିନିଷ ପତ୍ର କମ୍ ବେଶି କରି କାରବାର କରିବା ପ୍ରଭୃତି କାର୍ଯ୍ୟ ତାଙ୍କ ପକ୍ଷରେ ଅସମ୍ଭବ । ଲୋକେ କାଳି ବାସି ବା ଉଧାର ନେଇଥିଲେ ତାଙ୍କୁ କଡ଼ା କଥା କହିବା, ଲାଗିଯୋଡ଼ି ହୋଇ ଆଦାୟ କରିବା ତାଙ୍କ ପକ୍ଷରେ କାଠିକରପାଠ ।

ଗୁଡ଼ାଏ ପରିଶ୍ରମ କରିବା ବି ତାଙ୍କର ଅଭ୍ୟାସ ନାହିଁ । ତେଣୁ ଲକ୍ଷ୍ମୀ ମଧ୍ୟ ତାଙ୍କ ଉପରେ ବିଶେଷ ସନ୍ତୁଷ୍ଟ ହେଲେ ନାହିଁ । ଲକ୍ଷ୍ମୀ ତାଙ୍କ ବଂଶ ଉପରେ ମୂଳରୁ ସନ୍ତୁଷ୍ଟ ନୁହନ୍ତି । ଲକ୍ଷ୍ମୀ ସନ୍ତୁଷ୍ଟ ଥିଲେ ତାଙ୍କର ଜମି ଓ ସୁନା ରୂପା ସବୁ କାହିଁକି ମୂଲ୍ୟରେ ନେଇଥାଆନ୍ତେ ! ଏସବୁ ଗୋପାଳଙ୍କର କୃପା ?

ମଣିମା ବ୍ୟବସାୟର ଆଶା ଛାଡ଼ି ଆଉ ଅଳ୍ପ କେତେକ ପୈତୃକ ଜମିରୁ ରଇୟତମାନେ ଯାହା କିଛି ଦେଇଯାଆନ୍ତି, ସେଥିରେ ହିଁ ଦୈନନ୍ଦିନ ସଂସାର ଚଳାନ୍ତି । ପୋଷ୍ଟଅଫିସ ବାରଣ୍ଡାରେ ଠିକଣା ପ୍ରଭୃତି ଲେଖି ଆଣିଥିବା ଦୁଇ ଚାରି ପଇସା ଲୁଣ ତେଲ ପ୍ରଭୃତି କିଣିବାରେ ସାହାଯ୍ୟ କରେ । ନଅର ଭିତରେ ଥିବା ନଡ଼ିଆଗଛ କେନ୍ଦୁଟା ଲୁଗାପଟା ଓ ଯାନିଯାତ୍ରା ଚଳାନ୍ତି ।

ଘରେ ଆସବାବ ଭିତରେ ଖଣ୍ଡିଏ ଖଟ, ବହୁକାଳର ପୁରୁଣା ଦୁଇଭିନ ଖଣ୍ଡ ଶେଯ, ତେଲଚକଟା ଗୃରିଛଅଟା ମୁଗୁନିପଥର ପର ଟାଣୁଆ ଡକଆ, ଖଣ୍ଡେ ଦୁଇଖଣ୍ଡ ଅଧାଚିରା ମଶିଣା, ଗୋଷେଇ ସରଞ୍ଜାମ, ପାନ ସରଞ୍ଜାମ, ଅଳ୍ପ କିଛି ଲୁଗାପଟା, ରାଣୀ ଓ ପୋଇଲିଙ୍କର ଅଳ୍ପ କିଛି ଅଳଙ୍କାର ଓ ମଣିମାଙ୍କର ଘଣ୍ଟା ।

## ଆଠ

ସକାଳୁ ଶୁଆ ଡାକେ "ମଣିମା ମଣିମା, ପହଡ଼ ଭାଙ୍ଗୁ"। ମଇନା ଡାକେ, "ମଣିମା ମଣିମା, କାଠି ଲାଗି ହେଉ" । ବଣିଟା କହେ, 'ରାଣୀମା, ପୋଇଲି ମା, ଉଠ ଉଠ, ରାତି ପାହିଲା ।" ଅନ୍ୟ ଜୀବଜନ୍ତୁ ଗୁଡ଼ିକ ମଧ୍ୟ କେଁ କାଁ କରି ଉଠନ୍ତି । ଏହିପରି ଉଆସରେ ଦୈନନ୍ଦିନ କାର୍ଯ୍ୟ ଆରମ୍ଭ ହୁଏ ।

ମଣିମାଙ୍କର ତ କର୍ମସ୍ଥଳୀ ନାହାନ୍ତି କି ଅଫିସ ନାହିଁ ସେ ନିତ୍ୟକର୍ମ ସାରିଲା ପରେ ଗୋଟିଏ ଗୋଟିଏ ଚାଲି ଚାଲି ମନ୍ଦିରକୁ ଯାଆନ୍ତି । ସେଠି ଦେବାର୍ଚ୍ଚନା ସାରି ଘରକୁ ଫେରନ୍ତି । ଘରେ ଚୁଡ଼ାଟାଏ କି ମୁଢ଼ିଟାଏ ଠା'ଲାଗି ହୋଇ ପାଟିରେ ପକାଇ, ପୋଷ୍ଟଅଫିସ ଉଦ୍ଦେଶ୍ୟରେ ବାହାରିପଡ଼ନ୍ତି । ଯେଉଁଦିନ ପୋଷ୍ଟଅଫିସ ବନ୍ଦ, ସେ ଦିନ ସେ ଓଡ଼ାଙ୍କ ଦୁଆରେ ବା ସେବକ-ମାନଙ୍କର ଜେଗାଘର (ଆଖଡ଼ାଘର) ପିଣ୍ଡା ଉପରେ ଆସି ବସିପଡ଼ନ୍ତି ।

ତାଙ୍କର ସବୁବେଳେ ଏକାପରି ପ୍ରଶାନ୍ତ ମୁଖମଣ୍ଡଳ—ମୁହଁରେ ହସ ନାହିଁ କି ରାଗ ନାହିଁ, ସମସ୍ତଙ୍କ ପ୍ରତି ସମାନ ଚାହାଣି । ସେ ଖୁବ୍ ଅଳ୍ପ କଥା କୁହନ୍ତି । ସବୁ ଶୁଣନ୍ତି, କିନ୍ତୁ ବାକ୍‌ବିତଣ୍ଡା ବା ବୃଥା ଯୁକ୍ତି ତର୍କରେ କଦାପି ଯୋଗଦିଅନ୍ତି ନାହିଁ । କାହାର କିଛି ମତଭେଦ ହେଲେ ବା କିଏ କିଛି ପରାମର୍ଶ ଚାହିଁଲେ, ଧୀରସ୍ୱରରେ ଦୁଇ ଚାରିପଦ ନରମ କଥା କହି ସେଠାରୁ ଉଠି ଚାଲିଯାଆନ୍ତି । ସେ ପଙ୍କରେ ଗୋଡ଼ ପୂରାଇବା ଲୋକ ନୁହନ୍ତି ।

ଗାନ୍ଧି ସିନା କଥାରେ କହୁଥିଲେ—ଏ ଗାଲକୁ ମାରିଲେ ସେ ଗାଲ ମଧ୍ୟ ଦେଖାଇ ଦେବ ବୋଲି, କିନ୍ତୁ କାର୍ଯ୍ୟରେ ସେ ଯାହା କଲେ, ସେ ତ

ଇଂରେଜ ସରକାରଙ୍କ ଗାଲରେ ଗୃପୁଡ଼ାଠାରୁ ବଳିଗଲା । ଅସହଯୋଗ ଆନ୍ଦୋଳନରେ ଗାନ୍ଧି-ଲୋକ ମାଡ଼ ଖାଇଥିଲେ, କିନ୍ତୁ ୧୯୪୨ ଅଗଷ୍ଟ ଭାରତଛାଡ଼ ଆନ୍ଦୋଳନରେ ସଂଗ୍ରାମୀମାନେ ଭଲକରି ଇଂରେଜ ସରକାରଙ୍କ ଗାଲରେ ଗୃପୁଡ଼ାମାରି ତାଙ୍କୁ ସାତସମୁଦ୍ର ତେର ନଈ ପାରକରାଇ ଏକାବେଳକେ ଦନ୍ତୁରୀତ ବ୍ରିଟିଶ ଦ୍ୱୀପପୁଂଜକୁ ପଠାଇଦେଲେ । "ମଣିମା" କିନ୍ତୁ ପ୍ରକୃତରେ ଏ ଗାଲକୁ ମାରିଲେ ସେ ଗାଲ ଦେଖାଇଦବା ଭଳି ମଣିଷ ଓ ପ୍ରକୃତରେ ଶାନ୍ତିପ୍ରିୟ ଲୋକ । ସେ କେବେ ରାଜନୀତିରେ ପଶିନଥିଲେ । ରାଜନୀତିରେ ପଶିଥିଲେ ହୁଏତ ବଦଳିଯାଇଥାନ୍ତେ ।

ମଣିମା ରାତିରେ ବି ମନ୍ଦିରକୁ ଭଜେ କରନ୍ତି । ସଂଧ୍ୟାରୁ ପହଡ଼ ପଡ଼ିବା ପର୍ଯ୍ୟନ୍ତ ଗରୁଡ଼ସ୍ତମ୍ଭ ପାଖରେ ନିଶ୍ଚଳ ହୋଇ ଆଉ ଗୋଟିଏ ଖମ୍ବପରି ବସିରହନ୍ତି । ଆଳତି ଦର୍ଶନ ସାରି ମନ୍ଦିର ବନ୍ଦ ହେଲା ବେଳକୁ ମନ୍ଥର ଗତିରେ ଅଳ୍ପ ଲଇଁ ଲଇଁ ତାଙ୍କର ଏକମାତ୍ର ବିଭବ କନା ପଟି (ବ୍ୟାଣ୍ଡ) ଦିଆ ହାତ ବନ୍ଧା ଘଡ଼ିଟିକୁ ପିଠିପଟେ ଅଣ୍ଟାରେ ଆଉଜାଇ ଘରକୁ ଫେରନ୍ତି । ପଖାଳ ପାଣି ପେଜ, ଯାହା ଥାଏ ସେଥିରୁ ମୁନ୍ଦାଏ ସେବା କରି ପହଡ଼ ଭଜେ ହୁଅନ୍ତି ।

ଅମାବାସ୍ୟାର ରାତି । ଗୋପାଳଜୀଉଙ୍କ ପହଡ଼ ପଡ଼ିବା ପରେ 'ମଣିମା' ସବୁଦିନ ପରି ଦେଉଳରୁ ବାହାରି ସିଂହଦୁଆର ଡେଇଁ ଅରୁଣ ସ୍ତମ୍ଭ ପାଖାପାଖି ହୋଇଛନ୍ତି । ଦେଉଳର ଉତ୍ତର-ପୂର୍ବକୋଣରେ ଥିବା ରାମ-ସୀତାଙ୍କ ମନ୍ଦିରରୁ କିଏ ଜଣେ ଅଣନିଶ୍ୱାସୀ ହୋଇ ସିଧା ଦଉଡ଼ ପଳାଇଲା ବେଳକୁ ତାଙ୍କ ଦେହରେ ଆସିବାଡ଼େଇ ହୋଇଗଲା । ସେ ତଳେ ପଡ଼ିଯାଇ, 'କିଏ କିଏ' ବୋଲି ପାଟିଟାଏ କରିଦେଲେ । ତାଙ୍କ ଦେହରେ ବାଡ଼େଇ ହେଲାବେଳେ ସେ ଲୋକ ହାତରୁ ବୁଜୁଳାଟାଏ ଖସିପଡ଼ି, ତଳ ପଥର ଚଟାଣରେ ଝଂଣଝାଣ ଶବ୍ଦ କରି ପଡ଼ିଲା । ପାଖ ଗୋପାଳ ଭୋଗ ଦୋକାନମାନ ବନ୍ଦକରୁଥିବା ସେବକମାନେ ତାଙ୍କ ପାଟି ଶୁଣି ଦଉଡ଼ଆସି ତାଙ୍କୁ ତଳୁ ଉଠାଇଦେଲେ ଓ ସେ ଲୋକଟି ଲଇଁପଡ଼ି ତଳୁ କଅଣ ଗୋଟାଇଲାବେଳକୁ ତାକୁ ଧରିପକାଇ ଚୋର ଚୋର ବୋଲି ପାଟିକଲେ ।

ରାମ-ସୀତା ଦେଉଳର ପୂଜକ ଜଟାଜୁଟଧାରୀ ବିଭୂତିଭୂଷଣ, କଉପୁନୀ-ପରିହିତ ବିରାଟ ବପୁବାନ୍ ବାବାଜି ସେ ପାଟିତୁଣ୍ଡ ଶୁଣି ଚମକିଉଠିଲେ । ବାବାଜିଙ୍କର ଚିଲମ ଚଳେ । ସେ ଢୁଳାଇପଡ଼ି ଘଂଘୁଡ଼ି ମାରୁଥିଲେ । ଠାକୁରଙ୍କ

ସାମନାରେ ଥିବା ପିତଳ ଥାଳରେ ଭକ୍ତମାନେ ପଇସା ପକାନ୍ତି । ତାର ଗୋଟିଏ ପଟକୁ ବାବାଜି ବସିଥାଆନ୍ତି, ଭକ୍ତଙ୍କୁ ବିଭୂତି ଟିକିଏ ଟିକିଏ ଦିଅନ୍ତି । ଉପରୋକ୍ତ ଲୋକଟି ବାବାଜି ନିଦ୍ରାମଗ୍ନ ହେଲାବେଳେ ସେ ଥାଳ ସହିତ ପଇସା ଗୁଡ଼ାକ ସନ୍ତର୍ପଣରେ ତାର ବୁଜୁଳାରେ ଭର୍ତ୍ତିକରି ବାନ୍ଧସାରି ନାକସିଧା ଦଉଡ଼ି ଥାଳଧୁଆ ପୋଖରୀ ଆଡ଼କୁ ପଳାଇ ଗଲାବେଳକୁ ମଣିମାଙ୍କ ଦେହରେ ବାଜି ଧରାପଡ଼ିଗଲା ।

ଚୋରଟା ନିଶ୍ଚୟ ଅନଭ୍ୟସ୍ତ, ଚୋରି କରିବାର ଅଭ୍ୟାସ ନାହିଁ । ହୁଏତ ଭଲ ଗୁରୁ ପାଇନାହିଁ କିମ୍ବା ସେ ବିନାଗୁରୁରେ ନୂଆ କରି ଚୋରି କରିବା ଶିଖିଥିଲା । ବାବାଜୀ ମହାପୁରୁ ତାଙ୍କ ଥାଳ ଅନ୍ତର୍ଦ୍ଧାନ ହେବାର ଦେଖି ଓ ପାଟିତୁଣ୍ଡ ଶୁଣି 'କ୍ୟା ହୁଆ' 'କ୍ୟା ହୁଆ','ହାମାରା ଥାଲା କୋନ୍ ଲିଆ'—ଏହା କହି ବସାଦହି ମରି ଲଥ ଲଥ ହୋଇ ଅରୁଣ ସ୍ତମ୍ଭ ପାଖରେ ପହଞ୍ଚିଲେ । ସେତେବେଳେ ତ ବିଜୁଳି ଆଲୁଅ ନ ଥିଲା । ସେଠି ପୁଲିଙ୍ଗ ତେଲ ଦିହୁଡ଼ି ଆଲୁଅଟିଏ ଆସି ପହଞ୍ଚିଲା । ବାବାଜି ସେ ଆଲୁଅରେ ତାଙ୍କର ଥାଳ ଓ ପଇସା ଦେଖି କାହାକୁ କିଛି ନ କହି ସେତକ ଗୋଟାଇପୋଟାଇ ଦେଉଳକୁ ନେଇ ଥାଳ ସ୍ଥାନରେ ଥାଳକୁ ଓ ଅଣ୍ଟା ଗାଞ୍ଜିଆରେ ପଇସାକୁ ରଖି ଯଥା ସ୍ଥାନରେ ପୁଣି ବସି ପୂର୍ବପରି ଢୁଳାଇବାକୁ ଲାଗିଲେ ।

ମନ୍ଦିର ଜଗୁଆଳି ରାମ ସିଂ ଅଫିମ ଟେକାଏ ଖାଇ କେଉଁଠି ଢୁଳାଇ-ପଡ଼ିଥିଲା । ସେ ବି ପାଟିତୁଣ୍ଡ ଶୁଣି ହଉଡ଼ଆସିଲା । କିଛି ନ ବୁଝି ନ ଶୁଝି "ହେଇବେ ଶାଲା ଚୋର" କହି ଚୋରକୁ ଧକ୍କାଏ ମାରିଲା । ଲୋକଟିର ଅସ୍ଥିସାର ଶୂନ୍ୟ ଶରୀର, ସେ ରାମ ସିଂର ଧକ୍କା ବା ସମ୍ଭାଳନ୍ତା କିପରି ? ସେ ଦୁମ୍ କରି ତଳେ ପଡ଼ିଗଲା । ରାମ ସିଂ ପଶ୍ଚିମାଲୋକ । ପିଲାଦିନୁ ବାପା ସାଙ୍ଗରେ ଆସିଥିଲା । ବାପା ମୁକ୍ତାରଙ୍କ ଘରେ ଦରୁଆନ୍ ଥିଲା । ବାପର କାଳ ହେବା ପରେ ସେ ଦରଓ୍ୱାନ କାମ କରୁଥିଲା । ଏବେ ବାଧିହୋଇ କେତେବର୍ଷ ହେଲା ମନ୍ଦିରରେ ଚାକିରି କରୁଛି । ସେ ବଡ଼ ନିମକସଚ୍ଚା ଲୋକ । ସତ୍ୟବାଦୀର ଦାନା-ପାଣି ଖାଇ ସେ ବଢ଼ିଛି, ତେଣୁ ମୁକ୍ତାର ଘରୁ ଚାକିରି ଗଲେ ମଧ୍ୟ ସେ ସତ୍ୟବାଦୀ ଛାଡ଼ିପାରିନାହିଁ ।

ମଣିମା ମଶାଲ ଆଲୁଅରେ ଚୋରର ମୁହଁ ଦେଖିବାକୁ ପାଇଥିଲେ । ସେ ତାକୁ ତଳୁ ଉଠାଇବାକୁ ଲଇଁପଡ଼ି ତାଙ୍କ ହାତରେ ଧରିଥିବା ବେଲପତ୍ରିର

ସିନ୍ଦୂରଟକ ନ ଜାଣିଲା ପରି ଶେଖର ମୁହଁରେ ବୋଳିଦେଲେ ଓ ତାର ମୁଣ୍ଡରେ ଗାମୁଛା ଖଣ୍ଡେ ଗୁଡ଼ାଇ ବାନ୍ଧିଦେଲେ । ଏଥିରେ ଅଧା ମୁହଁ ଲୁଚିଗଲା । ଶେଖର ମୁହଁରେ ନାଲି ରଙ୍ଗ ଦେଖି ମୁଣ୍ଡ ଫାଟି ରକ୍ତ ବୋହୁଛି ଭାବି ସେଠାରେ ଜମିଥିବା ଲୋକ କେତେକ ଛନ୍ନଛଡ଼ା ହୋଇ ସେ ସ୍ଥାନ ଛାଡ଼ିଛୁଡ଼ି ପଳାଇଗଲେ ।

ପୋଲିସ ଆସିଲା । ଶେଖର ଚାଲାନ ହେଲା । ମୋକଦ୍ଦମା ରୁଜୁ ହେଲା । ମଶାଲ ଆଲୁଅରେ ଦେଖିଥିବା ଜଣଅଧିକଙ୍କ ମୁହଁରୁ କଥାଟା ବ୍ୟାପିଗଲା ଚାରିଆଡ଼େ । "ପୀତବାସ ଦାସ ଶେଖର କରି ଧରାପଡ଼ିଛି" ବୋଲି ସମସ୍ତେ ଚୁପ୍‌ଚାପ୍ ହେଲେ । ସେଠାରେ ଚହଲିଥିବା କୌଣସି ଲୋକ କିନ୍ତୁ ସାକ୍ଷୀ ଦେବାକୁ ଆଗେଇ ଆସିଲେ ନାହିଁ । ମାଡ଼ରେ ଶେଖରର ମୁଣ୍ଡ ଫାଟିଛି । ଶେଖର ନିଜେ ମୁକ୍ତାରଙ୍କ ପୁଅ । ଓକିଲମାନଙ୍କ ଭିତରେ ମୁକ୍ତାରଙ୍କର ବହୁତ ପ୍ରତିପତ୍ତି ଥିଲା । ଯଦି କୌଣସି ଓକିଲ ପ୍ରମାଣ କରନ୍ତି ଯେ, ସେଇ ସାକ୍ଷୀ ରାଗ ରଖି ମାଡ଼ ଦେଇ ମୁଣ୍ଡ ଫଟାଇଛି ତେବେ ତ ସାକ୍ଷୀର ଦଫାରଫା ହେଇଯିବ ! ସେ ନିଜେ ଯାଇ ଜେଲରେ ହାଜର ହୋଇ ଘଣା ପେଲିବ । ତେଣୁ ସାକ୍ଷୀ ହୋଇ ଯିବାକୁ ସେମାନେ କେହି ରାଜି ହେଲେ ନାହିଁ । ଶେଷରେ ପୁଲିସ ଯାଇ 'ମଣିମା'ଙ୍କ ଦ୍ୱାରେ ପହଞ୍ଚିଲେ । ମଣିମା ତ ସତ୍ୟବାଦୀ ଲୋକ—ମିଛ କୁହନ୍ତି ନାହିଁ—ସେ ବା ନାହିଁ କରିବେ କିପରି ? ସେ ବାଧ୍ୟ ହୋଇ ସାକ୍ଷୀ ଦେବାକୁ ରାଜିହେଲେ ।

କଚେରୀରେ ବଡ଼ ଭିଡ଼ । ପୀତବାସ ଦାସ ଶେଖରର ମୁଦାଲା । ମଣିମା ସରକାରୀ ସାକ୍ଷୀ । କଚେରୀ ପଡ଼ିଲା କି ଉଠିଲା । ପଦମୁକ୍ତାରଙ୍କଠାରୁ ଓକିଲାତି ଶିଖିଥିବା ଜନୈକ ଓକିଲ ବିନା ଫିସରେ ମନକୁ ଆସି ପୀତବାସଙ୍କର ଠାରୁ ଓକିଲାତିନାମା ଦସ୍ତଖତ କରାଇନେଇ ତାଙ୍କ ପାଇଁ ଲଢ଼ିଲେ । ସେ ଓଲଟି ପୁଲିସ ଓ ଅନ୍ୟମାନଙ୍କୁ ଦୋଷୀ କରି ଯୁକ୍ତି ବାଢ଼ିଲେ । ସେ ଯୁକ୍ତି ଦେଖାଇଲେ, ପୀତବାସଙ୍କର ବହୁତ ଶତ୍ରୁ ଥିବାରୁ ଓ ତାଙ୍କ ଭିତରୁ କେତେକ ତାଙ୍କ ସମ୍ପତ୍ତିର ବନ୍ଧକଦାର ଥିବାରୁ ସେମାନେ ତାଙ୍କୁ ହଇରାଣ କରି ଜେଲରେ ପକାଇ ତାଙ୍କର ସମ୍ପତ୍ତି ଆତ୍ମସାତ୍ କରିବା ଉଦ୍ଦେଶ୍ୟରେ ପୁଲିସକୁ ଲାଞ୍ଚ ଦେଇ, ହାତ କରି ଏ ମିଥ୍ୟା ମୋକଦ୍ଦମା ରୁଜୁ କରିଛନ୍ତି । ଶେଖର ମାଲ କିଛି ଜବତ ହୋଇନାହିଁ । ଶେଖରମାଲ ବୋଲି ଯାହା କଚେରୀରେ ଦାଖଲ କରାଯାଇଛି

ତାହା ପୀତାମ୍ବରଙ୍କର ଲୁଗା ଗାମୁଛା ବନ୍ଧା ଗୋଟିଏ ବୁଜୁଳା । ସେଇଟା ହୁଏତ ତାଙ୍କ ଘରୁ ଗୁପ୍ତରେ ଅଣାଯାଇ ପୋଲିସକୁ ଦିଆଯାଇଛି ।

ପୁଲିସର ଅକଲ ଗୁଡ଼ୁମ୍ ହେଲା । ପୁଲିସ୍ ଡାକ ପାଇ ଚୋରର ଘଟଣା ସ୍ଥଳରେ ପହଞ୍ଚିଲା ବେଳକୁ କେବଳ ଚୋର ଓ ଖାଲି ଗଣ୍ଡିଲିଟି ଥିଲା । ରାମ ସିଂ ତ ପୁଲିସକୁ ଡାକିବାକୁ ଯାଇ ତା ସଙ୍ଗେ ସଙ୍ଗେ ଆସିଲା । ପୋଲିସ ପହଞ୍ଚିଲା ବେଳକୁ ସାକ୍ଷୀମାନେ ତ ସେଠାରୁ ଚାଲିଯାଇ, ଖାଇପିଇ ଯେଝା ଘରେ ଘୁଙ୍ଗୁଡ଼ି ମାରୁଥିଲେ । ଚୋର ପାଖରେ କେବଳ ମଣିମା ଠିଆ ହୋଇ ରହିଥିଲେ । ସେ କେବଳ ମଣିମାଙ୍କୁ ପାଇ ତାଙ୍କୁ ଆଣି ସାକ୍ଷୀ ରୂପେ ଠିଆକରାଇଛନ୍ତି । ଦାସ ବଡ଼ଁଶ ମଣିମା ବଡ଼ଁଶକୁ ଦାଣ୍ଡର ଭିଖାରୀ କରିଛନ୍ତି । ତାଙ୍କର ନିଶ୍ଚୟ ରାଗ ଥିବ । ସେ ଠିକ୍ ସାକ୍ଷୀ ଦେବେ ଓ ଚୋର ଠିକ୍ ସଜା ପାଇବ ବୋଲି ଆଶା କରି ସେ ମାମଲା ଦାୟର କରିଥିଲେ । କିନ୍ତୁ କଥାଟା ଠିକ୍ ଓଲଟା ଆଡ଼କୁ ଯାଉଛି । ଚୋର ମାଲତକ ତ ପୁଲିସ ଆସିବା ପୂର୍ବରୁ ବାବାଜୀ ନେଇ ଯାଇଛନ୍ତି, ତେଣୁ ଚୋର ମାଲ ସାବ୍ୟସ୍ତ ହୋଇନାହିଁ । ଏଣେ ସାକ୍ଷୀ ଜଣେ ଉଦ୍ଦେଶ୍ୟମୂଳକ ବ୍ୟକ୍ତି, ଯାହାଙ୍କର ଦାସଙ୍କ ସଙ୍ଗେ ଶତ୍ରୁତା ଥିବାର ଯଥେଷ୍ଟ କାରଣ ମଧ୍ୟ ଅଛି ।

ସାକ୍ଷୀ ରୂପେ ମଣିମା ଠିଆହେଲେ । ସତ୍ୟ ପାଠ କଲେ । କିନ୍ତୁ ତାଙ୍କ ମୁଣ୍ଡରେ କେତେ କଅଣ ଭାବ ଖେଳିଗଲା । ପ୍ରତିହିଂସା ! ନା ସେ ପାପ କଥା । ସେ ଘଟଣା ଖୋଲି କରି କହିଲେ ଦାସଙ୍କ ବିରୁଦ୍ଧରେ ଯିବ । ଦାସେ ଦଣ୍ଡ ପାଇବେ । ସେଇଟା ତାଙ୍କ ପକ୍ଷରେ ପ୍ରତିହିଂସା ନେଲା ପରି ବାହାରିକୁ ଦିଶିବ । ନାଁ, ଠାକୁର ଯାହାକୁ ଯାହାର କାର୍ଯ୍ୟ ପାଇଁ ଶାସ୍ତି ଦେବେ· ମଣିଷ ସେଥିରେ କାହିଁକି ପଶିବ ? ଅବଶ୍ୟ ସତ୍ୟ କଥା କହିବା ଉଚିତ, କିନ୍ତୁ ଶାସ୍ତ୍ରରେ ଅଛି— ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍, ମାବ୍ରୂୟାତ୍ ସତ୍ୟମପ୍ରିୟଂ । ଏ ସତ୍ୟ ତ ଅପ୍ରିୟ ସତ୍ୟ ହେବ, ଜଣକର କ୍ଷତି ବି କରିବ, ତାହାହେଲେ ତାଙ୍କର ଏପରି ପରିସ୍ଥିତିରେ କର୍ତ୍ତବ୍ୟ କଅଣ ?

ଏତିକିବେଳକୁ ଆରପଟ ଓକିଲ ମଣିମାଙ୍କୁ ପଚାରିଲେ, "ଚୋର କନିଷପତ୍ର ଉଠାଇ ଚୋର କଲାବେଳେ ଆପଣ ଦେଖିଛନ୍ତି ?" ସେ କହିଲେ— ନାଁ, ସେ ଦଉଡ଼ି ପଳାଇ ଗଲାବେଳକୁ ମନ୍ଦିର ସାମନାରେ ମୋ ଦେହରେ ବାଜିଥିଲା ।

ଦ୍ୱିତୀୟ ପ୍ରଶ୍ନ—"ସେ ଦିନ ଅନ୍ଧାର ରାତି ନା ଆଲୁଅ ରାତି ?"
ଉତ୍ତର—ଅମାବାସ୍ୟା ରାତି ।
ତୃତୀୟ ପ୍ରଶ୍ନ—"ଆପଣଙ୍କ ପାଖରେ କିଛି ଆଲୁଅ ଥିଲା ?"
ଉତ୍ତର—"ଆଜ୍ଞା—ନଥିଲା ।"
ଚତୁର୍ଥ ପ୍ରଶ୍ନ—"ଆପଣ ଅନ୍ଧାରରେ ଲୋକ ଚିହ୍ନି ପାରନ୍ତି ?"
ଉତ୍ତର—"ଆଜ୍ଞା ନାଁ ।"

ଏହା ପରେ ହାକିମ କହିଲେ—ବର୍ତ୍ତମାନ ସାକ୍ଷୀ ଯାଇପାରନ୍ତି । ମୁଦାଲା ପ୍ରମାଣ ଅଭାବରୁ ନିର୍ଦ୍ଦୋଷରେ ଖଲାସ ହୋଇଗଲା । ମଣିମା ଏକ ବଡ଼ ସଙ୍କଟରୁ ଉଦ୍ଧାର ପାଇଲା ଭଳି ଠାକୁରଙ୍କୁ ମନେ ମନେ ପ୍ରଣାମ କରି ଆଶ୍ୱସ୍ତିରେ ନିଶ୍ୱାସଟିଏ ମାରି ଘରକୁ ଲେଉଟିଲେ ।

ରାମ ସିଂ ଦରଓ୍ୱାନକୁ କେତେ ଦିନ ରାତିରେ ନିଦ ହେଉ ନ ଥିଲା । ଯାହାର ଦାନାପାଣି ଖାଇ ତାର ଶରୀର ଗଢ଼ା ସେ ତାକୁ ଚିହ୍ନି ନ ପାରି ମାଡ଼ ଚଢ଼େଇଥିଲା । ଏ ଯେଉଁ ଦୋଷ ଓ ଅପବାଦ ସେଥିରୁ ବାହି ପାଇବା ପାଇଁ ପୀତାଙ୍କ ମୁକ୍ତି ପ୍ରାର୍ଥନା କରି ସେ ଠାକୁରଙ୍କୁ ଡାକୁଥିଲା । ଠାକୁର ତା କଥା ଶୁଣି ପୀତାଙ୍କୁ ଖଲାସ କରିଦେଇଥିବାରୁ ସେ ତାର ନିଶ ସାଉଁଳେଇ ସାଉଁଳେଇ ତା ବାଟେ ବାଟେ ମନ୍ଦିରକୁ ଫେରିଲା !

## ନଅ

ଜୀବଜନ୍ତୁଙ୍କୁ ଆୟତ୍ତ କରି, ଜବତ୍ କରି ରଖିବା ପାଇଁ ପଞ୍ଜୁରୀର ସୃଷ୍ଟି । ପଞ୍ଜୁରୀରେ ବାଘ, ସିଂହ, ଶୁଆ ଓ ସାରୀ ପ୍ରଭୃତି ରୁହନ୍ତି । ସେହିପରି ମଣିଷଙ୍କୁ ଜବତ୍ କରି ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ କାରାଗାରରୂପକ ପଞ୍ଜୁରୀ ଗଢ଼ାଯାଇଛି ଯେଉଁଠି ଡକାୟତଠାରୁ ଦେଶଭକ୍ତ ପର୍ଯ୍ୟନ୍ତ ସମସ୍ତେ ସେଥିରେ ବନ୍ଦୀ ହୋଇ ଷଡ଼ନ୍ତି । ପଞ୍ଜୁରୀରୁ ଖଲାସ ହୋଇ କେତେ ଜୀବଜନ୍ତୁ ଶୁଆ ସାରୀ ଆନନ୍ଦରେ ଉଡ଼ିପଳାନ୍ତି । କେହି କେହି ମଧ୍ୟ ଉଡ଼ି ନ ପାରି ବା କୁଆଡ଼େ ଯିବେ ଜାଣି ନପାରି ଛଟପଟ ହୁଅନ୍ତି ।

ଦାସେ ମକଦ୍ଦମାରୁ ଖସି ଜେଲ ହାଜତରୁ ଖଲାସହେଲେ । କିନ୍ତୁ ତାଙ୍କ ନାଁ ପଛରେ ଯେଉଁ କଳା ବୋଳାହୋଇଗଲା ସେ କଥା ଭାବି ସେ ଛଟପଟ ହେଲେ । ସେ କଅଣ ବୋଲି କାହା ଆଗରେ ଆଉ ମୁହଁ ଦେଖାଇବେ ? ସେ ଧରାପଡ଼ିଲାବେଳେ ତାଙ୍କ ଗ୍ରାମବାସୀ ବା ସାଙ୍ଗସୁଖଙ୍କ ଭିତରୁ ଜଣେ କେହି ହେଲେ ତାଙ୍କୁ 'ଜାମିନ'ରେ ମଧ୍ୟ ନେବାକୁ ଆସିଲେନାହିଁ । ସେ ବିଚାରାଧୀନ ଆସାମୀ ଭାବରେ ଦୁଇ ମାସ କାଳ ଜେଲରେ ରହି ଷଡ଼ିଲେ । ଜେଲରେ ଖାଦ୍ୟ ବୋଇଲେ ପୋକରା ଗମୁରା ନାଲିଆ ବଗଡ଼ା ଚାଉଳର ଭାତ, ବୁଢ଼ା ମୂଳା, ମଂକଆ ବାଇଗଣ ଓ ଖଡ଼ା ଡାଙ୍ଗର ଅପୂର୍ବ ତରକାରୀ । ତା ସାଙ୍ଗକୁ ବରଡାଲିର ପାଣି । ତାଙ୍କ କୁକୁରକୁ ମଧ୍ୟ ସେ ଏପରି ଖାଦ୍ୟ କେବେ ଖାଇବାକୁ ଦେଇ ନ ଥିଲେ । ରହିବା ଘର କଥା ଛାଡ଼ ଅନ୍ଧାରୁଆ ଘର ! ମଶା ଛାରପୋକଙ୍କର ସେଠାରେ କ୍ରୀଡ଼ାସ୍ଥଳୀ । ଶୋଇବାକୁ ମାଟିର ଜଣକିଆ ଖଟ ପରି ଗୋଟିଏ ପିଣ୍ଡି । ତାର ଗୋଟିଏ ପଟେ ମାଟିକୁ ଉଚ୍ଚା କରି ତକିଆ ପରି କରାଯାଇଛି । ଦୁଇପଟେ ଶୋଇବା ଲୋକଙ୍କର ମୁଣ୍ଡ ବିପରୀତ ଦିଗକୁ । ସେ ଶୋଇଲାବେଳେ ତାଙ୍କ ମୁଣ୍ଡ ଉତ୍ତରକୁ ତ ତାଙ୍କ ଦୁଇପଟେ ଥିବା ଅନ୍ୟ ଦୁଇଜଣଙ୍କ ମୁଣ୍ଡ ଦକ୍ଷିଣକୁ । ସେଥିରେ ପୁଣି ଲୁହା ଜାଲି ଫାଟକ ପାଖେ ସବୁବେଳେ "ଓ୍ୟାର୍ଡର୍"ର କଡ଼ା ପହରା । ତାର ଦୃଷ୍ଟି ସବୁବେଳେ ଘର ଭିତରର କଇଦି ମାନଙ୍କ ଉପରେ, ଶୋଇଲାବେଳେ କେହି କାହା ସଙ୍ଗେ କଥାବାର୍ତ୍ତା ହୋଇପାରିବେନାହିଁ ।

କଚେରୀ ସରିବା ପରେ ସେ ପୁଣି ଜେଲ ହାଜତକୁ ନଆହୋଇ ତା ପରଦିନ ସକାଳେ ଜେଲରୁ ଖଲାସହେଲେ । ଖଲାସ ହୋଇ ସେ ଚାରିପଟକୁ ଚାହିଁଲେ । ଦେଖିଲେ କେହି ଚିହ୍ନା ଲୋକ ନାହାନ୍ତି । ତାଙ୍କର ଜଗନ୍ନାଥ ଦର୍ଶନ କରିବାକୁ ଇଚ୍ଛା ଥିଲା, କିନ୍ତୁ ବଡ଼ଦାଣ୍ଡରେ ଚାଲିକରି ଯିବାକୁ ସାହସ ହେଲାନାହିଁ —କାଳେ କିଏ କେଉଁଠି ଚିହ୍ନାଲୋକ ହାବୁଡ଼ିଯିବେ, ତାହାହେଲେ ତାଙ୍କର ଏ ବେଶ ଦେଖି କଅଣ କହିବେ ! ତାଙ୍କର ଅସ୍ଥିକଙ୍କାଳସାର ଶରୀର ସାଙ୍ଗକୁ ଆଲୁରୁବାଲୁ ରୁ ଜଟାଜୁଟର କେଶ । ମୁହଁରେ ଦରପାଚିଲା ରୁଣ୍ଡା ରୁଣ୍ଡା ଦାଢ଼ି । ତେଲ ବିନା ଲୁଖୁରା ଦେହ କୁଣ୍ଡାଇ କୁଣ୍ଡାଇ ଦେହଯାକ ରକ୍ତ ଘାଆ । ସେ ଆଡ଼େଇ ହୋଇ ହୋଇ ରେଳଷ୍ଟେସନ ଆଡ଼କୁ ଚାଲିଲେ ।

ଏଇ କେତେ ବର୍ଷ ହେଲା ରେଳଗାଡ଼ି ଗ୍ଲୁଛି, କିନ୍ତୁ ସେ କେବେ ରେଳଗାଡ଼ିରେ ବସି ନାହାନ୍ତି । ବସିବା ବା କଅଣ ଦରକାର ଥିଲା ? ସେ ତ ଆଗେ ଘୋଡ଼ାରେ ଘୂଗ୍ର ଆସୁଥିଲେ, କେତେ ବା ବାଟ, ଦରକାରବେଳେ ଶଗଡ଼ରେ, ବା ଚାଲିବାଟରେ ଗ୍ଲଲ ଆସୁଥିଲେ ମଧ୍ୟ ଚଳୁଥିଲା । ଏବେ ବହୁତ ଦିନ ହେଲା ସେ ବି ଗାଆଁରୁ ବାହାର ବେଶି କୁଆଡ଼େ ଯିବାଆସିବା କରୁନଥିଲେ ।

ମୁଣ୍ଡରେ ମୁଣ୍ଡେ ଭାବନା । ତାଙ୍କର ଅବସ୍ଥା ଏପରି କାହିଁକି ହେଲା ? ସେ କେଉଁ ଅବସ୍ଥାରୁ ଆସି କେଉଁଠି ପହଞ୍ଚିଲେ ! ତାଙ୍କର ବା ଏ ସଂସାରରେ ଆଉ କିଏ ଅଛି ? ତାଙ୍କୁ ଫେରି ବା କେଉଁ ଲାଭ ? ଲୋକେ ଆଗରେ କିଛି ନ କହିଲେ ମଧ୍ୟ ପଛରେ ଛି ଛି କରି ନିନ୍ଦା କରିବେ । ଦେଣାଦାରମାନଙ୍କର ଦାବି ଦାଇରାଣ ହରକତ ହେବା ଖାଲି ସାର ହେବ !

ସେ ଯେଉଁ ଚନ୍ଦ୍ରାକୁ ଭଲପାଉଥିଲେ ଆଜି ତାରି ଯୋଗୁଁ ଏ ଦଶା ! ଚନ୍ଦ୍ରାର ଦୁର୍ବ୍ୟବହାର ସତ୍ତ୍ୱେ ଗ୍ଲଲ ନିଶାର ଜୋର୍‌ରେ ପୁଣି ଚନ୍ଦ୍ରା ପାଖକୁ ଗଲେ । ସେ ଆସି ଦରବୁଢ଼ୀ ହେଲାଣି । ତାର ଗ୍ରାହକ ବି ଆଉ ବେଶି କେହି ନଥିଲେ । ସେ ପ୍ରଥମେ ପାଖରେ ପୂରାଇଲା ନାହିଁ । ବହୁତ କାକୁତି ମିନତି ହୋଇ ଖୋସାମତ କରିବାରୁ କହିଲା, "ମୋ ପାଖରେ ତ କିଛି ନାହିଁ, ତୁମକୁ କଅଣ ରାନ୍ଧିକରି ଦେଇ ଚର୍ଚ୍ଚା କରିବି ? ପଇସା ଆଣ, ତେବେ ସିନା ଯାଇ କିଛି ଯୋଗାଡ଼ କଲେ ଯାହା କରିବି !"

ନିଶା ଜୋର୍‌ରେ ତାଙ୍କର ମନ ବହୁତ ଆଡ଼ ବୁଲି ବୁଲି ଶେଷରେ ପହଞ୍ଚିଲା ରାମ-ସୀତାଙ୍କ ମନ୍ଦିର ପାଖରେ । ରାମ-ସୀତାଙ୍କ ସୁନ୍ଦର ମୂର୍ତ୍ତିରେ ନୁହେଁ, ତାଙ୍କ ସାମନାରେ ଥୁଆହୋଇଥିବା ପଇସା-ପୂର୍ଣ୍ଣ ତମ୍ବା ଥାଳି ପାଖରେ । ସେ ପଇସା କଅଣ ରାମ-ସୀତାଙ୍କର କାମରେ ଲାଗୁଛି ? ଚଳମା ବାବାଜିଟା ସେ ପଇସାରେ ଦୁଧ ଘିଅଖାଇ ମୋଟାସୋଟା ହୋଇ ବସି ଖାଲି ଚିଲମ ଟାଣୁଛି । ସେ ପଇସା ଯେବେ ଆସି ନିଜ ଖାଇବାରେ ଲଗାଇଲେ କ୍ଷତି କଅଣ ? ରାମ-ସୀତା ବା ରାଗିବେ କାହିଁକି ? ସେ ତ ଭଗବାନ,ସମସ୍ତଙ୍କର ବାପା ମା, ସମସ୍ତଙ୍କୁ ଜନମ ଦେଇଛନ୍ତି । ବାବାଜିଟା କଅଣ ତାଙ୍କର, ଆଉ ସେ ଉପାସ ରହିବାଟା କଅଣ ଠାକୁରଙ୍କୁ ବାଧୁ ନାହିଁ ? ବାବାଜିଟା ଢୁଲାଉଥିବ କି ପାଟି ମେଲାଇ ଆଁ କରି ନିଶାରେ ଶୋଇଯାଇଥିବ । ଦୁଆର ତ ସବୁବେଳେ ମେଲା, ବୁଜୁଳାଟିଏ ନେଇ

ପଇସା ଥାଳଟାକୁ ଧୀରେ କରି ଟେକିଆଣି ଆସ୍ତେ କରି ଝୁଜୁଲା ଭିତରେ ରଖି ଝୁଜୁଲାଟିକି ଯେମିତି ଟାଣିଦେଲେ ସ୍ୱର ଶବ୍ଦ ବା କେଉଁଠୁ ହେବ ? କିଏ ବା ଦେଖିବ ଏଇ ଅନ୍ଧାର ଘରେ ? ବାବାଜିଟାର ଯଦି ନିଦ ଭାଙ୍ଗିଯିବ ତେବେ ସେ ସେକଥା ଜାଣି ପଛରେ ଗୋଡ଼ାଇଲା ବେଳକୁ ସେ ଦଉଡ଼ି ଗୁଳିଯାଇଥିବେ । ଥୁଲୁଥାଲୁଲା ବାବାଜିଟା ତାଙ୍କ ସଙ୍ଗେ ଦଉଡ଼ି ତାକୁ ବା କେଉଁଠି ଧରି ପାରିବ ? ଏହା ସେ ରାମଚନ୍ଦ୍ର ରାମ-ସୀତା ମନ୍ଦିରକୁ ଯାଇଥିଲେ, କିନ୍ତୁ ସବୁ ଓଲଟ ପାଲଟ ହୋଇଗଲା । ମନ୍ଦ ଗ୍ରହ ପରି ସେ 'ମଣିମା'ଟା ସେତିକିବେଳକୁ କେଉଁଠୁ ଆସି ପହଞ୍ଚିଲା । ସେ କାହିଁକି ଜାଣିବେ, ଅରୁଣଖମ୍ବ ପାଖେ ସେଇଟା ଥିବ ! ଜାଣିଥିଲେ କି କିଛି ସୂଚନା ପାଇଥିଲେ ଅବା ସେ ସାବଧାନ ହୋଇ-ଥାନ୍ତେ ! ଠିକିଏ ସାବଧାନ ହୋଇପାରିଲେ ନାହିଁ—ତା ଦେହରେ ଧକ୍କା ଖାଇଲେ ।

ସେ ଲୋକଟା କିନ୍ତୁ କିପରି ଅଦ୍ଭୁତ ଧରଣର ଲୋକ ! ମୁକ୍ତାର ବଂଶ ତା ବଂଶର କି ଅନିଷ୍ଟ ନ କରିଛନ୍ତି, କିନ୍ତୁ ସେ ଲୋକଟା କି ଉଦାର ପ୍ରକୃତିର ଲୋକ ? ସେ ତ ଧରାପକାଇ ଖୁସିହୋଇଥାନ୍ତା ! କିନ୍ତୁ ସେ କିପରି ଧରା ନ ପଡ଼ନ୍ତୁ, ଅପମାନିତ ନ ହୁଅନ୍ତୁ, ସେଥିପାଇଁ ସେ କେତେ ଅଭିନୟ ନ କଲା ! ମୁହଁ ଘୋଡ଼ାଇଦେଲା, ସିନ୍ଦୂର ବୋଲି ରକ୍ତ ବୋଲିବାର ଛଳନା କରାଇ ସମସ୍ତଙ୍କୁ ସେଠାରୁ ବିଦାୟ କରିଦେଲା । କଚେରୀରେ ମଧ୍ୟ ସେ ଖଲାସ ହେବାରେ ସାହାଯ୍ୟ କଲା । କାହିଁକି ସେ ଏପରି କଲା ? ତାର ଲାଭ ବା କଅଣ ହେଲା ? ଖଲାସହୋଇ ତାଙ୍କ ନିଜର ବା କଅଣ ଫାଇଦା ହେଲା ? ସେଇ ଜେଲରେ ଷଡ଼ି ଷଡ଼ି ମରି-ଯାଇଥିଲେ ହୁଏତ ସେ ଏ ସଂସାର ଜଞ୍ଜାଳ ଓ ଅପମାନିତ ଘୃଣ୍ୟ ଜୀବନରୁ ହାଲୁକାଇଥାଆନ୍ତେ ।

ଅନ୍ୟମନସ୍କ ଭାବରେ ଯାଉ ଯାଉ ସେ ପୁରୀ ବଡ଼ ଦାଣ୍ଡର ଗୋଟିଏ ପୁରୁଣା କୋଠାର ବାରଣ୍ଡା ଉପରେ ବସିପଡ଼ିଲେ । କିଛି ସମୟ ପରେ ଜଣେ ବୃଦ୍ଧ ଗୋଟିଏ ଛୋଟ ପିଲାକୁ ଧରି ସେ ବାରଣ୍ଡାକୁ ଉଠିଲେ । ପିଲାଟିର ବୟସ ପାଞ୍ଚ କି ଛଅ ହେବ । ସେ ଚପଳତାର ଚରମ ସୀମାରେ ପହଞ୍ଚିଥିଲା ପରି ଜଣା-ଯାଉଥାଏ । ଏଣୁତେଣୁ ଗପି, ଏ ଆଡ଼କୁ ସେ ଆଡ଼କୁ ଟାଣି ବୃଦ୍ଧଙ୍କୁ ଅଥୟ କରୁଥାଏ । ତାର ହାତ ବୋଇଲେ ଗୋଡ଼ ବୋଲି କରୁଥାଏ । ତାର ଆଖି ଦୁଇଟି ପାଣିରେ ଦଣ୍ଡକରା ମାଛ ପରି ଏପଟ ସେପଟ ହେଉଥାନ୍ତି । ହଠାତ୍ ତାଙ୍କ

ଉପରେ ତାର ଆଖି ପଡ଼ଗଲା । ସେ ତାଙ୍କ ଆଡ଼କୁ ଆସି ଦାଢି ଓ ମୁହଁକୁ କଡ଼େଇ କଡ଼େଇ ଗୃହିଁ ପଗୃରିଲା, "ତୁମେ କଏ ? ଏକୁଟିଆ ଏଠି କାହିଁକି ବସିଛ ? କଅଣ କରୁଛ ? ତୁମେ ଏପରି ମଇଳା କୋଚଗ୍ଧ ହୋଇଛ କାହିଁକି ? ତୁମ ମୁଣ୍ଡ ବାଳସବୁ କାହିଁକି ମେଞ୍ଚା ମେଞ୍ଚା ହୋଇଛି ? ଏପରି ଖଣ୍ଡିଆ ଖଣ୍ଡିଆ ଦାଢ଼ି କାହିଁକି ରଖିଛ ?" ଆଉ ଉତ୍ତର ଦେବାକୁ ସମୟ ନାହିଁ, ଉତ୍ତର ବୋଧେ ତାର ଦରକାର ନାହିଁ । ସେ ଅନର୍ଗଳ କହିଗୃଲିଛି । "ତୁମର ବୋଉ ନାହିଁ ? ବାପା ନାହାନ୍ତି ? ତୁମକୁ କଅଣ କେହି ସଫା ସୁତୁରା କରି ଦେଉ ନାହାନ୍ତି ? ଓ ! ତୁମେ ପରା ବଡ଼ୁଟେ ହେଲଣି, ତୁମର ପୁଅ ନାହିଁ କି ଝିଅ ନାହିଁ ? ତୁମ କଥା କେହି କଣ ବୁଝୁନାହାନ୍ତି ?"

ଦାସେ ମୁରୁକାଇ କରି ହସି ତାର କଥା ବନ୍ଦ କରିବାକୁ ତରତର ହୋଇ କହିପକାଇଲେ, "ହଁ, ଯେ ମୋ କଥା ବୁଝିବାକୁ ଅଛନ୍ତି ସେ ବୁଝିବେ, ତୁମର ବ୍ୟସ୍ତ ହେବାର କିଛି ନାହିଁ ।"

ପିଲା ପଗୃରିଲା—କଏ ବୁଝିବେ ? ସେ ଉପରକୁ ହାତ ଟେକି ଉତ୍ତର ଦେଲେ – ଯିଏ ଉପରେ ଅଛନ୍ତି ସେ ବୁଝିବେ । ପିଲାଟି ଆଶ୍ଚର୍ଯ୍ୟ ହୋଇକହିଲା— ଆମେ ତ ତଳ ମହଲାରେ ଅଛୁ; ଉପର ମହଲାରେ ତ ମାଉସୀ ଅଛନ୍ତି, ସେଇ କଣ ତୁମ କଥା ବୁଝିବେ ?

ସେତେବେଳକୁ ବୃଦ୍ଧ ଭଦ୍ରଲୋକ ସେ ପିଲା ଉପରେ ଚଢ଼ଯାଇ ଦାନ୍ତ କଡ଼ମଡ଼ କରୁଥିଲେ । ଶେଷ ପଦକ କଥାରେ ହସ ସମ୍ଭାଳି ନ ପାରି ଅଟ୍ଟହାସ୍ୟଟିଏ କରି ପିଲାର ହାତକୁ ଟାଣି ପିଲାଟିକୁ ଭିଡ଼ି ଭିଡ଼ି ନେଇ ଘର ଭିତରକୁ ଗୃଲିଗଲେ । ବୃଦ୍ଧଙ୍କର ମୁଖର ଭଙ୍ଗୀ ଓ ହସରେ ଦାସଙ୍କର ଚିତ୍ତ ଦୁଲ୍‌କରି ହୋଇଗଲା । ଓହୋ, ସେ କି ହସ, କି ମୁହଁ ! ସେ ଠିକ୍ ଲଣ୍ଡା ବୁଢ଼ାର ମୁହଁରୁ ବାହାରୁଥିବା ତାଚ୍ଛଲ୍ୟପୂର୍ଣ୍ଣ ହସପରି ପରିହାସ । ଦାସଙ୍କର ମନେପଡ଼ଗଲା ସେଇ ପିଲାଦିନର ଲଣ୍ଡା ବୁଢ଼ା କଥା, ଯାହାର ପିଲା ନାହିଁ ବୋଲି ପରିହାସ କରି ସଙ୍ଗୀମାନଙ୍କ ସଙ୍ଗେ ହରିତାଳିକା ଦିନ ତା ଦୁଆରେ ଝିଙ୍କ୍ ବାନ୍ଧିଥିଲେ । ପ୍ରକୃତିର କି ବିଡ଼ମ୍ବନା ! ସେ ବର୍ତ୍ତମାନ ଲଣ୍ଡା ବୁଢ଼ାଠାରୁ ମଧ୍ୟ ହୀନ ।

ସେ ଆଉ ବେଶି ସମୟ ବସି ପାରିଲେ ନାହିଁ । ସେ ପିଲାଟିର କଥାଗୁଡ଼ିକ ଖାଲି ତାଙ୍କର ମନେପଡ଼ିଲା । ସେ ବାଟଭାଙ୍ଗି ନରେନ୍ଦ୍ର ପୋଖରୀ ଆଡ଼କୁ ଗୃଲିଲେ ।

ଦୋକାନରୁ ତେଲ କଣି, ତେଲ ଲଗାଇ, ସଫାସୁତୁରା ହୋଇ ଗାଧୋଇ ପଡ଼ିଲେ ଏବଂ ଜେଲ୍‌ର ଲୁଗା ପଟା ବଦଳାଇଲେ । ସଫାକରି ପଇତାଟି ମାଜିଲେ । ଗଣ୍ଠିଲିରୁ ନିଜ ଲୁଗାପଟା ବାହାରକରି ପିନ୍ଧିପକାଇଲେ । ଗଛମୂଳ ଠାକୁରାଣୀଙ୍କ ମୁଣ୍ଡିଆଟିଏ ମାରି ମୁଣ୍ଡରେ ସିନ୍ଦୂର ଟୋପାଟାଏ ଲଗାଇ ପୁଣି ରେଳ ଷ୍ଟେସନ୍ ଆଡ଼କୁ ଚାଲିଲେ ।

ରେଲ୍‌ଟି ଠିକ୍ ଛାଡ଼ିବା ଛାଡ଼ିବା ହେଉଥାଏ । କୌଣସିମତେ ସେ ଗୋଟିଏ ଡବାରେ ଖୁନ୍ଦାଖୁନ୍ଦି ହୋଇ ଠିଆହୋଇଗଲେ । ଢକଢାଳ ହୁଇସିଲ ମାରି ଗାଡ଼ିଟା ଷ୍ଟେସନ ଛାଡ଼ିଲା । ବୋତଲରେ ଚାଉଳ ପୂରାଇ ତାକୁ ହଲାଇଦେଲେ ଯେପରି ଅଧିକା ସ୍ଥାନ ବାହାରିପଡ଼େ ଠିକ୍ ସେହିପରି ରେଲଗାଡ଼ିଟି ହଲି ହଲି ଚାଲିବା କ୍ଷଣି ଡବା ଭିତରେ ଯାତ୍ରୀମାନଙ୍କ ପାଇଁ ସେହିପରି ଯଥେଷ୍ଟ ସ୍ଥାନ ବାହାରି ପଡ଼ିଲା । ସେ ବି ଗୋଟିଏ ସ୍ଥାନ ପାଇ ବସିପଡ଼ିଲେ ।

ବସିକରି ଏଣୁ ତେଣୁ ଭାବୁ ଭାବୁ ଗାଡ଼ିଟି ଷ୍ଟେସନ ପରେ ଷ୍ଟେସନ ଡେଇଁ ଚାଲିଲା । ଖୋର୍ଦ୍ଧାରୋଡ଼ରେ ଗାଡ଼ି ଛାଡ଼ିଲାବେଳକୁ ଜଣେ କିଏ ଆସି ତାଙ୍କୁ ଠେଲିଦେଲା । ସେ ବେଞ୍ଚ ଉପରୁ ତଳକୁ ଖସି ପଡ଼ିଲା ବେଳକୁ ଆଉଜଣେ ତାଙ୍କୁ ଅଟକାଇ ଧରିନେଲା । ସେ ତଳେ ନ ପଡ଼ି ଅଳ୍ପକେ ଅଟକି ଗଲେ । ଯିଏ ଅଟକାଇଦେଲା ସେ ଜଣେ କୁଲିମାନଙ୍କର ସର୍ଦ୍ଦାର—କଲିକତାରେ କମ୍ପାନୀମାନଙ୍କୁ କୁଲି ଯୋଗାଏ । କାଖରେ ବଟୁଆ, ପାଟିରେ ପାନ । ପାନ ଚୋବାଇଲା ବେଳକୁ ଚୂନାରେ ବନ୍ଧାଇ ଦାନ୍ତ ଚକ୍ ଚକ୍ ଦିଶୁଛି । ଯେ ଠେଲି-ଦେଲା ସିଏ ନବ ଆଗନ୍ତୁକ ମାରୁଆଡ଼ି ଦଳର ଜଣେ ଯୁବକ । କୁଲିସର୍ଦ୍ଦାର ପାଟିକରି କହିଲେ, “କହୋ, ତୁମେ ଧନୀ ମାରୁଆଡ଼ି ହେଲ ବୋଲି କଅଣ ମଣିଷ ମାନବ ନାହାଁ କି ? ଏ ଗୋସେଇଁକୁ କାଅଣ ମାରିପକାଇ ବ୍ରହ୍ମହତ୍ୟାରେ ଦୋଷୀ ହୋଇଥାଆନ୍ତ ? ତୁମର ପଇସା ତ ଅଛି, ଉପର କ୍ଲାସରେ ଯାଉନ ? ଏଠି ଆସି ଖୁନ୍ଦି ହେଉଚ କାହିଁକି ?”

ଏଥିରେ ସେ ଦଳର ବୃଦ୍ଧ ମାରଆଡ଼ି ଜଣକ ସେ ମାରୁଆଡ଼ି ଯୁବକଟିକୁ ନିଜ ଭାଷାରେ ତିରସ୍କାର କରିବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଠେଲିବା ଦ୍ୱାରା ଯେତିକ ସ୍ଥାନ ସୃଷ୍ଟିହୋଇଥିଲା, ସେଥିରେ ଗୁଞ୍ଜିହୋଇ ବସିପଡ଼ି ନିଜକୁ ସଂପ୍ରସାରିତ କରିବା ସଙ୍ଗେ ସଙ୍ଗେ କହିଲେ; “ବାବୁ ଗୁସା ହୁଅ ନାହିଁ । ଆମେ

ତର ତରରେ ବାହାରିପଡ଼ିଲୁ, ଅନ୍ୟ ଡବାକୁ ଯିବାକୁ ବେଳ ହେଲା ନାହିଁ । ଗାଡ଼ି ଛାଡ଼ିଲା ବେଳକୁ ଭାଗ୍ୟକୁ ଏଇ ଡବାରେ ପଶିଗଲୁ, ନହେଲେ ନଯାଇ-ପାରି ହଇରାଣ ହୋଇଯାଇଥାନ୍ତୁ ।" ଗାଡ଼ି ଚାଲିଲା, ଗପସପ ବି ଜମିଲା । ଷ୍ଟେସନ ପାର ହେବାର କିଛି ସମୟ ପରେ ମାରୁଆଡ଼ି ବଂଶଙ୍କ ଖାଦ୍ୟ ପୁଟୁଳି ଫିଟିଲା ଓ ସେମାନେ ବଡ଼ ବଡ଼ ମିଠାଇ ପାଟିରେ ପୂରାଇ ସେମାନଙ୍କ ଉଦରାଗ୍ନି ନିର୍ବାପିତ କରିବାକୁ ଲାଗିଲେ । ଏଡ଼େ ଏଡ଼େ ଗଣ୍ଡି ତାକୁ ଠିକ୍ କରି ରଖିବା ପାଇଁ ପ୍ରଭୁ ଦେଇଛନ୍ତି ଏପରି କ୍ଷୁଧା । ଘରଛାଡ଼ି ଆସୁ ଆସୁ ଭୋକ । ଦୁର୍ଭିକ୍ଷରେ ବି ଲୋକେ ଖାଦ୍ୟ ପାଇଁ ଏତେ ବ୍ୟାକୁଳ ହେଉନଥିବେ । ଗାଡ଼ି ଯେତେ ବେଗରେ ଚାଲିଛି ସେମାନଙ୍କର ପାଟି ଗାଡ଼ିର ଗତିକୁ ତାଳ ଦେଇ ସେତିକି ବେଗରେ ଚାଲିଛି । ଗାଡ଼ି ଷ୍ଟେସନମାନଙ୍କରେ ରହୁଛି, କିନ୍ତୁ ସେ ପାଟିର ଚର୍ବଣ-ଯନ୍ତ୍ର ଦଣ୍ଡେହେଲେ ତାର କାର୍ଯ୍ୟରୁ ବିରତ ହେଉନାହିଁ ।

କିଛି ସମୟ ପରେ, ବୃଦ୍ଧ ମାରୁଆଡ଼ି କଅଣ ଭାବିଲେ କେଜାଣି, ଠେଲା-ଖାଇଥିବା ଲୋକ ଓ ତାଙ୍କ ସପକ୍ଷରେ ଯୁକ୍ତି କରିଥିବା ଲୋକ ଦୁଇଜଣଙ୍କୁ ଗୋଟାଏ ଲେଖାଏଁ ବଡ଼ ଲଡ଼ୁ ବଢ଼ାଇଦେଲେ । ଦାସେ ଟିକିଏ ଥଙ୍ଗମଙ୍ଗ ହେଉଥିଲେ, କିନ୍ତୁ କୁଲି ସର୍ଦ୍ଦାରର ଆଗ୍ରହରେ ଲଡ଼ୁଟି ଗ୍ରହଣ କରି ପାଟିକି ନେବାରୁ ସେ ମଧ୍ୟ ଗ୍ରହଣ କରି ପାଟିରେ ଦେଲେ । ଜେଲରୁ ଖଲାସ ହୋଇ ଆସିବାଠାରୁ ସେ ତ ଅନ୍ନ ଜଳ ସ୍ପର୍ଶ କରି ନ ଥିଲେ—ତାଙ୍କ ଜଠରାଗ୍ନି ଜଳୁଥିଲା—ସେଇଟି ତାଙ୍କୁ ଅମୃତ ପରି ଲାଗିଲା ଓ କ୍ଷୁଧାଗ୍ନି ମଧ୍ୟ ଅନେକାଂଶରେ ପ୍ରଶମିତ ହେଲା । ମାରୁଆଡ଼ିଙ୍କ ସଙ୍ଗେ ଗୋଟିଏ ବଡ଼ ରାଜସ୍ଥାନୀ ଗରାରେ ପାଣି ଭର୍ତ୍ତି ହୋଇ ଥିଲା । ସେ ପାଣି ମାଗିବାରୁ ବୃଦ୍ଧ ଗରା ଆଡ଼କୁ ହାତ ବଢ଼ାଇଲେ ।

ହାତ ବଢ଼ାଇବାଠାରୁ ପାଣି ଆଣିବା ପର୍ଯ୍ୟନ୍ତ ଦାସେ ସେ ହାତକୁ ଚାହିଁରହିଲେ । ମାରୁଆଡ଼ି ବୃଦ୍ଧ ସେ କଥା ଦେଖିପାରି କଅଣ ଠଉରେଇଲେ କେଜାଣି କହିଲେ, "ପଣ୍ଡିତଜୀ, ଆପଣ ପୁରୀରୁ ଆସୁଛନ୍ତି ଓ ମୋର ହାତକୁ ଚାହିଁଛନ୍ତି । ଆପଣଙ୍କୁ ନିଶ୍ଚୟ ସାମୁଦ୍ରିକ ବିଦ୍ୟା ଜଣାଅଛି । ଆପଣ ଦୟାକରି ମୋ ହାତକୁ ଟିକିଏ ଦେଖନ୍ତୁ ତ ? ଆଉ କୁହନ୍ତୁ ଦେଖି, ଆମେ ଏଥର ଆମ ବ୍ୟବସାୟରେ ସଫଳ ହେବା କି ନ ହେବା !"

ଦାସେ ମୁଣ୍ଡ ଟୁଙ୍ଗାରି ବୃଦ୍ଧଙ୍କ ହାତକୁ ଧରି ରେଖାଗୁଡ଼ିକୁ ତନ୍ନ ତନ୍ନ କରି ଦେଖିବାକୁ ଲାଗିଲେ । ଦାସେ ତାଙ୍କ ଗୁଲିଖିଆ ସାଥି ଉଦିଆ ନାହାକ

ସଙ୍ଗେ ବେଳେ ବେଳେ ତାର ଘରକୁ ଯାଆନ୍ତି । ତା ବାପ ହାତ ଦେଖା ଓ ଜାତକ ଦେଖା ନାହାକ । ବେଳେବେଳେ ତା ପିଣ୍ଡାରେ ବସିଲା ବେଳେ ତା ବାପକୁ ସେ ବିଦ୍ୟା ବିଷୟରେ ମଧ୍ୟ ପଚାରି କିଛି କିଛି ବୁଝନ୍ତି । ମୁକ୍ତାରପୁଅ ହୋଇଥିବାରୁ ନାହାକେ ବିନା ଆପତ୍ତିରେ ତାଙ୍କୁ ସେ ବିଦ୍ୟାରୁ ବେଶ୍ କିଛି ଶିଖାଇ ଦେଇଥିଲେ । ଜେଲରେ ଥିଲାବେଳେ ହାଜତର ବନ୍ଦୀ ଭାବରେ ତାଙ୍କର ବିଶେଷ କିଛି କାମ ନ ଥିବାରୁ ସମୟ କଟାଇବାକୁ ସେ ଅନ୍ୟ ହାଜତର ବନ୍ଦୀମାନଙ୍କର ହାତଦେଖା, ଜାତକ ଗଣନା ପ୍ରଭୃତିରେ ମଧ୍ୟ ସମୟ କଟାଉ-ଥିଲେ । ସେ ସେଠାରେ ମଧ୍ୟ ସାମୁଦ୍ରିକ ବିଦ୍ୟା ପ୍ରୟୋଗରେ କିଛି ମାତ୍ରାରେ କୃତକାର୍ଯ୍ୟ ହୋଇଥିଲା ପରେ ତାଙ୍କର ବିଶ୍ୱାସ ହୋଇଥିଲା ଓ ସାହସ ବଢ଼ିଥିଲା ।

ବୃଦ୍ଧ ମାରୁଆଡ଼ି ବା ସେଠଜୀ ତରତର ମୁହୂର୍ତ୍ତରେ ଗାଡ଼ି ଧରିବା ଯୋଗୁଁ ହେଉ ବା ଖର୍ଚ୍ଚକାଟର ବ୍ୟବସ୍ଥା ଯୋଗୁଁ ହେଉ, ସେ ତୃତୀୟ ଶ୍ରେଣୀରେ ଯାତ୍ରା କରୁଥିଲେ ମଧ୍ୟ ଜଣେ ବିଶିଷ୍ଟ ଧନୀ ବ୍ୟବସାୟୀ । କଲିକତାରେ ତାଙ୍କର ଗଦି । ଭାରତର ବହୁ ସ୍ଥାନରେ ତାଙ୍କ ବ୍ୟବସାୟ ଚାଲିଛି । ଖୋର୍ଦ୍ଧାରେ ମଧ୍ୟ ମାଲ ନବା ଆଣିବାର ବ୍ୟବସ୍ଥା କରିବା ପାଇଁ ତାଙ୍କର ଗୋଟିଏ ବ୍ୟବସାୟ କେନ୍ଦ୍ର ଅଛି । ସେ କେନ୍ଦ୍ର ଦେଖି, ସବୁପ୍ରକାର ତନଖି କରିସାରି ତରବରରେ କଲିକତାକୁ ଫେରୁଥାଆନ୍ତି । ତାଙ୍କର ବିଦେଶରୁ ଗୋଟିଏ ବଡ଼ ମାଲବୋଝେଇ ଜାହାଜ ଆସିବାର ଥାଏ । ସେ ସେଥିପାଇଁ ଆଗରୁ ଗୋଟିଏ ବଡ଼ କଣ୍ଟ୍ରାକ୍ଟ କରିଥାଆନ୍ତି । ଠିକ୍ ସମୟରେ ମାଲ ଆସି ପହଞ୍ଚିଲେ ହାତେ ହାତେ ଲକ୍ଷାଧିକ ଟଙ୍କା ଲାଭପାଇଯିବେ, ନହେଲେ କ୍ଷତିଗ୍ରସ୍ତ ହେବାର ବହୁତ ସମ୍ଭାବନା ।

ପଣ୍ଡିତେ ଗଣାଗଣି କରି ହାତ ଦେଖୁ ଦେଖୁ ସେ ଅଧୈର୍ଯ୍ୟ ହୋଇ ପଚାରିଲେ, "କହନ୍ତୁ, ମାଲ୍ ଠିକ୍ ସମୟରେ ଆସିବ କି ନାହିଁ ? ଆମ ହାତ କଅଣ କହୁଛି ?" ପଣ୍ଡିତେ ମଠେଇକରି ଆଉରି ଗଣାଗଣି କରି ତାଙ୍କ ଆଗ୍ରହ ବଢ଼ାଇବାକୁ ଲାଗିଲେ ଓ ଆଉ ଦୁଇଚାରିପଦ ତଥ୍ୟ ମଧ୍ୟ ସଂଗ୍ରହ କରି ନେଲେ । ଶେଷରେ କହିଲେ, "ସେଠଜୀ, ଆପଣଙ୍କର ଭାଗ୍ୟ ବଡ଼ ଟାଣ ଅଛି । ଆପଣ ବେପରୁଆ ରହନ୍ତୁ । ଆପଣଙ୍କର ହାତ ରେଖାରୁ ଜଳ ଜଳ ଦିଶୁଛି ଆପଣ ନିଶ୍ଚୟ ଜୟଯୁକ୍ତ ହେବେ । ବାଟରେ ବହୁତ ବାଧା ଥିଲା, କିନ୍ତୁ ସବୁ

କହିଯାଇଛୁ । ମାଲ ଆପଣଙ୍କୁ ଅତି ଶୀଘ୍ର ମିଳଯିବ । ଆପଣ କଲକତାରେ ପହଞ୍ଚିଲା କ୍ଷଣି ଶୁଭ ସମ୍ବାଦ ପାଇବେ ।''

ଏହା ଶୁଣି ଖୁସି ହୋଇ ସେଠଙ୍କ କହିଲେ, ''ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣଙ୍କ ଗଣନା ଠିକ୍ ହେଲେ ଆମେ ଆପଣଙ୍କୁ ମୋଟା ପାଉଣା ଦେବା । ଆପଣ କଲକତା ଯାଉଛନ୍ତି, ତେବେ ଆମକୁ ଆପଣଙ୍କ କଲକତା ଠିକଣାଟା ବତାନ୍ତୁ, ଆପଣଙ୍କ ପାଉଣାଟା ଆପେ ଆପେ ଆପଣଙ୍କ ପାଖେ ପହଞ୍ଚିଯିବ ।''

ପଣ୍ଡିତେ ତ ଗାଡ଼ିରେ ବସିପଡ଼ିଛନ୍ତି—କଲକତା ଯାଉଛନ୍ତି କ କୁଆଡ଼େ ଯାଉଛନ୍ତି ତାଙ୍କୁ ଜଣା ନାହିଁ । ସେ ଅନର୍ଦ୍ଦିଷ୍ଟ ପଥର ଯାତ୍ରୀ—ସେ ବା କ ଠିକଣା ଦେବେ—ଏକଥା ଭାବୁଛନ୍ତି । ଏହି ସମୟରେ ଠିକାଦାର ବାହାରପଡ଼ି କହିଲେ, ''ଆପଣ ମୋର ଶଶିଭୂଷଣ ଦେ ଷ୍ଟ୍ରୀଟର ଠିକଣାଟା ଲେଖିନଅନ୍ତୁ । ସେଇଠି ଖୋଜିଲେ ଆପଣ ପଣ୍ଡିତଙ୍କୁ ପାଇବେ । ସେ ବର୍ତ୍ତମାନ କିଛି ଦିନପାଇଁ ମୋ ପାଖରେ ରହିବେ ।''

କଲକତା ଦେଖି ନ ଥିଲେ ମଧ ଦାସେ କଲକତା ବିଷୟରେ ବହୁତ କଥା ଶୁଣିଥିଲେ । ସେ ସହରର ବିରାଟତା ଓ ଗୋଳମାଳ କଥା ତାଙ୍କ ମୁଣ୍ଡରେ ଇନ୍ଦ୍ରଜାଲ ସୃଷ୍ଟିକଲା । ସେ ଉଦ୍ଦେଶ୍ୟହୀନ ଭାବେ ସିନା ଚାଲିଆସିଲେ—କିନ୍ତୁ କଲକତାରେ ପହଞ୍ଚିଲେ ସେ ଏଡ଼େ ବଡ଼ ଅଚିହ୍ନା ସହରରେ କେଉଁଠି ରହିବେ, କିଏ ତାଙ୍କୁ ସ୍ଥାନ ଦେବ ଓ କଲକତାରେ ରହି ବା ସେ କଅଣ କରିବେ— ଏଇ ପ୍ରଶ୍ନଗୁଡ଼ାକ ତାଙ୍କ ମୁଣ୍ଡରେ ଗୁଡ଼ାଇ ଭୁଡ଼ାଇ ହେଉଥିଲା । ବର୍ତ୍ତମାନ ଅପ୍ରତ୍ୟାଶିତ ଭାବରେ ହାତଦେଖା କାମ ଓ ରହିବା ପାଇଁ ଗୋଟିଏ ସ୍ଥାନ— ଦୁଇଟାଯାକ ମିଳିଗଲା ।

ଠିକାଦାର ଯେ କାହିଁକି ତାଙ୍କ ପାଖରେ ରହିଥିବେ ବୋଲି ସେଠଙ୍କୁ କହିଲେ, ସେ କଥା ପ୍ରଥମେ ସେ ଠଉରାଇ ପାରିଲେ ନାହିଁ । ଠିକାଦାର ଚାଲାକ ଲୋକ । ସେ ଏହା ଭିତରେ ଦାସଙ୍କ ସଙ୍ଗେ କଥାବାର୍ତ୍ତା କରି ମୋଟାମୋଟି ଅନେକ କଥା ଧରି ନେଇଥିଲେ । ଦାସେ ଜଣେ ଉଚ୍ଚବଂଶଜ ଲେଖାପଢ଼ା ଜାଣିଥିବା ବେକାର ଲୋକ ବୋଲି ସେ ଜାଣିପାରିଥିଲେ ।

ଠିକାଦାର ତ ପାଠଶାଠ କିଛି ପଢ଼ିନାହାନ୍ତି, କୁଲିରୁ ଉଠି ଉଠି କୁଲିସର୍ଦ୍ଦାର, ସେଠୁ ଉଠି ଠିକାଦାର ହୋଇଛନ୍ତି । ତାଙ୍କ ପକ୍ଷରେ ଶ୍ରୀ

ଅକ୍ଷର ବଢ଼ୁଣେଇ ପର୍ବତ ଭଳି । ତାଙ୍କ ବ୍ୟବସାୟ ପାଇଁ ଲେଖାପଢ଼ାଜାଣିଥିବା ଗୁମାସ୍ତାଟିଏ ନିତାନ୍ତ ଦରକାର । ତାଙ୍କ ଗୁମାସ୍ତାର ହଠାତ୍ କଅଣ ଜରୁରୀ ଦରକାର ପଡ଼ିବାରୁ ସେ ମାସେ ଛୁଟି ନେଇ ଗାଁକୁ ଚାଲିଯାଇଛି । ସେ ଗୁମାସ୍ତା ଉପରେ ସବୁ ଛାଡ଼ିଦେଇ ଅଳ୍ପ ଦିନ ପାଇଁ ଗାଁକୁ ଆସିଥିଲେ । ସେଇ ଖବର ପାଇ ସେ ଗାଁରୁ ସିଧା କଲିକତା ଧାଇଁଛନ୍ତି । ପଇସାପତ୍ର ଓ ମଜୁରୀ ଆଦି ହିସାବକିତାବ କରିବା ପାଇଁ ଜଣେ ଲେଖାପଢ଼ା ଜଣାଥିବା ଲୋକ ନିତାନ୍ତ ଦରକାର । ସେଥିପାଇଁ ସେ ଭାବନାରେ ପଡ଼ିଥିଲେ । ତାଙ୍କୁ ଏପରି ଉଦ୍ଦେଶ୍ୟହୀନ ଲୋକଟିଏ ହାତରେ ମିଳିଲେ ସେ ଛାଡ଼ିବେ କାହିଁକି ? ତେଣୁ ତାଙ୍କ ସଙ୍ଗେ ସେ ବିଷୟରେ କଥାବାର୍ତ୍ତା ହେବା ପୂର୍ବରୁ ବା ସେ ହଁ କି ନାହିଁ କରିବା ପୂର୍ବରୁ, ସେ ତାଙ୍କୁ ଜାଲରେ ପକାଇବାକୁ, ସେଠଜୀଙ୍କୁ ତାଙ୍କ ରହିବାକଥା ଜଣାଇଦେଲେ ।

ଗାଡ଼ି ଚାଲିଥାଏ । ସେଠଜୀଙ୍କ ଦୟାରୁ ମଝିରେ ମଝିରେ ମିଠାଇ, ଗଜା, ପୁରି ଆଚାର ପ୍ରଭୃତି ଖାଇବାକୁ ମିଳୁଥାଏ । ହାବଡ଼ା ଷ୍ଟେସନ ହେଲା । ସେଠଜୀ ପଣ୍ଡିତଙ୍କୁ ପ୍ରଣାମ କରି ବିଦାୟ ନେଲେ । ଦାସେ ଠିକାଦାରଙ୍କ ସଙ୍ଗେ ଶଶିଭୂଷଣ ଦେ ଷ୍ଟ୍ରୀଟ୍ ବସାରେ ଯାଇ ପହଞ୍ଚିଲେ । ଠିକାଦାର ତାଙ୍କୁ ଗୁମାସ୍ତା କାମ ତୁଲାଇବାର ପ୍ରସ୍ତାବ ଦେଲେ । ସେ ବା ତାଙ୍କ ଉପରେ 'ମଲଙ୍ଗ' ହୋଇ କାହିଁକି ବସିରହନ୍ତେ ? ଠିକାଦାରଙ୍କୁ ସାହାଯ୍ୟ କରିବା ପ୍ରସ୍ତାବରେ ସେ ସଙ୍ଗେ ସଙ୍ଗେ ରାଜିହୋଇଗଲେ ।

## ଦଶ

କଲିକତା କେଡ଼େ ବଡ଼ ସହର । ଇଂରେଜଙ୍କ ଇଷ୍ଟଇଣ୍ଡିଆ କମ୍ପାନି ସେତେବେଳର ମୁସଲମାନ ନବାବଙ୍କ ସଙ୍ଗେ ବ୍ୟବସାୟ କରୁ କରୁ, ଗୋବିନ୍ଦପୁର, ସୂତାନଟି ଓ କାଳିଘାଟ ବୋଲି ତିନୋଟି ଗାଁ କିଣି ଏ ସହରର ମୂଳଦୁଆ ପକାଇଥିଲେ । ଏ ସହରର ନାମକରଣର ଇତିହାସ ହେଲା—ଏକ କମ୍ପାନୀର ଗୋରାସାହେବ ଜଣେ ସ୍ଥାନୀୟ କୃଷକକୁ ଧାନ କାଟି ଗଦା ମାରିବା ଅବସ୍ଥାରେ, ସେ ସ୍ଥାନର ନାମ କଅଣ ବୋଲି ପଚାରିଲେ । ସେ କୃଷକ ସାହେବଙ୍କର କଥା ବୁଝିନପାରି ପାଖରେ ମରାହୋଇଥିବା ଧାନ ଗଦା ଦିଗକୁ

ଆଙ୍ଗୁଠି ଦେଖାଇ ପ୍ରଶ୍ନ ପଚରୀ ହୋଇଥିବାରୁ, ସେ ଗଦାଟି 'କାଲ୍‌କାଠା' ବା 'କାଲି କଠା' ବୋଲି କହିଲେ । ସାହେବ ସେ ସ୍ଥାନର ନାମ 'କାଲକାଠା' ବୋଲି ମନେକରି ସହରର ନାମ କାଲକାଠା ରଖିଲେ ।

ସେଇ କଲକତାକୁ ରାଜଧାନୀ କରି ଗୋରାମାନେ ଏ ଦେଶର ସେତେବେଳର ପରସ୍ପର ବିବଦମାନ ଶାସକମାନଙ୍କୁ ଏପଟ ସେପଟ କରି ଶେଷରେ ଚାଡ଼ାକାଟି ଏ ଦେଶକୁ ଦଖଲ କରିଗଲେ । ସେଇ କମ୍ପାନୀର ଦେଶୀ କର୍ମଚାରୀମାନେ ଗୋରାମାନଙ୍କୁ ଖୁସାମତ କରି ହାତ ଚକ୍‌କଣ କରି ପାରିଥିଲେ ଓ ନିଜର ଦେଶୀ ଭାଇମାନଙ୍କ ଉପରେ କ୍ଷମତା ବିସ୍ତାରକରି ବଡ଼ ବଡ଼ ପ୍ରତିପତ୍ତିଶାଳୀ ଜମିଦାର ଓ ଧନୀଲୋକରେ ପରିଣତ ହୋଇ କଲକତାରେ ଆସନ ଜମାଇଥିଲେ ।

କଲକତା ଏବେ ବି ଭାରତର ବହୁ ଧନୀ ଓ ପ୍ରଭାବଶାଳୀ ଲୋକଙ୍କର ବାସସ୍ଥଳୀ । ଏହା ବୋଲି ଅଭାବ, ଦାରିଦ୍ର୍ୟ ବା ଜୀର୍ଣ୍ଣ କୁଟୀର ଯେ ଏଠାରୁ ଉଭାଇଯାଇଛି ତା ନୁହେଁ । ନଭଶ୍ଚୁମ୍ବି ଅଟ୍ଟାଳିକା ଏଇଠି, ଟ୍ରାମ୍, ବସ ଆଧୁନିକ ମଟରଗାଡ଼ି ଏଇଠି ଭେଳାକୁ ଭେଳା, ନବ୍ୟ ସଭ୍ୟତାର ପ୍ରତୀକ ସ୍କୁଲ କଲେଜ ପାଠାଗାର, ବିଶ୍ୱବିଦ୍ୟାଳୟ ସବୁ ଏଇଠି, କିନ୍ତୁ ତା ସଙ୍ଗେ ସଙ୍ଗେ ଅସନା ନର୍ଦ୍ଦମା, ଗଳି କନ୍ଦିର ଭଙ୍ଗା ଘର, ଫୁଟ୍‌ପାଥର ଅଖାର ତମ୍ବୁ, ଜୁଆଗୃହ, ଡକାୟତର ଆଡ୍‌ଡ଼ା, ନଗ୍ନ ଓ ଅର୍ଦ୍ଧନଗ୍ନ ମାନବଙ୍କର କ୍ଷୁଧାର ଚିତ୍କାର ସବୁ ମଧ୍ୟ ଏଠାରେ ଭରପୂର । ସମସ୍ତ କଲକତାଟି ଏବେ ମାନବ ସମାଜର ଗୋଟିଏ ବଡ଼ ଚିଡ଼ିଆଖାନା । ଅତି ଧନୀଠାରୁ ବାସହୀନ ବସୁହରା ବସୁହରା ଦରିଦ୍ର ମାନବକୁ ଧରି କଲକତାର ଜୀବନ ଯାହାର ସୁଅ ବହିଚାଲିଛି ।

ଠିକାଦାରଙ୍କ ଅର୍ଥବଳ ସୀମିତ; ତେଣୁ ଠିକାଦାର ଗୋଟିଏ ପୁରୁଣା କୋଠାର ଛୋଟ ଛୋଟ ଦୁଇଟା ବଖରା ଘର ନେଇଥାଆନ୍ତି । ଗୋଟିଏ ବଖରା ତାଙ୍କର ଓ ଅନ୍ୟଟି ଗୁମାସ୍ତାଙ୍କର । ସେଇ ଗୁମାସ୍ତାଙ୍କ ପାଇଁ ଥିବା ଘରେ ସେ ଦାସଙ୍କୁ ରଖାଇଲେ । ଠିକାଦାର କଲକତା ବନ୍ଦରର ଜାହାଜମାନଙ୍କରୁ ମାଲ ଚଢ଼ାଇବା ଓ ଉତୁରାଇବା ପାଇଁ ଜାହାଜ କମ୍ପାନୀମାନଙ୍କୁ କୁଲି ଯୋଗାଇଥାଆନ୍ତି । କୁଲିମାନଙ୍କ ପାଇଁ ମୋଟା ମଜୁରୀ ଆଣି କୁଲିମାନଙ୍କୁ ଯତ୍‌ସାମାନ୍ୟ ଖୋରାକ ଓ ମଜୁରୀ ଦେଇ ସେମାନଙ୍କ ରକ୍ଷଣାବେକ୍ଷଣର ଭାର ନେଇଥାଆନ୍ତି । କୁଲିମାନଙ୍କୁ ସାଧାରଣତଃ ଅପରିଚ୍ଛନ୍ନ ଗଳି କନ୍ଦି ମାନଙ୍କର କ୍ଷୁଦ୍ର କୋଠରୀରେ ପାରାଭଡ଼ି

ଘର କାନ୍ଥରେ ଖଞ୍ଜାଯାଇଥିବା ଥାକ ଥାକ କାଠ ବାଉଁଶରେ ଘଡ଼ିରେ ଖୁନ୍ଦଖାନ୍ଦ କରି ରଖିଥାନ୍ତି । ମୋଟଉପରେ କୁଲିମାନଙ୍କ ମଜୁରିରୁ ବେଶ୍ ଦୁଇପଇସା ହାତପଇଠ କରି ହାତ ଚିକ୍କଣ କରନ୍ତି ।

ଦାସଙ୍କର ରହିବା ଓ ଦିଓଳ ଖାଇବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଖରଚ ବାବଦକୁ ଠିକାଦାରଙ୍କଠାରୁ କିଛି କିଛି ଦୈନିକ ଖର୍ଚ୍ଚ ମିଳିଲା । ଯାହା ମିଳିଲା ତାକୁ କିଛି ଦିନ ଜମାକରି ସେଥିରୁ ସେ ଖଣ୍ଡିଏ ଗେରୁଆ ଲୁଗା, ଖଣ୍ଡିଏ ଗେରୁଆ ଜାମା ଏବଂ ଗୋଟିଏ ପଗଡ଼ି ଓ ଖଣ୍ଡେ ଦୁଇଖଣ୍ଡ ଗାମୁଛା କିଣିପକାଇଲେ । ଗୁମାସ୍ତାର କାମ ବିଶେଷ କଷ୍ଟକର ନୁହେଁ—ଉପସ୍ଥାନ ବହିରେ କୁଲିମାନଙ୍କର ଉପସ୍ଥାନ ଓ ପ୍ରସ୍ଥାନ ଲେଖି କମ୍ପାନୀଙ୍କ ସଙ୍ଗେ ହିସାବ ରଖିବା । କମ୍ପାନୀକୁ ହିସାବ ଦେଇ ମଜୁରି ପଇସା ଅସୁଲ କରି ଠିକାଦାରଙ୍କୁ ଦେବା ଓ ଠିକାଦାରଙ୍କ ନିର୍ଦ୍ଦେଶ ଅନୁସାରେ କୁଲିମାନଙ୍କ ଭିତରେ ପଇସା ବଣ୍ଟନ କରି କୁଲିମାନଙ୍କର ଠାରୁ ଟିପ ଚିହ୍ନ ନେଇ ହିସାବ ରଖିବା—ଏଇ କେତୋଟି ହେଲା ଗୁମାସ୍ତାଙ୍କ ପ୍ରଧାନ କାର୍ଯ୍ୟ ।

ଏସବୁ ପାଇଁ ଅଳ୍ପ କିଛି ସମୟ ଛାଡ଼ିଦେଲେ ବାକି ଆଉ ସବୁତକ ସମୟ ତାଙ୍କ ନିଜର । ଏତେ ସମୟ କଅଣ କରିବେ, ବିଶେଷତଃ ସନ୍ଧ୍ୟାବେଳକୁ ଏପଟ ସେପଟ ହୋଇ ଗଳିକନ୍ଦି ସବୁ ବୁଲିବୁଲି ଓ ଠିକାଦାରମାନଙ୍କର ହାତ ଦେଖି ସମୟ କଟାଇବା ସଙ୍ଗେ ସଙ୍ଗେ ତାଙ୍କ ହାତଦେଖା ବିଦ୍ୟାର ଶୈଳୀକୁ ଚିକ୍କଣ କରିବାର ସୁବିଧା ପାଆନ୍ତି । ଏହିପରି ଦୁଇ ତିନି ସପ୍ତାହ କଟିଗଲା । ସେ ଜଣେ ଭଲ ହାତଦେଖା ଜ୍ୟୋତିଷ ପଣ୍ଡିତ ବୋଲି କୁଲି ମହଲରେ ପ୍ରଚାର ହୋଇଗଲା ।

ଏହିପରି ଦୈନନ୍ଦିନ ଜୀବନ ଗତି କରି ଚାଲିଲା । ଦାସଙ୍କୁ ଭୁଲରେ ସୁଦ୍ଧା ତାଙ୍କ ପୂର୍ବ କଥା ବା ସର୍ବଶେଷ ପରିଚୟ କେହି ପଚାରିବା ଦରକାର ହେଲା ନାହିଁ । ଠିକାଦାର ମଧ୍ୟ ତାଙ୍କର ଯେତିକି ପରିଚୟ କଥାବାର୍ତ୍ତାରେ ବା ଅନୁମାନରେ ପାଇଥିଲେ, ସେ ତାଙ୍କ କାମ ଚଳିବା ପାଇଁ ଯଥେଷ୍ଟ । ସେ କେବଳ ଜାଣନ୍ତି ଦାସେ ଜଣେ ପୁରୀ ଜିଲ୍ଲା ଶାସନର ଲୋକ, ଆଗେ ହୁଏତ ତାଙ୍କ ଅବସ୍ଥା ସ୍ୱଚ୍ଛଳ ଥିଲା, ଏବେ ଖରାପ ହେବାରୁ ବିଦେଶ କରୁଛନ୍ତି ।

ଦାସେ କଲିକତା ଆସିବାର ପ୍ରାୟ ମାସକ ପରେ ଦିନେ କୁଲିମାନଙ୍କର ଉପସ୍ଥାନ ପକାଇବା ଅବସ୍ଥାରେ ଦରୱାନ ଆସି ଖବର ଦେଲା, "ଆଜ୍ଞା,

ଆପଣଙ୍କୁ ଦେଖା କରିବାକୁ ଜଣେ ମାରୁଆଡ଼ି ବୁଢ଼ା ଆସି ଗେଟ୍ ବାହାରେ ଅପେକ୍ଷା କରୁଛନ୍ତି । ଆପଣଙ୍କର କାମ ସରିଲେ ଅନୁଗ୍ରହ କରି ଯାଇ ତାଙ୍କୁ ଦେଖାକରିବାକୁ ଖବର ପଠାଇଛନ୍ତି ।"

ସେ ଉପସ୍ଥାନ ନେଇସାରି ଫାଟକ ବାହାରକୁ ଆସିଲେ । ଫାଟକ ବାହାରେ ଗୋଟିଏ ଘୋଡ଼ାଗାଡ଼ି । ତା ନିକଟରେ ତାଙ୍କ ସଙ୍ଗେ ରେଳଗାଡ଼ିରେ ଆସୁଥିବା ସହଯାତ୍ରୀ, ପୂର୍ବପରିଚିତ ସେଠ୍‌ଜୀ, ଅନ୍ୟ ଦୁଇଜଣ ଲୋକଙ୍କ ସାଙ୍ଗରେ ଧରି ଠିଆ ହୋଇ ରହିଛନ୍ତି । ଦାସଙ୍କ ଉପରେ ସେଠଜୀଙ୍କ ଆଖି ପଡ଼ିବା ସଙ୍ଗେ ସଙ୍ଗେ ସେ ଧାଇଁଆସି ତାଙ୍କ ପାଦ ଛୁଇଁ ଆଶୀର୍ବାଦ ଆଶାରେ ଠିଆହେଲେ । ସେଠଜୀଙ୍କ ସାଥୀମାନେ ବି ମଧ୍ୟ ସେହିପରି ଦାସଙ୍କ ପାଦ ଛୁଇଁ ପ୍ରଣାମ କଲେ । ଦାସେ ସଙ୍ଗେ ସଙ୍ଗେ ଶୁଦ୍ଧ ଅଶୁଦ୍ଧ ମିଶାଇ ଶ୍ଲୋକଟିଏ (ଅଷ୍ଟୋତ୍ତର ଶତ ସମ୍ବତ୍ସର ଜୀବତେଷୁ) ବୋଲି ଗମ୍ଭୀର ହୋଇ ଆଶୀର୍ବାଦଟାଏ କଲେ ।

ଶେଠଜୀ ଭାବବହ୍ୱଳ ହେଲା ପରି ଗଦ୍ ଗଦ୍ ସ୍ୱରରେ କହିବାକୁ ଲାଗିଲେ, "ପଣ୍ଡିତଜୀ, ଆପଣଙ୍କ ଗଣନା ଏକ୍‌ବାରକେ ଠିକ୍ । ଆପଣ ଜଗନ୍ନାଥ ଦେଶର ପଣ୍ଡିତ - ଆପଣଙ୍କର ଗଣନା କଅଣ କେବେ ଭୁଲ ହୋଇପାରେ ? ଆପଣଙ୍କ ଗଣନା ଠିକ୍ ହେବ ବୋଲି ମୁଁ ଆଗରୁ ଜାଣିଥିଲି । ଆପଣଙ୍କୁ ଦେଖିବାକୁ ଆମ ଘରେ ସମସ୍ତେ ଇଚ୍ଛୁକ, ଆପଣ ଅନୁଗ୍ରହ କରି ମୋ ସାଙ୍ଗରେ ଆସି ମୋ ଘରେ ଟିକିଏ ପାଦ ପକାଇ ଆମକୁ ଅତିଥି ଚର୍ଚ୍ଚାର ସୁବିଧା ଦେଲେ ଆମେମାନେ କୃତକୃତ୍ୟ ହୁଅନ୍ତୁ ।"

ପଣ୍ଡିତେ ଟିକିଏ ମୁରୁକି ହସି କହିଲେ, "ଏ କି କଥା ? ଆପଣ ନି.ଜ ଏତେ କଷ୍ଟ କରି ଆସିଛନ୍ତି --ମୁଁ ଯିବି ନାହିଁ କିପରି ? ନିଶ୍ଚୟ ଯିବି । କିନ୍ତୁ ବର୍ତ୍ତମାନ କାର୍ଯ୍ୟସ୍ଥଳୁ ଯିବା ଉଚିତ ହେବନାହିଁ । ଆପଣ ନିଜେ ଆଉ କଷ୍ଟକରି ଆସିବେ ନାହିଁ । ଆପଣ ଜଣେ କାହାକୁ ଆଜି ସନ୍ଧ୍ୟାବେଳକୁ ମୋର ବସା ନିକଟକୁ ପଠାଇଦେଲେ ମୁଁ ଯାଇ ଆପଣଙ୍କ ପାଖରେ ହାଜର ହେବି । ଆଶାକରେ ଆପଣ ଯେତେବେଳେ ମୋତେ ଏଠାରେ ଆସି ଠାବ କରିପାରିଲେ, ସେଠାରେ ମୋତେ ଖୋଜି ପାଇବା କଷ୍ଟ ହେବ ନାହିଁ । ମୁଁ ନିତ୍ୟକର୍ମ ସାରି ପ୍ରସ୍ତୁତ ଥିବି । ଆପଣ ପଠାଇଥିବା ଲୋକ ସାଙ୍ଗରେ ସଙ୍ଗେ ସଙ୍ଗେ ବାହାରି ପଡ଼ିବି । ଆପଣଙ୍କ ଲୋକକୁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିବ ନାହିଁ ।"

ସେଠଜୀ କହିଲେ, "ସେ ସ୍ଥାନରେ ଆପଣଙ୍କୁ ପାଇବା କାହିଁକି କଷ୍ଟ ହେବ ? ମୁଁ ତ ସେଠାରୁ ଖବର ନେଇ ଏଠିକି ଆସିଛି । କିଛି ପରବାୟ ନାହିଁ । ଆମେ ସେଇଠିକି ଆସିବା, ଆପଣ ଖାଲି ଟିକିଏ ଦୟା ରଖି ଆମ ସଙ୍ଗେ ଆସି ଆମ ଘରେ ପାଦ ପକାଇବେ ।" ସେ ପଣ୍ଡିତଙ୍କୁ ପ୍ରଣାମ କରିବା ପରେ ପଣ୍ଡିତେ ତାଙ୍କୁ "ଜଗନ୍ନାଥ ଆପଣଙ୍କର ମଙ୍ଗଳ କରନ୍ତୁ" କହି ଆଶୀର୍ବାଦ କରି ବିଦାୟ ଦେଇ ପୁଣି ନିଜ କର୍ମସ୍ଥଳୀକୁ ଲେଉଟିଆସିଲେ ।

ଠିକାଦାରଙ୍କ ଅନୁମତି ପାଇଁ ସେଠଜୀଙ୍କ ପ୍ରସ୍ତାବ ଜଣାଇବାରୁ, ଠିକାଦାର ମନେ ମନେ ଖୁସି ହେଲେ । କାରଣ ତାଙ୍କ ପୁରୁଣା ଗୁମାସ୍ତା ଦିନେ ଦୁଇଦିନ ଭିତରେ ଆସି ପହଞ୍ଚିବ ବୋଲି ଖବର ଦେଇ ସାରିଲାଣି । ସେ ଦୁଇଟା ଗୁମାସ୍ତା ନେଇ ବା କଅଣ କରିବେ ? କିପରି ବା ଏ ନୂଆ ଗୁମାସ୍ତାଙ୍କୁ ବିଦାୟ ଦେବେ ? ପୁରୁଣା ଗୁମାସ୍ତା ଅନେକ ଦିନୁ ତାଙ୍କ ପାଖରେ ବିଶ୍ୱସ୍ତ ଭାବରେ କାମକରୁଛି । ତା ଯୋଗୁଁ ସେ ଅଧିକ ଦୁଇପଇସା ମିଳେ । ସେ କୁଲିମାନଙ୍କର ମଜୁରି ଭୁଲାଇବା ଓ କମ୍ପାନୀବାଲାଙ୍କୁ ଏପଟସେପଟ କରି ଅଧିକା ମଜୁରି ଲେଖାଇ ଦୁଇପଇସା ଅଧିକ ଲାଭ କରିବାରେ ସିଦ୍ଧହସ୍ତ । ଏ ତ ନୂଆ ଲୋକ, ପୁଣି ସାଧାସିଧା ଚାଲି-ଚଳଣିଆ ଲୋକ । ତାଙ୍କୁ ଏସବୁ କାର୍ଯ୍ୟ କରିବାକୁ କହିବାର ସାହସ ତାଙ୍କର ନାହିଁ । କହିଲେ ବା ଏସବୁ କଅଣ ତାଙ୍କ ହାତରେ ହେବ ? ତାଙ୍କର ବଡ଼ଲୋକ ଠାଣିରେ ପଇସା ରୋଜଗାର ପାଇଁ ବି ବିଶେଷ ଲାଳସା ନାହିଁ । ତାଙ୍କୁ ଯାହା ଦରମା ବା ଖର୍ଚ୍ଚ ଦେଲେ ବି ସେ ଖୁସି ହୁଅନ୍ତି । କିନ୍ତୁ ଆର ଗୁମାସ୍ତାଟା ସବୁବେଳେ ଟଙ୍କେ ଅଧେ ବେଶି ପାଇବାକୁ ଦାବି କରେ । ଅବଶ୍ୟ ସେ ବୃଥାରେ ଯେ ଦାବି କରେ ସେ କଥା ନୁହେଁ । ସେ ପାଞ୍ଚ ଦଶ ଟଙ୍କା ଅଧିକା ଲାଭ ଦେଖାଇ ଏପରି ଦାବି କରେ । ତାସେ ତ ବେଳେବେଳେ କୁଲିଙ୍କ ଦୁଃଖରେ କାନ୍ଧ ପକାନ୍ତି, ସେମାନଙ୍କୁ ଆଉ ଅଧିକା ପଇସା ଦେବା ପାଇଁ ଅଳି କରନ୍ତି । ଆଉ ଲାଭ କରାଇବେ କଅଣ ? କେବଳ ପୁରୁଣା ଗୁମାସ୍ତା ନ ଥିଲେ ବୋଲି କାମ ଚଳାଇବାପାଇଁ ତାଙ୍କୁ ରଖିବା କଥା ! ପୁରୁଣା ଗୁମାସ୍ତା ତ ଗାଁ ପାଖର ଲୋକ ଏବଂ ଜଣା ଶୁଣା ବନ୍ଧୁବାନ୍ଧବଲୋକ ।

ନୂଆ ଗୁମାସ୍ତାଙ୍କ ସଙ୍ଗେ ତ ଆଗରୁ ଜଣାଶୁଣା ନ ଥିଲା । ଏବଂ ତାଙ୍କ ଘରର ଠିକଣା ବା ପୂର୍ବାପର କଥା ବି କିଛି ଜଣା ନାହିଁ । ତାପରେ ଇଏତ ଆଡ଼ବାୟାଙ୍କ ଭଳି ଲୋକ, ମଝିରେ ମଝିରେ ବସିପଡ଼ି ଏଣୁ ତେଣୁ ଗୁଡ଼ାଏ

କଅଣ ଭାବୁଥାଆନ୍ତି । ଏପରିକି ତାଙ୍କୁ ହଲାଇଲେ ବି ଉଁ କି ଚୁଁ କରୁ ନ ଥାନ୍ତି ନାହିଁ । ଗ୍ରେଟ ପିଲାଟାଏ ଦେଖିଲେ ତାଙ୍କୁ ଏକା ଆଖିରେ ଘଡ଼ିଏ ଗୁହାଁରହନ୍ତି । ଏହାଙ୍କର ବି କେଉଁ ଠିକ୍ ଠିକଣା ଅଛି ? କଅଣ ଝୁଙ୍କ୍ ଉଠିବତ ହଠାତ୍ ଉଠି ହୁଏତ କେଉଁଆଡ଼େ ଯିବ ପଳାଇବେ ତ ଅଫିସ କାର୍ଯ୍ୟରେ ବାଧା ପଡ଼ିବ । ଇଏ ଯେତେବେଳେ ଅସୁବିଧା ସମୟରେ ସାହାଯ୍ୟ କରିଛନ୍ତି, ଏହାଙ୍କୁ ହଠାତ୍ ଗୃହକର୍ମରୁ କାଢ଼ି, ଯାଆ ବୋଲି କହିବାଟା ବି ଉଚିତ ହୋଇନଥାନ୍ତା । ତାପରେ କଲିକତାରେ ତ ଏହାଙ୍କର କେହି ବନ୍ଧୁ ବାନ୍ଧବ ବା ଚିହ୍ନା ପରିଚୟ ଲୋକ ନଥିଲେ । ଗୃହକର୍ମରୁ ବାହାର କରିଦେଲେ ହୁଏତ କୁଆଡ଼େ ନ ଯାଇ ଗଳଗ୍ରହ ହୋଇ ବସି ଅନ୍ନ ଧ୍ୱଂସ କରନ୍ତେ । ଯାହାହେଉ, ସେ ମାରୁଆଡ଼ଟା ସଙ୍ଗେ ଯାଉ ଯାଉ ହାତ ଦେଖା ଝୁଙ୍କରେ ଯଦି ଚୁପ୍ ଏଠୁ ଗୁଡ଼ ଚାଲିଯାଆନ୍ତି, ତେବେ ସବୁଠାରୁ ମଙ୍ଗଳ । ଏସବୁ ଭାବି ଠିକାଦାର ତାଙ୍କୁ ମାରୁଆଡ଼ଙ୍କ ସଙ୍ଗେ ଯିବାକୁ ଅନୁମତି ଦେବାରେ କୁଣ୍ଠାବୋଧ କଲେ ନାହିଁ ।

## ଏଗାର

ଦୁନିଆ ପରିବର୍ତ୍ତନଶୀଳ । ଶୀତ ଯାଉଛି ବସନ୍ତ, ଆସୁଛି । ଖରା ଯାଉଛି ବର୍ଷା ଆସୁଛି । ରାତି ଯାଉଛି, ଦିନ ଆସୁଛି । ସେଇପରି ମନୁଷ୍ୟ ଭାଗ୍ୟର ମଧ୍ୟ ପରିବର୍ତ୍ତନ ଚାଲିଛି । ମନୁଷ୍ୟ ନିୟତିର କ୍ରୀଡ଼ାନକ ମାତ୍ର । ରାଜଭୋଗ ପରେ କାରାଗାର, କାରାଗାର ପରେ କୁଲି ଗୁମାସ୍ତା, କୁଲି ଗୁମାସ୍ତାରୁ ପୁଣି ଜ୍ୟୋତିଷ ପଣ୍ଡିତ ! ଦାସଙ୍କ ଭାଗ୍ୟ କୁଆଡ଼ୁ କୁଆଡ଼କୁ ଟାଣିବାରେ ଲାଗିଛି । ସେ ନଦୀ ସ୍ରୋତରେ ବାଲିଗରଡ଼ା ପରି ଗଡ଼ି ଗଡ଼ି ଚାଲିଛନ୍ତି ।

ବେଳ ଗଡ଼ିବା ସଙ୍ଗେ ସଙ୍ଗେ ଦାସେ ମାରୁଆଡ଼ଙ୍କ ଆଗମନ ବିଷୟ ଭାବି ଛଟପଟ ହେଉଛନ୍ତି ! ମୁହଁ ସନ୍ଧ୍ୟା ହେଲା ବେଳକୁ ସତକୁସତ ହଠାତ୍ ଘୋଡ଼ା ଗାଡ଼ି ଧରି ସେଇ ମାରୁଆଡ଼ି ଭଦ୍ରଲୋକ ଆସି ତାଙ୍କ ବସା ନିକଟରେ ହାଜର ହେଲେ । ଦାସେ ପରିଷ୍କାର ପରିଚ୍ଛନ୍ନ ହୋଇ ଗେରୁଆବସ୍ତ୍ର ପରିଧାନ କରି ପାଗ-ପାଟୁକା ପିନ୍ଧି ପ୍ରସ୍ତୁତ ହୋଇ ସେଠଜୀଙ୍କ ଅପେକ୍ଷାରେ ଥିଲେ । ସେଠଜୀ ପହଞ୍ଚିବା କ୍ଷଣି ତାଙ୍କ ସଙ୍ଗେ ଯିବାକୁ ବାହାରି ପଡ଼ିଲେ । ଘୋଡ଼ାଗାଡ଼ିରେ ବସି

ସେଠଜୀଙ୍କ କୋଠାରେ ପହଞ୍ଚିଲା ପରେ ଆଉକେତେଜଣ ସେଠଜୀ ଓ ସେଠଜୀଙ୍କ ଘରଲୋକେ ଅପେକ୍ଷା କରୁଥିଲେ । ସେମାନେ ବାହାରକୁ ଆସି ପଣ୍ଡିତଙ୍କୁ ଘର ଭିତରକୁ ପାଛୋଟି ନେଇଗଲେ ।

ଏକ ବିରାଟ ଘର । ତାର ଭିତରେ ଆଣ୍ଠୁଏ ଉଚ୍ଚର କାଠପିଣ୍ଡି ଘରରୁ ପ୍ରାୟ ବାରଅଣା ସ୍ଥାନ ମାଡ଼ିବସିଛି । ତା ଉପରେ ମୂଠାଏ ବହଳର ଗଦି ଓ ସଫା ଧଳା ଗୁଦର ପଡ଼ିଛି । ଗଦି ଉପରେ ୨୦/୨୫ଟି ଗୋଲ ଗୋଲ ତକିଆ ଗଡ଼ୁଛି । ଗଦି ପାଖରେ ୨/୪ଟା ବଡ଼ ବଡ଼ ହୁକା ମଧ୍ୟ ଥୁଆଯାଇଛି । ଜଣେ ଅଧେ ହୁକାରୁ ଗୋଟିଏ ଟାଣିଆଣି ଘଡ଼ ଘଡ କରି ହୁକା ଟାଣି ଭସ୍ ଭସ୍ କରି ଧୂଆଁ ଗୁଡ଼ୁଛନ୍ତି ।

ପଣ୍ଡିତେ ଗୋଟିଏ କଣରେ କାନ୍ଥକୁ ଆଉଜି ବସିପଡ଼ିଲେ । ଅନ୍ୟମାନେ ଗୋଟେ ଦୁଇଟା ଲେଖାଏଁ ତକିଆ ଜାକି ବସିପଡ଼ିଲେ । କେହି କେହି ତକିଆ ଜାକି ଲମ୍ବ ହୋଇ ଗଡ଼ପଡ଼ିବାର ମଧ୍ୟ ଉଦ୍ୟମ କଲେ । ସମସ୍ତେ ଗଦିଉପରକୁ ଆସିବା ସଙ୍ଗେ ସଙ୍ଗେ ସେଠଜୀ "ପାନ ଖିଲାଓ" ବୋଲି ପାଟି କରିବା କ୍ଷଣି କେତେଟା ଗୁକର ପାଣି ଗ୍ଲାସଟିଏ ଲେଖାଏଁ ଧରି ହାଜରହେଲେ । ତାପରେ ମିଠେଇ ଥାଳି, ମସଲା ଓ ପାନଡବା ପ୍ରଭୃତି ମଧ୍ୟ ଆସି ପଛକୁପଛ ପହଞ୍ଚିଲା ।

ସେଠଜୀ ଅନ୍ୟମାନଙ୍କ ଆଗରେ ତାଙ୍କର ଭୂୟସି ପ୍ରଶଂସା କରିବା ସଙ୍ଗେ ସଙ୍ଗେ, ସେ ଜଗନ୍ନାଥଧାମରୁ ଆସିଛନ୍ତି ବୋଲି ଜଣାଇଦେଲେ । ତାଙ୍କର ପ୍ରଶସ୍ତି ଗ ନ ଓ ଜ୍ୟୋତିଷ ବିଦ୍ୟାରେ ଅଗାଧ ପାଣ୍ଡିତ୍ୟ ଓ ଅସୀମ ସାଧନା ବିଷୟ ଶୁଣି ଶ୍ରୋତାମାନଙ୍କ ଭିତରୁ ଜଣ ଜଣ କରି ନିଜର ଭବିଷ୍ୟତ ପ୍ରଭୃତି ଜାଣିବା ପାଇଁ ପଣ୍ଡିତଙ୍କ ନିକଟକୁ ଲଗିଆସି ହାତ ଦେଖାଇବା ଓ ନିଜ ଭାଗ୍ୟ ବିଷୟରେ ପ୍ରଶ୍ନ କରିବା କାର୍ଯ୍ୟରେ ଲଗିଗଲେ । ପଣ୍ଡିତେ ବାଧ୍ୟହୋଇ ନିଜକୁ ସମ୍ଭାଳିନେଇ, ଏପରି ସ୍ଥାନରେ ଅପ୍ରତିଭ ନହୋଇ ଧୀରସ୍ଥିର ଭାବରେ ଆଖି କାନ ବୁଜି ମନେମନେ ଗୁଣୁଗୁଣୁ ହୋଇ ନାନାପ୍ରକାର ଗଣନା କରିବାର ବାହାନା ଦେଖାଇଲେ । ତାଙ୍କୁ ଯାହା ପଦେ ଦି ପଦ ଶ୍ଳୋକ କି ଶ୍ଳୋକର ଓଡ଼ିଆ ତର୍ଜମା ଜଣାଥିଲା ତାକୁ ଶୁଦ୍ଧ ଅଶୁଦ୍ଧ ମିଶାଇ ଅସ୍ପଷ୍ଟ ଭାବରେ କେହି ବୁଝିନପାରିବା ଭଳି ଆବୃତ୍ତି କରି ଜଣକେ ପଦେଅଧେ ଭବିଷ୍ୟତ ବାଣୀ ଶୁଣାଇଲେ । ଦାସେ ତ ଗୁଳିକ ଲୋକ, ଶ୍ରୋତାର ହାବଭାବ ଲକ୍ଷ୍ୟକରି କେତେକ ପ୍ରଶ୍ନର ଉତ୍ତରରୂପେ ହେଉ ବା ହାତ ଦେଖାଉଥିବା ଲୋକର ଉଦ୍‌ବିଗ୍ନତା

ଯୋଗୁଁ ତା ପାଟିରୁ ବାହାରିପଡ଼ିଥିବା ହେତୁ ହେଉ, ଏପରି ଫଗଡ଼ରୁ କିଛି ଠଉରିଠଉରି କରି ପୂର୍ବକଥା ବି ଗୋଟିଏ ଦୁଇଟା କହିଲେ । ଯେଉଁମାନଙ୍କର ଠିକ୍ ଠିକ୍ ବାଜିଗଲା ସେମାନେ ଖୁସିହୋଇ ପ୍ରଶଂସା କଲେ ଓ ଅନ୍ୟମାନେ ନୀରବ ରହିଲେ । ପଣ୍ଡିତେ ବେଶ୍ କିଛି ମୋଟାସୋଟା ପାଉଣା ଧରି ଘରକୁ ବସାକୁ ଫେରିଲେ ।

ପଣ୍ଡିତଙ୍କ ମନ ଖୁସି । ଗୁମାସ୍ତା କାମରେ ଆଉ ବେଶି ମନ ଲାଗିଲାନାହିଁ । ମନ ରହିଲା ସାମୁଦ୍ରିକ ବିଦ୍ୟା ଉପରେ । ପରଦିନ ସେଠଙ୍କର ଆଉ କେତେଜଣ ବନ୍ଧୁ ପଣ୍ଡିତଙ୍କୁ ସାକ୍ଷାତ୍ କରିବାକୁ ଚାହିଁବାରୁ ସେ ପୁଣି ସନ୍ଧ୍ୟାରେ ଡ଼କା-ହୋଇଗଲେ । ଏପରି ଦୁଇଚାରି ଦିନ ଲାଗି ଲାଗି ଯିବା ପରେ ସେଠଜୀ ତାଙ୍କୁ ଗୁମାସ୍ତା କାମ ଛାଡ଼ି ଜ୍ୟୋତିଷ ଚର୍ଚ୍ଚା କରିବାକୁ ପ୍ରବର୍ତ୍ତାଇଲେ ଓ ସେଥିପାଇଁ ତାଙ୍କର ବାହାର ଘରରୁ ବଖରାଏ ଛାଡ଼ି ଦେବେ ବୋଲି ପ୍ରସ୍ତାବ ଦେଲେ । ଜ୍ୟୋତିଷ ଚର୍ଚ୍ଚାରେ ତ ବେଶ୍ ଦି ପଇସା ରୋଜଗାରର ସମ୍ଭାବନା । ପୁଣି କଲିକତାରେ ଗୋଟିଏ ପ୍ରଧାନ ରାସ୍ତା ଉପରେ ରହିବା ଓ କାର୍ଯ୍ୟାଳୟ ଖୋଲିବାର ସୁବିଧା ମିଳିବା ଭାଗ୍ୟରେ ଥିଲେ ମିଳେ । ସେ ଯେଉଁ ଦୁସ୍ଥ ଅବସ୍ଥାର ସମ୍ମୁଖୀନ ହୋଇଥିଲେ, ସେଥିରେ ଯେ ତାଙ୍କ ଭାଗ୍ୟ ଭଲଆଡ଼କୁ ଏପରି ଓଲଟିବ ସେ ତାର କଳ୍ପନା ସୁଦ୍ଧା କରିନଥିଲେ ।

ଏହା ଭିତରେ ପୁରୁଣା ଗୁମାସ୍ତା ଫେରିଆସିଥିବାରୁ ସେ ନ ରହିଲେ ଠିକାଦାର ବି ଅସୁବିଧାରେ ପଡ଼ିବାର କାରଣ କିଛି ନଥିଲା । ତେଣୁ ଗୁମାସ୍ତା ଚାକିରିରେ ପୂର୍ଣ୍ଣଚ୍ଛେଦ ପକାଇ ସେ ବଡ଼ବଜାର ସେଠଜୀଙ୍କ ଘରକୁ ଚାଲିଆସିଲେ । ପଞ୍ଜିକା ଓ ଗଣନା ପୁସ୍ତକ ପ୍ରଭୃତିର ଶସ୍ତା ସଂସ୍କରଣ ସବୁ କିଣି ଗୋଟିଏ ଆଲମାରିରେ ରଖି ଘରଟିକୁ ସଜାଇ ଦେଲେ । ଲୋକ ନଥିଲା ବେଳେ ବହି ସବୁ ପଡ଼ାପଡ଼ି କଲେ । ଲୋକମାନେ ହାତଦେଖା, ଜାତକ ଗଣନା, ଶୁଭ ମୁହୂର୍ତ୍ତ ନିର୍ଘଣ୍ଟ ପ୍ରଭୃତି ପାଇଁ ବହୁତ ଭିଡ଼ ଜମାଇଲେ । ଟାଇମ୍ ବେଟାଇମ୍, କିଛି ଠିକ୍ ରହିଲା ନାହିଁ । ତେଣୁ ପଣ୍ଡିତେ ଦିନକୁ ୪ ଘଣ୍ଟା କରି ଗୋଟିଏ ସମୟ ଧାର୍ଯ୍ୟ କରିଦେଲେ । ତା ପରେ ତାଙ୍କୁ ବହୁତ ସମୟ ମିଳିଲା ।

ସେ କଲିକତାର ଗଳି କନ୍ଦି ସହିତ ନିଜକୁ ପରିଚିତ କରାଇବାରେ ଲାଗିଲେ । ଓଡ଼ିଆ କୁଲି ଓ ଠିକାଦାରମାନଙ୍କ ସଙ୍ଗେ ପୂର୍ବ ସମ୍ପର୍କକୁ ଦୃଢ଼ କରିପାରିଲେ । ଏହା ଛଡ଼ା ମାରୁଆଡ଼ି, ଅନ୍ୟ ବ୍ୟବସାୟୀ ଓ ଭଦ୍ରଲୋକମାନଙ୍କ

ଶୁଭ କର୍ମକର୍ମାଣିରେ ଶୁଭ ସମୟ ଧାର୍ଯ୍ୟ କରିବା ପାଇଁ ଡାକରା ପାଇ ସେ ସବୁରେ ଯୋଗ ଦେଲେ । ଏପରିକ କୌଣସି କୌଣସି ସେଠ ତାଙ୍କର ବଡ଼ ବ୍ୟବସାୟ ଯେତେ ଅନ୍ୟ ସହରକୁ ଗଲେ, ଗଣନା କରି ଶୁଭ ସମୟ ନିର୍ଣ୍ଣୟ କରିବାକୁ ତାଙ୍କୁ ସଙ୍ଗରେ ଘେନିଯିବାର ବ୍ୟବସ୍ଥା କଲେ । ସେ ଏହିଭଳି ଯାତ୍ରାରେ ଦୂରଦୂରାନ୍ତର ସ୍ଥାନ ସବୁ ଦେଖିବାର ସୁବିଧା ପାଇଲେ । କାଶୀ, ହରିଦ୍ୱାର, ଲକ୍ଷ୍ନୌ, ଦିଲ୍ଲୀ, କାନପୁର, ଇନ୍ଦୋର, ଜବଲପୁର, ବିଶାଖାପାଟଣା, ମାନ୍ଦ୍ରାଜ ପ୍ରଭୃତି ବ୍ୟବସାୟକେନ୍ଦ୍ର ଓ ତୀର୍ଥସ୍ଥାନମାନ ବୁଲିବାର ସୁବିଧା ପାଇଲେ । ବୁଲିବା ସଙ୍ଗେ ସଙ୍ଗେ ତୀର୍ଥ ଦର୍ଶନ କେବଳ ହୋଇଲା ତା ନୁହେଁ, ତୀର୍ଥସ୍ଥାନଙ୍କରେ ତାଙ୍କର ଗୈରିକ ବସନ, ଦାଢ଼ି ଓ ଚତାଚୈତନ ଯୋଗୁଁ ତାଙ୍କୁ ଉପଯୁକ୍ତ ସମ୍ମାନ ମଧ୍ୟ ମିଳିଲା ।

ଥରେ କାଶୀରେ ବୁଲୁଥିଲାବେଳେ ସେ ଜଣେ ଧୂନିଆ ବାବାଙ୍କ ସାନ୍ନିଧ୍ୟ ଲାଭକଲେ । ବାବା ଚିଲମ ଟାଣୁଥିଲେ । ସେଇ ଅବସ୍ଥାରେ ତାଙ୍କୁ ଦୁଇ ଚାରିପଦ ଧର୍ମବାଣୀ ଶୁଣାଇବା ସଙ୍ଗେ ସଙ୍ଗେ ହାତକୁ ଚିଲମ ନଳୀଟା ବଢ଼ାଇଦେଲେ । ସେ ଜେଲ ଜୀବନ ପରଠାରୁ ନିଶା ସେବନ ପୂରା ଛାଡ଼ିଦେଇଥିଲେ । ତେଣୁ ପ୍ରଥମେ ଟିକିଏ ଅତମତ ହେଲେ,କିନ୍ତୁ ବାବାଜୀଙ୍କ ସହାସ୍ୟ ବଦନକୁ ଚାହିଁ ବାବାଙ୍କୁ ନାସ୍ତି କରିନପାରି, ଚିଲମ ନଳୀଟି ନେଇ ଦୁଇ ଚାରିଥର ଟାଣିଦେଲେ । ସେଇ-ଦିନଠାରୁ ସୁପ୍ତ ସିଂହ ପୁଣି ଜାଗ୍ରତ ହେଲା । ତାଙ୍କର ନିଶା ସେବନ ଆଡ଼କୁ ପୁଣି ମନ ଟାଣିଲା ।

ମଣିଷ ମନ ଭିତରେ ନିଶା ପିଶାଚଟା ଆସ୍ଥାନ ଜମାଇ ବସି ରହିଥାଏ —ଲୁଆଡ଼େ ଚାଲିଯାଏ ନାହିଁ । ଘଟଣା ଚାପରେ ସାମୟିକ ଭୂମି ହୋଇ ପଡ଼ି ରହିଥାଏ ମାତ୍ର, କିନ୍ତୁ ସୁବିଧା ପାଇଲେ ପୁଣି ମନଟାକୁ କାବୁ କରିନିଏ । ପଣ୍ଡିତଙ୍କର ପଇସାପତ୍ରର ଅଭାବ ନଥିଲା—ପୁଣି ଥରେ ନିଶା ପିଶାଚର ପୂଜା ଆରାଧନା କରିବାରେ କୌଣସି ଅସୁବିଧା ହେଲାନାହିଁ ।

ସମୟ ଜୀବନର ଖାଲ ଢିପ ମାଡ଼ି ଗଡ଼ି ଚାଲେ, କାହାକୁ ଅପେକ୍ଷା କରେନାହିଁ । ଘଟଣା ଗୁଡ଼ିକ ମଧ୍ୟ ସେହିପରି ସମୟର ପୃଷ୍ଠ। ଲେଉଟାଇ ଭଲ ମନ୍ଦ ଦେଇ ଆଗେଇ ଚାଲନ୍ତି । ଆଜିର କଥା କାଲିକୁ ରହେନାହିଁ । ଚାହୁଁ ଚାହୁଁ କେତେ କାଳ ବିତିଗଲା । ପରିବର୍ତ୍ତନ ବି ହେଲା । ପଣ୍ଡିତଙ୍କର ଯେ ସବୁ ହାତ ଦେଖା ବା ଗଣନା ଠିକ୍ ହେଉଥିଲା, ତା ନୁହେଁ । ସମସ୍ତେ ଯେ ତାଙ୍କର ସ୍ତାବକ

ଥିଲେ, ତା ବ ନୁହେଁ । ଭିତରେ ଭିତରେ ତାଙ୍କୁ ଅନେକେ ପସନ୍ଦ କରୁନଥିଲେ । କେତେକ ପଛରେ ନିନ୍ଦା ମଧ୍ୟ କରୁଥିଲେ ଓ କେହି କେହି ହିଂସା ମଧ୍ୟ କରୁଥିଲେ । ଜଳନ୍ତା ଚୁଲରେ କେହି ହାତ ପୂରାନ୍ତି ନାହିଁ, କିନ୍ତୁ ନିଆଁ କମିଯାଇ ଅଙ୍ଗାର ଦୁକୁ ଦୁକୁ ହେଲେ, ହାତ ପୂରାଇ ପାଉଁଶ ମିଶା ଅଙ୍ଗାରକୁ କାଢ଼ି ଫୋପାଡ଼ ଦେଇପାରନ୍ତି ।

ପଣ୍ଡିତଙ୍କ ନିଶା ଅଭ୍ୟାସ ପରେ ତାଙ୍କ ତେଜ କମିଲା । ସେ କାର୍ଯ୍ୟରେ ମଧ୍ୟ ଧିମାଇଲେ । ବ୍ୟବସାୟରେ ବେଶି ମନ ଦେଲେ ନାହିଁ । ମନ ମୋଟ ହୋଇଗଲା । ଲୋକଙ୍କ ପ୍ରତି ବେଖାତିର ଭାବ ମଧ୍ୟ ବଢ଼ିଲା । ଆଉ ତାଙ୍କ ବ୍ୟବହାର ପୂର୍ବ ପରି ସେତେ ମଧୁର ଓ ମୂଲ୍ୟବାନ ହେଲା ନାହିଁ । ଆସ୍ତେ ଆସ୍ତେ ନିନ୍ଦୁକ ଓ ହିଂସ୍ରୁକ ସଂଖ୍ୟା ବଢ଼ିଲା ।

ଏତିକବେଳକୁ ଅକାଳରେ ବଜ୍ରପାତ ପରି, ହଠାତ୍ ତାଙ୍କର ପରମ ସ୍ତାବକ ଓ ବନ୍ଧୁ ସେଠଜୀଙ୍କର ପରଲୋକ ହୋଇଗଲା । କାନ୍ଦବୋବାଳି, ଶୁଦ୍ଧ ଶ୍ରାଦ୍ଧ ସବୁ ସରିଲା । ସେ ତାଙ୍କ ବାହାରଘରର ବାହାରପଟର ଯେଉଁ ଘର ବଖରାକ ତାଙ୍କୁ ଛାଡ଼ିଦେଇଥିଲେ ସେ, ସେହି ସ୍ଥାନରେ ଧୂମପାନ ଓ ତା ସାଙ୍ଗକୁ ଆମିଷ ଧୂଧୁନା ପ୍ରଭୃତି ଚଟକର ମଧ୍ୟ ବ୍ୟବହାର ଆରମ୍ଭ କରି ଦେଇଥିଲେ । ଏଥିରେ ତାଙ୍କ ବିଷୟରେ ଚୂପ୍‌ଚାପ୍ ମଧ୍ୟ ଚାଲିଥିଲା । କିନ୍ତୁ ସେଠଜୀ ଥିବାତକ ତାଙ୍କୁ କେହି କିଛି କହିପାରୁ ନଥିଲେ । ସେଠଜୀଙ୍କ ତିରୋଧାନ ପରେ ତାଙ୍କ ବିରୁଦ୍ଧରେ ପ୍ରକାଶ୍ୟରେ ନାନା ପ୍ରକାର ଗୁଜବ ପ୍ରଚାର ହେବାକୁ ଲାଗିଲା ।

ପଣ୍ଡିତେ ଯେ କେବଳ ସେଠ ବ୍ୟବସାୟୀମାନଙ୍କର ଭାଗ୍ୟ ଗଣନା କରୁଥିଲେ ତା ନୁହେଁ, ସେ କୁଲି ଓ ଠିକାଦାରମାନଙ୍କର ବି ଆଗରୁ ହାତ ଦେଖି ସେମାନଙ୍କ ଭିତରେ ବିଖ୍ୟାତ ହୋଇଥିଲେ । ତା ଛଡ଼ା ବଙ୍ଗାଳି, ବିହାରୀ ଓ ଅନ୍ୟାନ୍ୟମାନଙ୍କୁ ମଧ୍ୟ ହାତ ଦେଖା ଓ ଭାଗ୍ୟ ଗଣନାରୁ ବାଦ୍ ଦେଇନଥିଲେ । ଏପରିକି କଏ ଡାକିନେଲେ ସମୟେସମୟେରେ ନର୍ତ୍ତକୀ, ବାଈଜୀ ପ୍ରଭୃତିଙ୍କର ମଧ୍ୟ ଭାଗ୍ୟ ଗଣନା କରି ସେମାନଙ୍କ ସଙ୍ଗେ ପରିଚିତ ହୋଇଥିଲେ । ବିଶେଷତଃ ନିଶା ଅଭ୍ୟାସ ପରେ, ପଇସା ଅଭାବ ହେବାରୁ ବଡ଼ ବଡ଼ ଗ୍ରାହକ ନ ମିଳିଲେ ସେ ବିଭିନ୍ନ ସ୍ଥାନକୁ ଯାଇ ଦୁଇପଇସା ରୋଜଗାର କରି ନିଶାଅଭାବ ମେଣ୍ଟାଉଥିଲେ ।

ଥରେ ଜଣେ ଠିକାଦାର, କେତେକ ବାଣ୍ଡଣାଙ୍କ ଅନୁରୋଧରେ ସେମାନଙ୍କ ହାତ ଦେଖିବାକୁ, ପଣ୍ଡିତଙ୍କୁ କଲକତାର କୁଖ୍ୟାତ ବେଶ୍ୟାପଡ଼ା ହାଡ଼କଟା ଗଳକୁ ଡାକନେଲେ । ସେ ଦୁଇ ଗୃହଜଣଙ୍କ ହାତ ଦେଖିବା ପରେ, ଓଡ଼ଆ କହୁଥିବା ଗୋଟିଏ ଷୋଡ଼ଶୀ ବାଳକା ତାଙ୍କ ଆଡ଼କୁ ହାତ ବଢ଼ାଇ-ଦେଲ । ସେ ତା ମୁହଁକୁ ଗୃହିଁଦେଇ ହଠାତ୍ ଥକ୍‌କା ହୋଇ ରହିଗଲେ । ସେ ମୁହଁଟି ତାଙ୍କର କପର ଚହ୍ନା ଚହ୍ନା ପର ଲଗିଲ । ତାପରେ ସେ ହାତ ଦେଖାରେ ଲଗିପଡ଼ଲେ; କନ୍ତୁ ହାତ ଦେଖିଲବେଳେ ତା ମୁହଁକୁ ଟେରେଇ ଟେରେଇ ଗୃହୁଁ ଥାନ୍ତ । ସେ ମଧ ମୁରୁକ ମୁରୁକ ହସି ତାହାଙ୍କୁ ଗୃହୁଁ ଥାଏ । ହାତ ଦେଖିଲବେଳେ ସୁବଧା ଦେଖି ଅନ୍ୟମାନେ ଅନ୍ୟମନସ୍କ ଥିଲବେଳେ ସେ ଗୁନ ଗୁନ କର କହିଲ—"କାଲ ସକାଳ ଆଠଟା ବେଳେ ଏ ଗଳ ମୁଣ୍ଡ ବଡ-ଖମ୍ବ ପାଟକୁ ଆସିବ ।"

ହାତଦେଖା ସରଲ । ସେ ଯୁଆଡ଼େ ଗଲେ । ସେ ମଧ ତାଙ୍କ ବସାକୁ ଫେରଆସିଲେ । କନ୍ତୁ ଅନେକ ଦନରୁ ହାଲୁକା ହୋଇଯାଇଥିବା ତାଙ୍କ ମୁଣ୍ଡଟା ପୁଣି କାହିଁକ ଓଜନଆ ହୋଇଗଲ । ମୁଣ୍ଡରେ ଯେପରକ ହଠାତ୍ କଏ ଗୋଟାଏ ବଡ଼ ଓଜନଆ ପଥର ଆଣି ଲଦଦେଇଗଲ । ସେ ଝିଅଟିର ମୁହଁ ଓ ଚେହେରା ଖାଲ ମନେପଡ଼ଲ । ଶସ୍ତା ଅଳଙ୍କାର ମଣ୍ଡିତ ରଙ୍ଗୀନ ଶାଢ଼ୀ ପିନ୍ଧା ଚେହେରା । ବୟସ ପନ୍ଦର କ ଷୋହଳ ହେବ । କାହା ଚେହେରା ପର ଚେହେରା ! ସେ କେଉଁଠି ବା ତାକୁ ଆଗରୁ ଦେଖିଛନ୍ତ—ଏହିପର ନାନା କଥା ସେ ଭାବେ ବସିଲେ । ନଶ୍ଚୟ ଖୁବ୍ ଜଣାଶୁଣା ଚେହେରା—କନ୍ତୁ ସେ କଏ ? ସେ ଚହ୍ନି ପାରୁ ନାହାନ୍ତ କାହିଁକ ? ଏହିପର ଭାବୁ ଭାବୁ ହଠାତ୍ ବହୁଦନୁ ଜମାଟ ବାନ୍ଧ ରହିଥିବା ପରଦାଟି ତାଙ୍କ ମନ ଭିତରେ ଫାଟି ମେଲହୋଇଗଲ । ସେ ଚମକପଡ଼ଲେ । ଠିକ୍ 'ଚନ୍ଦୁନୀ'ର ଚେହେରା । ଚନ୍ଦୁନୀ ତ ବୟସ୍କା ଥିଲ । ଏବେ ବ ତ ତାକୁ ଆଉର ଟିକଏ ଅଧିକ ବୟସ ହୋଇଯିବଣି । ତେବେ ଚନ୍ଦୁନୀର ତ ଗୋଟିଏ ଗ୍ରେଟିଆ ଝିଅ ଥିଲ—ସିଏ ଏହା ଭିତରେ ବଡ଼ ହୋଇଯିବାର କଥା । ତେବେ ଏ କଅଣ ସେଇ ପିଲ ? ସେ ତ ପିଲଦନେ ସବୁବେଳେ ଆସି ମୋ ପାଖରେ ଗେଲେଇ ଲଟେଇ ହୁଏ । ଚନ୍ଦୁନୀ ଶିଖାଇବା ଅନୁସାରେ ସମସ୍ତଙ୍କୁ ମଉସା ଡାକେ, କନ୍ତୁ ମୋତେ ମଉସା-ବାପା ବୋଲ ସମ୍ବୋଧନ କରେ । ସେ ଯଦ ହୋଇଥାଏ ? ମୋର ଦାଢ଼ିଥିଲେ ମଧ ମତେ ଚହ୍ନିବାକୁ ତାକୁ ଅସୁବଧା

ହୋଇନଥିବ । ସେ ମୋତେ ଚହ୍ନି ପାରିଛୁ ନ ହେଲେ କାହିଁକି ସକାଳ ଆଠଟା ବେଳକୁ ଆସି ଏକୁଟିଆରେ ଦେଖା କରିବାକୁ କହିଥାନ୍ତା ? ଏପରି ଭାବି ଭାବି ସେ ନାନା ଦ୍ୱନ୍ଦ୍ୱରେ ପଡ଼ିଲେ । ରାତିରେ ଆଉ ତାଙ୍କୁ ଭଲ ନିଦ ହେଲା ନାହିଁ ।

ସେ ଘେରରୁ ଉଠି ସେଭଳି ସ୍ଥାନକୁ ଏକୁଟିଆ ଯିବେ କି ନାହିଁ ସ୍ଥିର କରି ପାରିଲେ ନାହିଁ । ସେ ସ୍ଥାନ ତ ଗୁଣ୍ଡା ଓ ଅସାମାଜିକ ଲୋକରେ ପୂର୍ଣ୍ଣ । ସେଠାକୁ ଏକୁଟିଆ ଯିବା ବି ନିରାପଦ ନୁହେଁ । ସେଥିରେ ପୁଣି ଗୋଟିଏ ଯୁବତୀ ବେଶ୍ୟା ସଙ୍ଗେ ଗୋପନରେ ଦେଖା ସାକ୍ଷାତ୍ ! ଏସବୁ ପଛରେ ହୁଏତ କିଛି ଦୁରଭିସନ୍ଧି ଥାଇପାରେ ବୋଲି କେହି ଭାବିବେ ।

ସେ ସେଇ ଝିଅଟିକୁ ଯାହା ବୋଲି ଭାବୁଛନ୍ତି ହୁଏତ ତାଙ୍କର ଭାବିବା ଭୁଲହୋଇପାରେ ! ଏକା ଚେହେରାର କଅଣ ବହୁତ ଲୋକ ନାହାନ୍ତି ? ତାପରେ ସେ ପିଲା ଯଦି ବା ଚନ୍ଦ୍ରିକାର ଝିଅ ହୋଇଥିବ ସେ ଏତେ ବାଟ କଲିକତାକୁ— ପୁଣି ବେଶ୍ୟାପଡ଼ାକୁ ଆସିଲା ବା କିପରି ? ସେ ଯେହେତୁ ବା ଯେପରି ଆସୁ, ସେ ସବୁ ଜାଣିକରି ବା ଲାଭ କଣ ? ସେ ସେଇ ଝିଅ ହୋଇଥିଲେ ବି ସେ ତ ଚନ୍ଦ୍ରିକାର ଝିଅ,ତାର ବାପାର ଠିକଣା ନାହିଁ । ମାଆ ବ୍ୟବସାୟୀରେ ତ । ପଶିଲା ସେ ବା ତାର କି ଉପକାର କରିପାରିବେ ? ତାକୁ କଅଣ ଅବାଟରୁ ଆଉ ବାଟକୁ ଆଣିପାରିବେ ? ଆଣିଲେ ବା ଲାଭ କଅଣ ? ସେ ବା ବାହାହୋଇ କେଉଁଠି ଘର କରନ୍ତା—ତାକୁ କିଏ ବା ବାହା ହୁଅନ୍ତା ? ତା ଭବିଷ୍ୟତ ବା କଅଣ ? ତା ମାଆ ଯାହା କରୁଥିଲା ଲୁଚେଇ କରି କରୁଥିଲା—ସେ ଲୁଚିବାଟା ଅବଶ୍ୟ "ଲୁଚିଛୁ ନା ଗୋଡ଼ ଦୁଇଟି ଦିଶୁଛି" ପରି । ସେ ବର୍ତ୍ତମାନ ସେଇ ମାର ବ୍ୟବସାୟ କରୁଛି, କିନ୍ତୁ ଖର୍ ବଜାର ଉପରେ ଦେଖାଇ କରି କରୁଛି । ତା ମାଆ ଓ ତା ଭିତରେ ତଫାତ୍ କଅଣ ?

ସେ କାହିଁକି ତା ପାଖକୁ ଯିବେ ' ତାକୁ କାହିଁକି ପୁଣି ଚହ୍ଲା ଦେବେ ? ଏପରି ଏଣୁତେଣୁ ନାନା କଥା ବିଚାରି ବିଚାରି ସେ ତାଙ୍କର ସକାଳର ସମସ୍ତ ନିତ୍ୟକର୍ମ ବଢ଼ାଇଲେ । ନିଜର ଲୁଗାପଟା ପିନ୍ଧିସାରି ତାଙ୍କ ପଢ଼ା ସ୍ଥାନରେ ଯାଇ ବସିବାକୁ ସ୍ଥିରକଲେ । କିନ୍ତୁ ଅନ୍ୟମନସ୍କ ଭାବରେ ତାଙ୍କର ଗୋଡ଼ଦୁଇଟା ଆପେ ଆପେ ଘର ଦୁଆର ବନ୍ଦ କରିଦେଇ ରାସ୍ତା ଆଡ଼କୁ ଚାଲିଲା ।

ରାସ୍ତା ଘଣ୍ଟାରେ ଠଣ୍ ଠଣ୍ ହୋଇ ଆଠଟା ବାଜିଲା । ତାଙ୍କ ଗୋଡ଼ ଘୋଷାରି ହୋଇ ହୋଇ ସେ ମନ୍ତ୍ରମୁଗ୍ଧ ପରି ଆସି ସେ ଗଳି ମୁଣ୍ଡରେ ବତିଖମ୍ବ

ଥରେ ଜଣେ ଠିକାଦାର, କେତେକ ବାଲିକାଙ୍କ ଅନୁରୋଧରେ ସେମାନଙ୍କ ହାତ ଦେଖିବାକୁ, ପଣ୍ଡିତଙ୍କୁ କଲିକତାର କୁଖ୍ୟାତ ବେଶ୍ୟାପଡ଼ା ହାଡ଼କଟା ଗଳିକୁ ଡାକିନେଲେ । ସେ ଦୁଇ ଚାରିଜଣଙ୍କ ହାତ ଦେଖିବା ପରେ, ଓଢ଼ଣା କାଢ଼ିଥିବା ଗୋଟିଏ ଷୋଡ଼ଶୀ ବାଳିକା ତାଙ୍କ ଆଡ଼କୁ ହାତ ବଢ଼ାଇ-ଦେଲା । ସେ ତା ମୁହଁକୁ ଚାହିଁଦେଇ ହଠାତ୍ ଥକ୍କା ହୋଇ ରହିଗଲେ । ସେ ମୁହଁଟି ତାଙ୍କର କପରି ଚିହ୍ନା ଚିହ୍ନା ପରି ଲାଗିଲା । ତାପରେ ସେ ହାତ ଦେଖାରେ ଲାଗିପଡ଼ିଲେ; କିନ୍ତୁ ହାତ ଦେଖିଲାବେଳେ ତା ମୁହଁକୁ ଟେରେଇ ଟେରେଇ ଚାହୁଁଥାନ୍ତି । ସେ ମଧ୍ୟ ମୁରୁକି ମୁରୁକି ହସି ତାହାଙ୍କୁ ଚାହୁଁଥାଏ । ହାତ ଦେଖିଲାବେଳେ ସୁବିଧା ଦେଖି ଅନ୍ୟମାନେ ଅନ୍ୟମନସ୍କ ଥିଲାବେଳେ ସେ ଭୁନ ଭୁନ କରି କହିଲା—"କାଲି ସକାଳ ଆଠଟା ବେଳେ ଏ ଗଳି ମୁଣ୍ଡ ବତି-ଖମ୍ବ ପାଖକୁ ଆସିବ ।"

ହାତଦେଖା ସରିଲା । ସେ ଯୁଆଡ଼େ ଗଲେ । ସେ ମଧ୍ୟ ତାଙ୍କ ବସାକୁ ଫେରିଆସିଲେ । କିନ୍ତୁ ଅନେକ ଦିନରୁ ହାଲୁକା ହୋଇଯାଇଥିବା ତାଙ୍କ ମୁଣ୍ଡଟା ପୁଣି କାହିଁକି ଓଜନିଆ ହୋଇଗଲା । ମୁଣ୍ଡରେ ଯେପରିକି ହଠାତ୍ କିଏ ଗୋଟାଏ ବଡ଼ ଓଜନିଆ ପଥର ଆଣି ଲଦିଦେଇଗଲା । ସେ ଝିଅଟିର ମୁହଁ ଓ ଚେହେରା ଖାଲି ମନେପଡ଼ିଲା । ଶସ୍ତା ଅଳଙ୍କାର ମଣ୍ଡିତ ରଙ୍ଗୀନ ଶାଢ଼ୀ ପିନ୍ଧା ଚେହେରା । ବୟସ ପନ୍ଦର କି ଷୋହଳ ହେବ । କାହା ଚେହେରା ପରି ଚେହେରା ! ସେ କେଉଁଠି ବା ତାକୁ ଆଗରୁ ଦେଖିଛନ୍ତି—ଏହିପରି ନାନା କଥା ସେ ଭାବି ବସିଲେ । ନିଶ୍ଚୟ ଖୁବ୍ ଜଣାଶୁଣା ଚେହେରା—କିନ୍ତୁ ସେ କିଏ ? ସେ ଚିହ୍ନି ପାରୁ ନାହାନ୍ତି କାହିଁକି ? ଏହିପରି ଭାବୁ ଭାବୁ ହଠାତ୍ ବହୁଦିନରୁ ଜମାଟ ବାନ୍ଧି ରହିଥିବା ପରଦାଟି ତାଙ୍କ ମନ ଭିତରେ ଫାଟି ମେଲିହୋଇଗଲା । ସେ ଚମକିପଡ଼ିଲେ । ଠିକ୍ 'ଚନ୍ଦୁରା'ର ଚେହେରା । ଚନ୍ଦୁରା ତ ବୟସ୍କା ଥିଲା । ଏବେ ବି ତ ତାକୁ ଆଉରି ଟିକିଏ ଅଧିକ ବୟସ ହୋଇଯିବଣି । ତେବେ ଚନ୍ଦୁରାର ତ ଗୋଟିଏ ଛୋଟିଆ ଝିଅ ଥିଲା—ସିଏ ଏହା ଭିତରେ ବଡ଼ ହୋଇଯିବାର କଥା । ତେବେ ଏ କିଅଣ ସେଇ ପିଲା ? ସେ ତ ପିଲାଦିନେ ସବୁବେଳେ ଆସି ମୋ ପାଖରେ ଖେଳେଇ ଲଟେଇ ହୁଏ । ଚନ୍ଦୁରା ଶିଖାଇବା ଅନୁସାରେ ସମସ୍ତଙ୍କୁ ମଉସା ଡାକେ, କିନ୍ତୁ ମୋତେ ମଉସା-ବାପା ବୋଲି ସମ୍ବୋଧନ କରେ । ସେ ଯଦି ହୋଇଥାଏ ? ମୋର ଦାଢ଼ିଥିଲେ ମଧ୍ୟ ମତେ ଚିହ୍ନିବାକୁ ତାକୁ ଅସୁବିଧା

ହୋଇନଥିବ । ସେ ମୋତେ ଚିହ୍ନି ପାରିଛି ନ ହେଲେ କାହିଁକି ସକାଳ ଆଠଟା ବେଳକୁ ଆସି ଏକୁଟିଆରେ ଦେଖା କରିବାକୁ କହିଥାନ୍ତା ? ଏପରି ଭାବି ଭାବି ସେ ନାନା ଦ୍ୱନ୍ଦ୍ୱରେ ପଡ଼ିଲେ । ରାତିରେ ଆଉ ତାଙ୍କୁ ଭଲ ନିଦ ହେଲା ନାହିଁ ।

ସେ ଭୋରରୁ ଉଠି ସେଭଳି ସ୍ଥାନକୁ ଏକୁଟିଆ ଯିବେ କି ନାହିଁ ସ୍ଥିର କରି ପାରିଲେ ନାହିଁ । ସେ ସ୍ଥାନ ତ ଗୁଣ୍ଡା ଓ ଅସାମାଜିକ ଲୋକରେ ପୂର୍ଣ୍ଣ । ସେଠାକୁ ଏକୁଟିଆ ଯିବା ବି ନିରାପଦ ନୁହେଁ । ସେଥିରେ ପୁଣି ଗୋଟିଏ ଯୁବତୀ ବେଶ୍ୟା ସଙ୍ଗେ ଗୋପନରେ ଦେଖା ସାକ୍ଷାତ୍ ! ଏସବୁ ପଛରେ ହୁଏତ କିଛି ଦୁରଭିସନ୍ଧି ଥାଇପାରେ ବୋଲି କେହି ଭାବିବେ ।

ସେ ସେଇ ଝିଅଟିକୁ ଯାହା ବୋଲି ଭାବୁଛନ୍ତି ହୁଏତ ତାଙ୍କର ଭାବିବା ଭୁଲ ହୋଇପାରେ ! ଏକା ଚେହେରାର କଅଣ ବହୁତ ଲୋକ ନାହାନ୍ତି ? ତାପରେ ସେ ପିଲା ଯଦି ବା ଚନ୍ଦ୍ରଧରର ଝିଅ ହୋଇଥିବ ସେ ଏତେ ବାଟ କଲିକତାକୁ— ପୁଣି ବେଶ୍ୟାପଡ଼ାକୁ ଆସିଲା ବା କିପରି ? ସେ ଯେହେତୁ ବା ଯେପରି ଆସୁ, ସେ ସବୁ ଜାଣିକରି ବା ଲାଭ କଣ ? ସେ ସେଇ ଝିଅ ହୋଇଥିଲେ ବି ସେ ତ ଚନ୍ଦ୍ରଧରର ଝିଅ, ତାର ବାପର ଠିକଣା ନାହିଁ । ମାଆ ବ୍ୟବସାୟରେ ତ । ପଶିଲା ସେ ବା ତାର କି ଉପକାର କରିପାରିବେ ? ତାକୁ କଅଣ ଅବାଟରୁ ଆଉ ବାଟକୁ ଆଣିପାରିବେ ? ଆଣିଲେ ବା ଲାଭ କଅଣ ? ସେ ବା ବାହାହୋଇ କେଉଁଠି ଘର କରନ୍ତା—ତାକୁ କିଏ ବା ବାହା ହୁଅନ୍ତା ? ତା ଭବିଷ୍ୟତ ବା କଅଣ ? ତା ମାଆ ଯାହା କରୁଥିଲା ଲୁଚେଇ କରି କରୁଥିଲା—ସେ ଲୁଚିବାଟା ଅବଶ୍ୟ "ଲୁଚିଛି ନା ଗୋଡ଼ ଦୁଇଟି ଦିଶୁଛି" ପରି । ସେ ବର୍ତ୍ତମାନ ସେଇ ମାର ବ୍ୟବସାୟ କରୁଛି, କିନ୍ତୁ ଭର୍ ବଜାର ଉପରେ ଦେଖାଇ କରି କରୁଛି । ତା ମାଆ ଓ ତା ଭିତରେ ତଫାତ୍ କଅଣ ?

ସେ କାହିଁକି ତା ପାଖକୁ ଯିବେ ' ତାକୁ କାହିଁକି ପୂର୍ବ ଚିହ୍ନା ଦେବେ ? ଏପରି ଏଣୁତେଣୁ ନାନା କଥା ବିଚାରି ବିଚାରି ସେ ତାଙ୍କର ସକାଳର ସମସ୍ତ ନିତ୍ୟକର୍ମ ବିତାଇଲେ । ନିଜର ଲୁଗାପଟା ପିନ୍ଧିସାରି ତାଙ୍କ ପଢ଼ା ସ୍ଥାନରେ ଯାଇ ବସିବାକୁ ସ୍ଥିରକଲେ । କିନ୍ତୁ ଅନ୍ୟମନସ୍କ ଭାବରେ ତାଙ୍କର ଗୋଡ଼ଦୁଇଟା ଆପେ ଆପେ ଘର ଦୁଆର ବନ୍ଧ ଡେଇଁ ରାସ୍ତା ଆଡ଼କୁ ଚାଲିଲା ।

ରାସ୍ତା ଘଣ୍ଟାରେ ଠଣ୍ ଠଣ୍ ହୋଇ ଆଠଟା ବାଜିଲା । ତାଙ୍କ ଗୋଡ଼ ଘୋଷାରି ହୋଇ ହୋଇ ସେ ମନ୍ତ୍ରଚାଳିତ ପରି ଆସି ସେ ଗଳି ମୁଣ୍ଡରେ ବତିଖମ୍ବ

ପାଖରେ ଠିଆହୋଇଗଲେ । ଯୁବତୀଟି ସେଇଠି କେଉଁଠି ଲୁଚି ରହିଥିଲା ପରି ଠିଆହୋଇରହିଥିଲା—ହଠାତ୍ ବାହାରିଆସି ଓଳଗି ହୋଇ ବାଷ୍ପରୁଦ୍ଧ କଣ୍ଠରେ କହିଲା, "ମଉସାବାପା, ତମ ଗେହ୍ଲା ଝିଅ ବିମଳାକୁ କଅଣ ତୁମେ ପୂରା ଭୁଲିଗଲ ? ତୁମେ ମୋତେ ଚିହ୍ନି ପାରୁନାହଁ ? ମୁଁ କିନ୍ତୁ ଦେଖିଲା କ୍ଷଣି ତୁମକୁ ଚିହ୍ନିପାରିଛି । ତୁମେ ତ ଆମ ଘରକୁ ବେଶି ଆସୁନଥିଲ—ପରେ କୁଆଡ଼େ ଉଭାନ ହୋଇଗଲ । ଶେଷରେ ମୋ ଦଶା ଏଇଆ ହେବାକୁ ଥିଲା ।" ଏତିକି କହି ସେ କଇଁ କଇଁ ହୋଇ କାନ୍ଦିଉଠିଲା ।

ସେ ବା ତାକୁ କଅଣ ବୋଧ ଦେଇ ବୁଝାଇବେ ? କେବଳ " 'ମା' ଟା ପରି କାନ୍ଦନା, କାନ୍ଦନା, ଭଗବାନଙ୍କର ଯାହା ବିଧି ତା ହୁଏ ।" କହି ତା ପିଠି ଆଉଁସିବାରେ ଲାଗିଲେ । ସେ କାନ୍ଦ ଚାପିକରି ତାର ଇତିହାସ କଇଁ କଇଁ ହୋଇ ବର୍ଣ୍ଣନା କଲା ।

ଖାଇବାକୁ ନ ପାଇ, ଶେଷରେ ପ୍ରଲୋଭନରେ ପଡ଼ି ଜଣେ ଅଚିହ୍ନା ନିଶୁଆ ବଙ୍ଗାଳୀବାବୁଙ୍କୁ ତାର ମାଆ ଚନ୍ଦ୍ରିମା ତାକୁ ବିକି କରିଦେଲା । କିଣିବା ଲୋକ ତାକୁ ଆଣି ଏ ସାଇରେ ଜଣକ ଜିମା କରିଦେଇଗଲା । ସେ ବଡ଼ ଭୟଙ୍କର ଲୋକ । ତାର ଜବରଦସ୍ତିରେ ସେ ବରଷେ ହେଲା ଏ ନର୍ଲଜ୍ଜ କାମ କରିବାକୁ ବାଧହେଉଛି । ତା ଉପରେ ସଦାବେଳେ କଡ଼ା ନଜର । ତାର କାହା ସାଙ୍ଗରେ ଭଲ ମନ୍ଦ କଥାବାର୍ତ୍ତା ହେବାର ଜୁନାହିଁ । କୁଆଡ଼େ ପଳାଇବା ତ ଦୂରର କଥା—ସେ ବା କେଉଁଠା ଚିହ୍ନିଛି, ବା କାହାକୁ ଜାଣିଛି ଯେ ପଳାଇବ ? ଘର ତ ବହୁତ ଦୂର, ପୁଣି ଯେଉଁ ମା ଏହା କରିଛି ତା ପାଖକୁ ଯାଇ ବା ଲାଭ କଣ ? ତାଠାରୁ କଅଣ ଛଡ଼ାଇ ପୁଣି ଏଠାକୁ ଆଣି ପାରିବେ ନାହିଁ ? ଏଠାର ଲୋକ-ଗୁଡ଼ାକ ରାକ୍ଷସଠାରୁ ବଳି ଆହୁରି ନିଷ୍ଠୁର । ସେ ପ୍ରଥମେ ପ୍ରଥମେ ରାଜି ନ ହେବାରୁ ତାକୁ ନସ୍ତୁକ ମାଡ଼ ହେଲା । ମୁଠାଏ ମୁଠାଏ ଖାଇ ସେ ପଡ଼ିରହିଛି । ତାକୁ ସେମାନେ ଗୋଟାଏ ପଇସା ଦିଅନ୍ତି ନାହିଁ । ତାକୁ କେତେ କଣ ରୋଗ ମଧ୍ୟ ଧରିଲାଣି ।

ତା କଥା ଶୁଣି ପଣ୍ଡିତେ ଅଣ୍ଟାରୁ କିଛି ପଇସା କାଢ଼ୁଥିଲେ, କିନ୍ତୁ ସେ କାନ୍ଦ ପକାଇ କହିଲା, "ମୋତେ ପଇସା ଦିଅ ନାହିଁ । ମୋ ପାଖରେ ପଇସା ରଖିବାକୁ ମନା । ସେମାନେ ପଇସା ଦେଖିଲେ ମୋ ଠାରୁ ଛଡ଼ାଇ ନେଇ କେଉଁଠୁ ପାଇଲି ବୋଲି ଏଣୁ ତେଣୁ ପଚାରି ହଇରାଣ କରିବେ ଓ ମୋ ଉତ୍ତରରେ

ସନ୍ତୁଷ୍ଟ ନ ହେଲେ ମତେ ନିସ୍ତୁକ ଛେଡବେ । ତୁମେ ଦେଇଛ ବୋଲି ଜାଣିଲେ ବି ତୁମର ରକ୍ଷା ନାହିଁ । ତୁମ ବିରୁଦ୍ଧରେ ଲଗିଲେ ତୁମକୁ ନାନା ବାଟରେ ହଇରଣ ଓ ବଦ୍‌ନାମ୍ କରାଇବେ ଓ ତୁମକୁ ବି ଜୀବନରେ ମାରିଦେବାକୁ ପଛେଇବେ ନାହିଁ । ଏଠି ମା ବ'ପା କେହି ନାହିଁ । ସବୁ ପୋଲିସବାଲ୍ ତାଙ୍କର ସଲସୁତୁରା ହୋଇ ସେମାନଙ୍କୁ ଓଲଟି ସାହାଯ୍ୟ କରି ତୁମକୁ ମୋକଦ୍ଦମାରେ ପକାଇ ବାନ୍ଧିନେବେ । ତୁମେ ବି ମୋତେ ଚହ୍ନିଚ ବୋଲି କାହାକୁ ଇସାରାରେ ପର୍ଯ୍ୟନ୍ତ ଜଣାଇବ ନାହିଁ—କାରଣ ସେଥିରେ ମଧ୍ୟ ତୁମର ଓ ମୋର ବିପଦ ଥୁଆ ।

ଏତିକବେଳେ ପାଇପଟରୁ ଜଣେ କିଏ ଆସିବାର ଶବ୍ଦ ଶୁଭିଲା । ସେଥିରେ ଡରିଯାଇ ଝିଅଟି ଦଉଡ଼ି ଦଉଡ଼ି ପଳାଇ ଗୋଟିଏ ଘରେ ପଶିଗଲା । ପଣ୍ଡିତେ କିଛି ସମୟ ଅବାକ୍ ହୋଇ ଉପରକୁ ଚାହିଁ ରହିଲେ । ତାପରେ କ୍ଷୁଣ୍ଣ ମନରେ ସେଠାରୁ ସିଧା ବସାକୁ ଫେରିଆସିଲେ ।

ସେଇ ଦିନଠାରୁ ପ୍ରାୟ ପ୍ରତ୍ୟେକ ଦିନ ସକାଳେ ସେଇ ବାଟ ଦେଇ ଚାଲି ଚାଲି ହୋଇ ଏପଟେ ସେପଟେ ଆଖି ବୁଲାଇ ଚାଲିଯାଆନ୍ତି । ଗୋଟିଏ କୋଠା ଉପରେ ବାଡ଼ ଧରି ଝୁଲିକରି ସେ ଝିଅଟି ତାଙ୍କ ବାଟକୁ ଚାହିଁରହିଥିବାର ଲକ୍ଷ୍ୟ କରନ୍ତି । ଆଖିରେ ଆଖି ମିଳେ ଦୁହିଁଙ୍କର । ଆଖିରେ ଲୁହ । କିନ୍ତୁ ଦୁହେଁ ଦୁହିଁଙ୍କ ସଙ୍ଗେ ଭେଟ ହୋଇ କଥାବାର୍ତ୍ତା କରିବାର ସୁଯୋଗ ପାଇପାରନ୍ତିନାହିଁ ।

ଏପରି ଦଶ ପନ୍ଦର ଦିନ ବିତିଗଲା ପରେ ଆଉ ସେ ଝିଅଟି ଠିଆ-ହେବାର ଦେଖାଗଲାନାହିଁ । ସେ ଆଠ ଦଶ ଦିନ ନିରାଶରେ ଫେରିବା ପରେ ଘଟଣା କଅଣ ଜାଣିବାକୁ ହାତ ଦେଖା ପଣ୍ଡିତ ଘରରେ, ସେଠାରେ ଯାଇ ପହଞ୍ଚିଲେ । ହାତ ଦେଖୁ ଦେଖୁ ପୂର୍ବେ ବିମଳା ସଙ୍ଗେ ହାତ ଦେଖାଇଥିବା ଆଉ ଗୋଟିଏ ଯୁବତୀକୁ ତା ସାଥି ବିମଳା କଥା ତୁନିକରି ପଚାରିଲେ । ସେ କହିଲା, "କାହା କଥା ପଚାରୁଛନ୍ତି ? ବିମଳା ବାଈର କଥା ? ସେ ତ କେତେଦିନ ହେଲା ଶକ୍ତ ବେମାରରେ ପଡ଼ିଥିଲା । ରୋଗ ଯୋଗୁଁ ତାକୁ ତଡ଼ିଦେବାକୁ ବସିଥିଲେ । କିଏ ଦୟାକରି ନେଇ ବଡ଼ମେଡ଼ିକାଲରେ ପକାଇଛି । ମୁଁ ଶୁଣିଥିଲି ସେ ସେଠାରେ ସଂକ୍ରାମକରୋଗ ଓ୍ୱାର୍ଡରେ ତିରିଶ ନମ୍ବର ଖଟିଆରେ ଅଛି । ସେଠୁ ପ୍ରାୟ ଆଉ କେହି ଭଲ ହୋଇ ଆସନ୍ତି ନାହିଁ । ଆପଣ ତ ତାର ହାତ ଦେଖିଥିଲେ—ସବୁକଥା ଜାଣି ପାରିଥିବେ ନିଶ୍ଚୟ ! ସେଇ ଯୋଗୁଁ ବୋଧହୁଏ

ମତେ ପଚାରୁଛନ୍ତ । ମୋ ହାତ ଦେଖି କହିଲେ, ମୋ ଅବସ୍ଥା ଆଉ ଖରାପର ହେବ ନାହିଁ ତ ?"

ପଣ୍ଡିତେ ତାର ସାଥୀକୁ ଏଣୁ ତେଣୁ ଦି ପଦ କଥା କହି ବୋଧ ଶୋଧ ଦେଇ, ସିଧା ସିଧା ହସ୍‌ପିଟାଲ ଆଡ଼କୁ ବାଟେଇଲେ । ଡାକ୍ତରଖାନାରେ ଖୋଜ ଖୋଜ ଯାଇ ବିମଳାର ଖଟିଆ ପାଖରେ ପହଞ୍ଚିଲେ । ସେ ଗୋଟିଏ ମଇଳା ଖଟିଆରେ ପଡ଼ିଥାଏ । ତା ପାଖରେ ତାର ହୋଇ ଆଉ କେହି ନାହିଁ । ବିମଳା ତାଙ୍କୁ ଦେଖିବା କ୍ଷଣି ଉଠି ବସିବାକୁ ଚେଷ୍ଟା କଲା—କିନ୍ତୁ ବସି ନପାରି ପୁଣି ଶେଯରେ ପଡ଼ିଗଲା । ସେ କ୍ଷୀଣ ସ୍ୱରରେ କହିଲା, "ତୁମେ କିପରି ଏଠାକୁ ଆସିଲ ? ଏଠାକୁ ତ କେହି ଆସନ୍ତି ନାହିଁ ? ମୋ ପରି ରୋଗୀମାନେ ଏଇଠି ଏଇପରି ପଡ଼ି ପଡ଼ି ପଚି ସଢ଼ି ମରନ୍ତି । ମୋର ତ ଏ ଭଦ୍ରଙ୍କର ରୋଗ କଥା ଜାଣି ପୁଲସ ସେଠାରୁ ମୋତେ ବାହାରକରିଦେବାକୁ ତାଗିଦ କଲା । ମୁଁ ବା ଆଉ କୁଆଡ଼େ ଯିବି ? ବହୁତ କାକୁତି ମିନତି କଲାରୁ ଜଣେ ପୁରୁଣା ଗ୍ରାହକ ମତେ ଆଣି ଏ ଡାକ୍ତରଖାନାରେ ଭର୍ତ୍ତି କରାଇଦେଲା । ସେ ମଧ୍ୟ ଡାକ୍ତରଙ୍କୁ ପଚାରି ମୋର ରୋଗ ଭଲ ହେବାର କୌଣସି ଆଶା ନ ପାଇ ଆଉ ଥରେ ହେଲେ ସୁଦ୍ଧା ମୋତେ ଦେଖିବାକୁ ଆସିନାହିଁ । ଏଠିତ ପଇସା ଦରକାର । ବେହେରା, ମେହେନ୍ତରଙ୍କଠାରୁ ଡାକ୍ତରପର୍ଯ୍ୟନ୍ତ ସମସ୍ତେ ପଇସା ଚାହାନ୍ତି । ମୋ ଭଳି ଗରିବ ନିରାଶ୍ରୟଙ୍କୁ ପଚାରୁଛି କିଏ ? ବରଂ ସେମାନେ ପାଖକୁ ଆସିଲେ ଧେକ୍‌ଚେକ୍ କରନ୍ତି । ଡାକ୍ତରମାନେ ଏ ଖଟିଆ ପାଖକୁ ନ ଆସି ଦୁଆର ମୁହଁରୁ ନର୍ସକୁ କଅଣ ପଚାରିଦେଇ ସେ ପଟେ ବାହାରିଯାଆନ୍ତି । ଡାକ୍ତରୀ ପଢ଼ା ପିଲାମାନେ ବି ଏପଟକୁ ବେଶି ଯିବା ଆସିବା କରନ୍ତି ନାହିଁ ।"

ଏପରି କଥାବାର୍ତ୍ତା ହେବା ସମୟରେ, ବଡ଼ ଡାକ୍ତର ଓ ଡାକ୍ତରୀ ପିଲାମାନଙ୍କର ଆସିବା ସମୟ ହୋଇଗଲା । ଦର୍ଶକମାନଙ୍କର ସମୟ ସରିଗଲା । "ଆପଣମାନେ ପଦାକୁ ବାହାରି ଯାଆନ୍ତୁ" ବୋଲି ଚପରାଶିଟି ଆସି ପାଟିକରି କହିଲା ।

ଦାସେ ଆସି ବାହାରେ ଠିଆହେଲେ । ଅନେକ ସମୟ ଠିଆ ହେବା ପରେ ଜଣେ ଡାକ୍ତର ଓ ଗୁଡ଼ାଏ ଡାକ୍ତରୀ ପିଲା ସେ ଓ୍ୟାର୍ଡ଼ର ପିଣ୍ଡା ଉପରକୁ ଉଠିଲେ । ବଡ଼ଡାକ୍ତରଙ୍କର ଦୃଷ୍ଟି ପଣ୍ଡିତଙ୍କ ଉପରେ ପଡ଼ିଗଲା । ସେ ସେଟଜୀଙ୍କ ଘରକୁ ଯିବାଆସିବା କରନ୍ତି । ପଣ୍ଡିତଙ୍କୁ ଚିହ୍ନନ୍ତି । ପଣ୍ଡିତଙ୍କ ସଙ୍ଗେ ଆଗରୁ ମଧ୍ୟ

କଥାବାର୍ତ୍ତା ହୋଇଛନ୍ତି ଓ ଥରେଅଧେ ଭାଗ୍ୟ ଗଣନା ମଧ୍ୟ କରାଇଛନ୍ତି । ପଣ୍ଡିତଙ୍କୁ ସେଠଜୀଙ୍କ ଘରେ ସମସ୍ତେ ସମ୍ମାନ ଓ ଆଦର କରିବା ମଧ୍ୟ ସେ ଜାଣନ୍ତି । ସେ ପଣ୍ଡିତଙ୍କୁ ଦେଖି ତରତରରେ ନମସ୍କାରଟିଏ ହୋଇପଡ଼ ପଚାରିଲେ, "ଆପଣଙ୍କର କିଏ ଏଠି କିଏ ଅଛି ? ଆପଣ କାହିଁକି ଏଠାକୁ ଆସିଛନ୍ତି ?"

ପଣ୍ଡିତେ କହିଲେ, "ଏଠି ଗୋଟିଏ ନିରାଶ୍ରୟା ରୋଗିଣୀ ପଡ଼ିଛି । ତାର କେହି ନାହାନ୍ତି । ତାକୁ ଜବରଦସ୍ତି କେହି ଜଗନ୍ନାଥଧାମରୁ ଘେନିଆସିଥିଲା । ବର୍ତ୍ତମାନ ସେ ଏପରି ଅବସ୍ଥାରେ ଆସି ଏଠି ପଡ଼ିଛି । ମୁଁ ଗୋଟିଏ କୁଲି ଶ୍ରେଣୀୟ ଲୋକଠାରୁ ଖବର ପାଇ ଏହାକୁ ଦେଖିବାକୁ ଆସିଥିଲି । ଆପଣ ଏତେ ବଡ଼ ଡାକ୍ତର ! କେତେ କେତେ ବଡ଼ ରୋଗ ସବୁ ଭଲକରୁଛନ୍ତି । ଏ ନିରାଶ୍ରୟା ପ୍ରତି ଟିକିଏ ଦୃଷ୍ଟି ଦେଲେ ମୋର ବିଶ୍ୱାସ ଏ ନିଶ୍ଚୟ ଆରୋଗ୍ୟ ଲାଭ କରିବ । ରୋଗିଣୀର ଭାଗ୍ୟ ଭଲ– ମୋର ଆପଣଙ୍କ ସଙ୍ଗେ ଏପରି ଭାବରେ ଏଠି ଦେଖା ହୋଇଗଲା । ଜଗନ୍ନାଥ ଆପଣଙ୍କର ନିଶ୍ଚୟ ମଙ୍ଗଳ କରିବେ ।"

ଏହାପରେ ସତକୁସତ ରୋଗିଣୀର ଭାଗ୍ୟ ବଦଳିଲା । ଓ୍ୱାର୍ଡ଼ରେ ତା ପ୍ରତି ସମସ୍ତଙ୍କର ବ୍ୟବହାର ଏକାବେଳେକେ ଲେଉଟିଗଲା । ସେ ବଡ଼ଡାକ୍ତରଙ୍କ ସ୍ୱତନ୍ତ୍ର ରୋଗୀ ରୂପେ ଚିକିତ୍ସା ପାଇଲା । ବଡ଼ଡାକ୍ତର ଗଲାଅଇଲାବେଳେ ସବୁଦିନ ତା'ର ତତ୍ତ୍ୱ ନେଲେ । ଭଲ ଔଷଧ ଓ ଭଲ ଖାଦ୍ୟ ପାଇ ସେ ଦ୍ରୁତଗତିରେ ଆରୋଗ୍ୟ ହେବାକୁ ଲାଗିଲା । କିଛିଦିନ ପରେ ସେ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ଡାକ୍ତରଖାନା ଛାଡ଼ିବାର ଆଦେଶ ମଧ୍ୟ ମିଳିଲା । ପଣ୍ଡିତେ ଦିନକୁ ପ୍ରାୟ ଦୁଇଥର ଆସି ତାର କଥା ବୁଝିଯାଆନ୍ତି । ଓ୍ୱାର୍ଡ଼ ନର୍ସ ତାଙ୍କୁ ନମ୍ରଭାବରେ ନମସ୍କାର କରି ଖୁସିହୋଇ ଡାକ୍ତରଙ୍କ ଦେଇଥିବା ଆଦେଶ ତାଙ୍କୁ ଜଣାଇଦେଲା ।

ବର୍ତ୍ତମାନ ବିମଳା ଯିବ କୁଆଡ଼େ ? ସେ ମଉସା-ବାପାଙ୍କ ପିଛା ଧରିଲା । ସେ କହିଲା—"ମୋତେ ଆଉ ସେଠାକୁ ଠେଲି ଦିଅ ନାହିଁ । ତୁମେ ଯେଉଁଠି ଅଛ ମୋତେ ସେଠିକି ନେଇଯାଅ । ମତେ ନିଜ ଝିଅପରି ତୁମ ପାଖରେ ଆଶ୍ରା ଦିଅ । ତୁମେ ଯେପରି ଚଳିବାକୁ କହିବ ମୁଁ ସେହିପରି ଚଳିବି ।" ପଣ୍ଡିତେ ବି ମନେ ମନେ ସେଇକଥା ସ୍ଥିର କରିଥିଲେ କେବଳ ବିମଳାର ମନ ପରୀକ୍ଷା କରିବାକୁ ତାଆଡ଼ୁ ଆଗ ପ୍ରସ୍ତାବ ଆସିବାକୁ ଅପେକ୍ଷା କରୁଥିଲେ । ସେ ନିଜେ ନ କହିଲେ ତାକୁ ବା ଜବରଦସ୍ତି ନିଅନ୍ତେ କିପରି ?

ଘଟଣାଚକ୍ରରେ ସେଠଜୀଙ୍କ ଘରର ପିଲା ଓ ଅନ୍ୟମାନଙ୍କ ମନୋଭାବ ଦେଖି ସେଠଜୀଙ୍କ ଘର ମନକୁ ଛାଡ଼ିଦେଇ ସେ ସିଆଲଦା ପାଖ ବୈଠକଖାନା ରୋଡ଼ ଗଳିରେ ବସାଟିଏ ଠିକ୍‌କରି ବସା ବଦଳାଇ ସେଠାକୁ ଚାଲିଆସିଲେ । ସେଠାରେ ଦୁଇଟି କୋଠରୀ ସଙ୍ଗେ ରନ୍ଧାବଢ଼ା କରିବା ପାଇଁ ଗୋଟିଏ ବଡ଼ ବାରଣ୍ଡା ମଧ୍ୟ ଥିଲା । ବିମଳାର ପ୍ରସ୍ତାବ ଶୁଣିବା ସଙ୍ଗେ ସଙ୍ଗେ ତାର ଅନ୍ୟ କୌଣସି ବ୍ୟବସ୍ଥା କରିବା ପୂର୍ବରୁ ତାକୁ ନିଜ ସାଥିରେ ନୂଆ ବସାକୁ ନେଇଆସିବା ବିଶେଷ କିଛି ଅସୁବିଧା ହେଲାନାହିଁ ।

## ବାଆର

ଝଡ଼ ଆସେ । ଗଛଡ଼ାଳ ମଡ଼ ମଡ଼ କରି ଭାଙ୍ଗିଯିଏ । ମାଆ ଓ ଛୁଆଙ୍କ ସହିତ ପକ୍ଷୀର ବସାକୁ ଉଡ଼ାଇ ନେଇ ତଳେ କଚାଡ଼ିଏ । ସକାଳୁ ଅଣ୍ଟିରି ଚଢ଼େଇଟି ଥରି ଥରି ଗୋଟିଏ ଥୁଣ୍ଟା ଡାଳରେ ବସି ତଳକୁ ଚାହେଁ । ଦିନେ ଦୁଇଦିନ ଦୁଃଖ କରି ହୁଏତ ବସିରହେ । କିନ୍ତୁ ପୁଣି ମନର ଆଶାକୁ ଧରି ନୂଆ ସଂସାର ଗଢ଼ିବାକୁ ସେ ବାହାରିପଡ଼େ । ପ୍ରକୃତିର ଝଡ଼ ଶେଷ ହୁଏ । ମନର ଝଡ଼ କିନ୍ତୁ ଶେଷହୁଏ ନାହିଁ ।

ଶେଷ କି ହୁଏ ମନର ଝଡ଼
ବାହନ ତାର ଆଶା ଗରୁଡ଼
ଛାଡ଼ି ସେ ଆଶା ମନ କି ପାରେ ରହି,
ଭଙ୍ଗା ଦୁନିଆ ହୃଦୟ ଚିରି
ନୂଆ ଦୁନିଆ ଉଠଇ ଗଢ଼ି
ପୁଣି ମନ ଆଗେଇ ଚାଲେ ସ୍ମୃତି ଯାଏ ରହି ।

ଜୀବନର ସବୁ ଝଡ଼ଝଞ୍ଜା ସତ୍ତ୍ୱେ ଦାସଙ୍କର ମନ ଧାଇଁଲା ନୂଆ ଦୁନିଆ ଗଢିବାକୁ । ସେ ଭାବିଲେ, ଅସହାୟା ବାଳିକାଟି ଉପରେ ବାତ୍ସଲ୍ୟ ସ୍ନେହ ଢାଳି ସେ ତାଙ୍କର ଅତୃପ୍ତ ଆତ୍ମାକୁ ତୃପ୍ତ କରିପାରିବେ । ବାଳିକାଟି ଅନୁତପ୍ତ ଓ ତାଙ୍କ ପ୍ରତି ଭକ୍ତିରେ ଆକୃଷ୍ଟ—ତେଣୁ ତାଙ୍କ ଦେଖାଇବା ପଥରେ ସେ ଚାଲିବ । ସେ

ତାକୁ ବାଟକୁ ଆଣି ହୁଏତ କେଉଁ ସଦ୍‌ଭାବରେ ଦାନକରି ଅଭିଭାବକର ଦାୟିତ୍ୱ ମେଣ୍ଟାଇପାରିବେ ।

ମଣିଷ ଭାବେ ଗୋଟେ କଥା କିନ୍ତୁ ହୁଏ ଅନ୍ୟ କଥା । କଥାରେ ଅଛି, "ପ୍ରକୃତି ନୈବ ମୁଚ୍ୟତେ" । ଦିନ ଯେପରି ଗଡ଼ି ଚାଲିଲା, ବିମଳାର ମନୋବୃତ୍ତି ମଧ୍ୟ ପୂର୍ବାବସ୍ଥାକୁ ବଦଳିବାରେ ଲାଗିଲା । ସୁବାସିତ ତେଲ ସାବୁନ, ରଙ୍ଗୀନ ଚକ୍ ଚକ୍ ଲୁଗା, ସାଜସଜ୍ଜା ପାଇଁ ସୌଖୀନ ସାମଗ୍ରୀ ସବୁ ଯୋଗାଇବାକୁ ଦିନକୁ ଦିନ ଦାସଙ୍କୁ ବରାଦଦେଲା । କୌଣସିଥିରେ ତ୍ରୁଟି ହେଲେ ଫଁ ଫଁ ହୋଇ ମୁହଁ ଏଡ଼େ ବଡ଼ କରି ବସିରହିଲା ।

ସେଠଜୀଙ୍କ ଘର ଛାଡ଼ିବା ପରେ ବିମଳାର ସେବାରେ ବ୍ୟସ୍ତରହି ତାଙ୍କର ବ୍ୟବସାୟ ପ୍ରାୟ ବନ୍ଦହୋଇଆସିଥିଲା । ତାଙ୍କ ପାଖେ ଥିବା ସ୍ୱଳ୍ପ ସମ୍ବଳ ମଧ୍ୟ ସରିଆସିଲା । ତେଣୁ ସେ ସବୁବେଳେ ତା ବରାଦ ମୁତାବକ ଜିନିଷପତ୍ର ଯୋଗାଇବାକୁ ସକ୍ଷମ ହୋଇପାରିଲେନାହିଁ ।

ବିମଳା ଅବସ୍ଥାକୁ ଚାହିଁ ବ୍ୟବସ୍ଥା କରିବ କଅଣ, ଦିନକୁ ଦିନ ଖର୍ଚ୍ଚ ବଢ଼ାଇବାକୁ ଲାଗିଲା । ବାରନାରୀ ମାନଙ୍କର ତ ପୁରୁଷଠାରୁ ପଇସା ଆଦାୟ କରିବା ଅଭ୍ୟାସ, ପୁରୁଷର ସୁବିଧା ଅସୁବିଧା ସେ ବୁଝିବେ କାହିଁକି ? ପିଲାଦିନୁ ସେ ଯାହା ଦେଖିଛି, ମା ଠାରୁ ଯାହା ଶିଖିଛି, ତାହା ବଦଳିବ କିପରି ? ଅସୁବିଧାରେ ପଡ଼ି ସେ ସିନା ଦବିଯାଇଥିଲା, ସବୁଥିକି ରାଜିହୋଇ ଦାସଙ୍କ ସଙ୍ଗେ ଆସିଥିଲା, କିନ୍ତୁ ଦେହ ପୁରି ଭଲହୋଇଯିବାରୁ ଅଙ୍ଗାରକୁ ଧଳା କାଗଜରେ ଗୁଡ଼ାଇଥିଲେ ଯେପରି ଧଳା ଦିଶେ, କିନ୍ତୁ କାଗଜ ଓଦା ହୋଇଗଲେ ପୁଣି କଳା ରଙ୍ଗ ଆପେ ଆପେ ବାହାରିପଡ଼େ, ସେହିପରି ତା ଭିତରୁ ତାର ନିଜର ପ୍ରକୃତି ପୁଣି ଉଙ୍କିମାରିଲା ।

ବରାଦ ମୁତାବକ ଜିନିଷ ନ ପାଇଲେ ସେ ପ୍ରଥମରୁ ସିନା ଖାଲି ଗରି ଗରି ହେଉଥିଲା, କିନ୍ତୁ ପରେ ଦାସଙ୍କୁ ଯା···ଚ୍ଛ···ତା କରି ଗାଳିଗୁଲଜ ଦେବାରେ ମଧ୍ୟ ପଛେଇଲାନାହିଁ । ତାଙ୍କ ଯୋଗୁଁ ତାର ମାର ଦୁରବସ୍ଥା ଓ ନିଜ ଦୁରବସ୍ଥାର ନଜିର ଦେଇ କହିଲା—ସେ ତାର ମାର ପ୍ରେମକୁ ପଦାଘାତ କରି, ତାକୁ ନ ପଚାରି, ଦୁସ୍ଥ ଅବସ୍ଥାରେ ପକାଇଦେଇ ଏଣେ ଆସି କଲିକତାରେ ମଉଜ ମଜଲିସରେ କାଳ କଟେଇବାରୁ ତା ମା ତାକୁ ବିକି କରିବାକୁ ବାଧ୍ୟ ହୋଇଥିଲା । ତାର ଓ ତା ମାର ଦୁରବସ୍ଥା ପାଇଁ ଦାସେ ସମ୍ପୂର୍ଣ୍ଣ ଦାୟୀ ।"

ସେ ଏପରି କଡ଼ା କଡ଼ା କଥାରେ ନାନା ପ୍ରକାର ଭାବେ ତାଙ୍କୁ ଉତ୍ତେଜିବାକୁ ଲାଗିଲା ।

ବାପେ ବଡ଼ଲୋକଘରର ପିଲା । ସେ ସମସ୍ତଙ୍କୁ ଗାଳିମନ୍ଦ ଦିଅନ୍ତି, କିନ୍ତୁ କାହାଠାରୁ ସିଧା ଗାଳି କେବେ ଖାଇନାହାନ୍ତି, କି ଏପରି ପରିସ୍ଥିତିରେ ଚଳିବାରେ ମଧ୍ୟ ଆଦୌ ଅଭ୍ୟସ୍ତ ନୁହନ୍ତି । ସେ କଣ କରିବେ, ଟଙ୍କା କେଉଁଠାରୁ ଆଣିବେ ବା ବିମଳାକୁ କି ଉତ୍ତର ଦେବେ ଠିକ୍ କରି ନପାରି ବେଶି ସମୟ ଘରକୁ ନ ଆସି ବାହାରେ ରାସ୍ତାରେ ବୁଲି ଅଧିକାଂଶ ସମୟ କଟାଇବାକୁ ଲାଗିଲେ । ଏପରିକି ଥରେ ଥରେ ବିମଳା ପାଇଁ ଖାଦ୍ୟର ବ୍ୟବସ୍ଥା କରିଦେଇ, ଦୁଇଚାରି-ଦିନ କୁଳପଡ଼ାରେ ରହି କୁଳମାନଙ୍କ ସହିତ ନୂଆ ନୂଆ ଆରମ୍ଭ ହେଉଥିବା ଜଗନ୍ନାଥ ମେଳାରେ ସମୟ କଟାଇଦେଉଥିଲେ ।

ପରେ ଆସ୍ତେ ଆସ୍ତେ ସେ ପଡ଼ୋଶୀମାନଙ୍କଠାରୁ ଜାଣିପାରିଲେ ଯେ, ସେ ନଥିଲାବେଳେ ତାଙ୍କ ବନ୍ଧୁବାନ୍ଧବ କେହି ଜଣେଅଧେ ଯୁବକ ଆସି ବିମଳା ସଙ୍ଗେ ସେ ଘରେ ରାତି ଯାପନ କରି ଚାଲିଯାଉଛନ୍ତି । ବିମଳାର ଲୁଗାପଟା, ନୂଆ ଗହଣାପତ୍ର ଓ ସ୍ନୋ ପାଉଡ଼ରରୁ ଅନୁମାନ କରିନେଲେ ଯେ ବିମଳାର କେହି କେହି ପୁରୁଣା ଗ୍ରାହକ ପୁଣି ତା ସନ୍ଧାନ ପାଇ ତା ପାଖରେ ଆସି ଜୁଟିଗଲେଣି—କିମ୍ବା ସେ ନୂଆ ବନ୍ଧୁ ଯୋଗାଡ଼ କରିସାରିଲାଣି ।

କି ଶାନ୍ତିରୁ ଆଣି ଭଗବାନ ତାଙ୍କୁ ପୁଣି କି ମାନସିକ ଅଶାନ୍ତିରେ ପକାଇଲେ ? ତାଙ୍କର ସମସ୍ତ ପରିଶ୍ରମ ପଣ୍ଡ ହେଲା । ସେ ବିମଳାକୁ ଯେତେ ଉପଦେଶ ଦେଇଥିଲେ ଓ ତାର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ମନ ପରିବର୍ତ୍ତନ ପାଇଁ ଯେଉଁ ଯେଉଁ ଚେଷ୍ଟା ସବୁ କରିଥିଲେ—ସେ ସବୁ ତାଙ୍କର ବ୍ୟର୍ଥ ହେବାକୁ ଯାଉଛି । ଶେଷରେ ସେ ବିମଳାକୁ ଡାକି କୋମଳ କଣ୍ଠରେ ସବୁକଥା ବୁଝାଇବାକୁ ଚେଷ୍ଟା କଲେ । କିନ୍ତୁ ବିମଳାର ତ ଆୟୋଜନ ଅନ୍ୟଆଡ଼େ ଚାଲିଛି—ସେ ତାଙ୍କ କଥାକୁ ଖାତିର କରିବ ବା କାହିଁକି ? ସେ ଓଲଟି ରାଗିଯାଇ ତାଙ୍କ ଉପରେ ଗୋଟାକୁ ସାତଟା ହୋଇ ଗର୍ଜି ଉଠିଲା । ସେ ନୀରବରେ ଯାଇ ତାଙ୍କ କୋଠରୀରେ ବସିରହିଲେ ।

ଏହି ସମୟରେ ଜଣେ ଅପରିଚିତ ହୃଷ୍ଟପୁଷ୍ଟ, ଗୁଣ୍ଡାଶ୍ରେଣୀୟ ସବଳକାୟ ଯୁବକ ବିମଳାର କୋଠରୀ ଭିତରକୁ ପଶିଆସିଲା । ଥରକୁ ଥର ସେ ଘରର ଯାବତୀୟ ଜିନିଷପତ୍ର ନେଇ ଘର ଦୁଆର ରାସ୍ତା ଉପରେ ଠିଆହୋଇଥିବା

ଘୋଡ଼ାଗାଡ଼ିରେ ଲଦିବାକୁ ଲଗିଲ । ଜିନିଷପତ୍ର ଲଦା ହୋଇସାରିବାପରେ ବିମଳା କୃତଜ୍ଞତା ଜଣାଇବା ତ ଦୂରର କଥା, ପଦେ ହେଲେ କଥା ମଧ୍ୟ ନ କହି, ତାଙ୍କୁ ଭ୍ରୂକ୍ଷେପ ନ କରି ଦୁମ୍‌ଦୁମ୍ କରି ଚାଲିଯାଇ ସେ ଲୋକ ସଙ୍ଗରେ ଗାଡ଼ିରେ ବସିପଡ଼ିଲା । ଗାଡ଼ିଟି ସେ ଗଳିରୁ ବାହାରି ବଡ଼ ରାସ୍ତା ଆଡ଼େ ଯାଇ ଅଦୃଶ୍ୟ ହୋଇଗଲା ।

ଅପ୍ରତ୍ୟାଶିତ ବିପଦ ମଣିଷକୁ କିଛି ସମୟ ପାଇଁ କିଂକର୍ତ୍ତବ୍ୟବିମୂଢ଼ କରିପକାଏ । କାହାରି କାହାରି ସେ ଧକ୍‌କା ସମ୍ଭାଳିନେବାର ଶକ୍ତି ଥାଏ—ଆଉ କେହି କେହି ସେଥିରେ ପୂରି ଦବିଯାଆନ୍ତି ।

ଦିନେ ଦୁଇ ଦିନ ନିର୍ବାକ୍ ହୋଇ ଘରେ ପଡ଼ିରହିବା ପରେ ଦାସେ ସେ ମାନସିକ ଧକ୍‌କାରେ ଦବିଯାଇ ବସାଘରର ଭଡ଼ା ଛିଣ୍ଡାଇ, ସେ ଘରର ସମସ୍ତ ମାୟାମମତା ତୁଟାଇ କୁଲିପଡ଼ାକୁ ଚାଲିଆସିଲେ । ଆଗରୁ କୁହାଯାଇଛି, କୁଲି-ପଡ଼ାରେ ସଂକୀର୍ଣ୍ଣ ଘରମାନଙ୍କର ଦୁଇ କାନ୍ଥରେ ଥାକ ଥାକ ରେଳ ଡ଼ବାରେ ଥିବାପରି କାଠ ଖଟ ଥାଏ । ସେଥିରୁ ଗୋଟିକୁ ଦୁଇ ତିନିଜଣ କରି ଭଡ଼ା ନେଇଥାନ୍ତି ଓ ଭିନ୍ନ ଭିନ୍ନ ସମୟରେ ଡ଼ିଉଟି ସାରି ଆସି ପାଳି କରି ଜଣ ଜଣ ହୋଇ କିଛି ସମୟ ପାଇଁ ସେଠାରେ ବିଶ୍ରାମ କରନ୍ତି । ସେଇ ଖଟ ଦେହରୁ ପୁଟୁଳି ପୁଟୁଳି ହୋଇ ସେମାନଙ୍କର ଆସବାବପତ୍ରର ବୁଜୁଳା ଝୁଲୁଥାଏ । ଖରାଦିନେ ଭୀଷଣ ଗରମ । ଶୀତଦିନେ ମଧ୍ୟ କୁଡ଼ୁକାଞ୍ଜିଆ ଶୀତ । ବର୍ଷାଦିନେ ସେଇ ଘରଗୁଡ଼ିକ ଜୁଡ଼ୁବୁଡ଼ୁ ସନ୍ତସନ୍ତିଆ ହୋଇଉଠେ । ଏହିପରି ଘରମାନଙ୍କରେ ରହି, ଯକ୍ଷ୍ମା ମାଲେରିଆ ପ୍ରଭୃତି ରୋଗଧରି କୁଲିମାନେ ପ୍ରାୟ ଗାଁକୁ ଲେଉଟନ୍ତି, କିମ୍ବା ଗଙ୍ଗାକୂଳରେ ଚିର ଶୟନ ମଧ୍ୟ କରିଥାନ୍ତି । ସ୍ଥାନ ଯେତେ ଅସ୍ୱାସ୍ଥ୍ୟକର ହେଲେ ମଧ୍ୟ ସେ ସ୍ଥାନରେ ସ୍ନେହ ସହାନୁଭୂତି ପ୍ରଭୃତି ମନୁଷ୍ୟତାର ଗୁଣ ପୂରି ରହିଛି ।

ଦାସଙ୍କର ଦୟାଳୁ ଓ ମିଶାଣ ଗୁଣ ଯୋଗୁଁ ସେ କୁଲିମାନଙ୍କର ପ୍ରିୟ ହୋଇପଡ଼ିଥିଲେ । ଦାସଙ୍କର ମନ ପୋଡ଼ିଗଲାବେଳେ ସେ କୁଲିପଡ଼ାରୁହିଁ ସହାନୁଭୂତି ଓ ସାନ୍ତ୍ୱନା ଆଶାକରି ସେଠାକୁ ଆସିଲେ । ତାଙ୍କର ବା ଚାରି କଅଣ ? ବ୍ୟବସାୟ ନାହିଁ, ପଇସା ନାହିଁ । ସେ ବାଧହୋଇ ପାଳି କରି ଖାଲିଥିବା ଖଟମାନଙ୍କରେ ଆଶ୍ରୟ ନେଲେ । ବିଶେଷତଃ ଠିକାଦାର ଓ ଅନ୍ୟା ନ

ବଡ଼ଲୋକଙ୍କର ଦସ୍ତୁର ପାବ ହୋଇ ସେମାନଙ୍କର ଆଶ୍ରୟ ଲୋଡ଼ବାକୁ ତାଙ୍କ ମନ ହେଲା ନାହିଁ ।

ସେ ଜଣେ ମାମା ଲୋକ । କଏ କଣ ବେଆଡ଼ଆ କଥ କହିଦେଲେ ମଧ୍ୟ ତାଙ୍କୁ ବାଧେ । ବଶେଷରେ, ସେତେବେଳେ ତାଙ୍କର ମାନସିକ ଅବସ୍ଥା ଯାହା, ସେଥିରେ ତାଙ୍କ ଦେହରେ ବାଲ ପଡ଼ଲେ ମଧ୍ୟ ତାଙ୍କୁ ପଥର ପଡ଼ଲପର ଲଗିବାର କଥା । ସେ କୁଆଡ଼େ ନ ଯାଇ ସେଇ ପଡ଼ାରେ ବସିରହିଲେ । ପିଲାଦନରୁ ସେପର୍ଯ୍ୟନ୍ତ ଘଟିଥିବା ସମସ୍ତ ପୂର୍ବ ଘଟଣାମାନ ମନେପକାଇ ତାଙ୍କ ମନରେ ଖାଲ କୋହ ଆସିଲା ।

ଦନେ ୧୨-୧୪ ବର୍ଷର ଗୋଟିଏ ବାଳକ ନୂଆହୋଇ ତାର ମଉସା ସଙ୍ଗେ କୁଲ କାମ କରବାକୁ ଆସି ସେଠାରେ ରହିଲା । ସେ ପିଲାଟିର ବାପା ଓ ମା ସ୍ୱଚ୍ଛଳ ପରବାରର ଲୋକ ଥିଲେ, କନ୍ତୁ ବେମାର ୯ଙ୍କ ଜମିବାଡ଼ ନେଇ କନ୍ଦଳ ଓ ବହୁତଗୁଡ଼ଏ ପିଲପିଲ ଯୋଗୁଁ ତାଙ୍କର ଅବସ୍ଥା ଶୋଚନୀୟ ହେବାକୁ ବସିଲା । ତେଣୁ ସେମାନଙ୍କୁ ଆର୍ଥିକ ସାହାଯ୍ୟ କରବାକୁ ମଉସା ପିଲାଟିକୁ ସାଙ୍ଗରେ ନେଇ ଆସିଥିଲେ । ସେ କାମ କରବାକୁ ଯିବ କଅଣ—ରୋଜଗାର କର ପିତାମାତାଙ୍କୁ ସାହାଯ୍ୟ କରବ କଅଣ—ଦନ ଗଡ ଖାଲ ବାପା ବୋଉ ଗାଁ ଘର ତାର ମନେପଡ଼ ସେ ଖାଲ କାନ୍ଦ ବୋବାଳ ଛାଡ଼ବାକୁ ଲଗିଲା । ଯାହାକୁ ଦେଖିଲା ତାଙ୍କୁ କୁଣ୍ଢାଇଧର ବାହୁନା ପକାଇ କାନ୍ଦଲା ଏବଂ ତାକୁ ନେଇ ତା ଗାଁରେ ଛାଡ଼ଆସିବାକୁ ଅଳକଲା । ମଉସା ଓ ଅନ୍ୟାନ୍ୟ ଶୁଭକାଂକ୍ଷୀମାନେ ଯେ ଯେତେ ପ୍ରକାର ବୁଝାଇଲେ, ରଗିଲେ, ମାଡ଼ଗାଳ ଦେଲେ କୌଣସିଥିରେ ଆଉ ତାର ଅଳକରବା ବା କାନ୍ଦବା ଥମିଲା ନାହିଁ ।

ସେ ଦାସଙ୍କୁ ବ ଧର ବାହୁନା ପକାଇଲା । ଦାସଙ୍କ ମନ ତ ପ୍ରକୃତିସ୍ଥ ନ ଥିଲା—ସେ ତାକୁ ବୁଝାଇବେ କଅଣ, ପିଲାଟି ତାଙ୍କ ମନ ଅନ୍ୟଆଡ଼େ ଗୁଲଲା । ସେ ମନେ ମନେ ଭାବଲେ, ମୋର ପୁଅଟିଏ ଥିଲେ ମୋତେ ତ ଏହିପର ଖୋଜୁଥାଆନ୍ତା । ତାପରେ ଏତେ ଟିକଏ ପିଲା ତା ଗାଁକୁ ମନେପକାଇ ସେଠାକୁ ଯିବାକୁ ସେ ଏତେ ବ୍ୟସ୍ତ, କନ୍ତୁ ତାଙ୍କ ଗାଁ ତ ଦନେ ହେଲେ ତାଙ୍କର ମନେ ପଡ଼ ନାହିଁ ! ଏକଥା ଭାବ ଭାବ ମନ ତାଙ୍କର ଧାରହେଲା ।

ଏହି ସବୁ ଚନ୍ତା ତାଙ୍କ ମନକୁ ସମ୍ପୂର୍ଣ୍ଣ ଅଧିକାର କରନେଲା । ଭାବନାରେ ତାଙ୍କ ମୁଣ୍ଡ ପ୍ରାୟ ବଗିଡ଼ ଗଲା । ସେ କେତେବେଳେ ମନକୁ ମନ

'ଠୋ' 'ଠୋ' ହସିବାକୁ ଲାଗିଲେ ତ ଆଉ କେତେବେଳେ କାନ୍ଦିଲେ । କେତେ-ବେଳେ କେତେବେଳେ ବିକଟାଳ ଶବ୍ଦଟାଏ କରି ଶୂନ୍ୟକୁ ଡ଼େଗା ଡ଼େଗା ଆଖିରେ ଚାହିଁ ରହିଲେ । କୁଲିମାନଙ୍କ ଭିତରୁ କେହି କେହି ତାଙ୍କୁ ବୁଝାଇବାକୁ ଚେଷ୍ଟା କରିବାରୁ ହଠାତ୍ ଦିନେ ସେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ତାଙ୍କୁ କଲିକତାରେ ଆଉ କେହି ଦେଖିବାକୁ ପାଇଲେ ନାହିଁ । ଯେଝା କଥା ଯାହାକୁ ଧରାଧରି । କୁଲିର ମୁଣ୍ଡ, ବୋଝ ବୋହିଲେ ତାର ପେଟ ଖାଇବ । କାହାର ସୁବିଧା ଅଛି ଯେ ତାଙ୍କୁ ଖୋଜି ବାହାର କରିବ ? କାହିଁକି ବା କରିବ ? କିଛିଦିନ ପରେ ତାଙ୍କର କଲିକତାରେ ଥିବା ଜଣାଶୁଣା ଲୋକେ ତାଙ୍କୁ ପ୍ରାୟ ମନରୁ ପୋଛିପକାଇଲେ । ଗାଁଲୋକେ ତ ଆଗରୁ ତାଙ୍କୁ ଭୁଲିଥିଲେ । ବିମଳା ତ ତାଙ୍କର ସମସ୍ତ ସ୍ନେହ ଭୁଲି ପୁଣି ଅବାଟକୁ ଚାଲିଗଲା । କଲିକତାର କୁଲି ମଜୁରିଆ ବା ତାଙ୍କୁ ଭୁଲି ନ ଯାଆନ୍ତେ କାହିଁକି ?

ତାଙ୍କର ପରମବନ୍ଧୁ ସେଠ୍‌ଜୀ ଥିଲେ ଅବା ତାଙ୍କୁ ନ ଭୁଲି ଖୋଜାଖୋଜି କରିଥାଆନ୍ତେ ସେ ବି ତ ତାଙ୍କୁ ଛାଡ଼ି ଆରପୁରକୁ ଚାଲିଗଲେ । ତାଙ୍କ ପିଲାପିଲି ଯେଉଁ ବ୍ୟବହାର କଲେ ସେଥିରେ କିଏ କାହିଁକି ଆଶା କରିବ ଯେ ସେମାନେ ଦାସଙ୍କର ଖୋଜଖବର ନେବେ ? ବିରାଟ ପୃଥିବୀ ପଡ଼ିଛି । ତା ଭିତରେ କୁଟା ଗଦାରେ ଛୁଞ୍ଚି ଗୋଟାଏ ଲୁଚିଗଲା ପରି ମଣିଷଟାଏ ଲୁଚିଯିବା ବା କି ଆଶ୍ଚର୍ଯ୍ୟ-ଜନକ କଥା !

## ତେର

କାଳର କୁଟିଳ ଗତି । ଏକ କାଳରେ ଯେଉଁ ସ୍ଥାନ ସଭ୍ୟତାର ଚରମ ସୀମାରେ ପହଞ୍ଚିଥାଏ, ସେଇ ସ୍ଥାନର ସଭ୍ୟତା ପୁଣି କାଳର କବଳରେ ଲୀନ-ହୋଇ ସେ ସ୍ଥାନ ବର୍ବରମାନଙ୍କର କ୍ରୀଡ଼ାସ୍ଥଳୀ ହୁଏ । ମିଶର, ବାବିଲୋନ, ପାରସ୍ୟ, ଗ୍ରୀସ, ଇଟାଲି ପ୍ରଭୃତିରେ ଆଉ ସେ କାଳର ସଭ୍ୟତାର ଚିହ୍ନବର୍ଣ୍ଣ ସୁଧା ନାହିଁ ।

ପୁରୀ ଜିଲ୍ଲାର ରହଚରି ନଈ ଏବେ ଗୋଟିଏ ଯୋଡ଼ । ତାହାର ଭିତରେ ଭିତରେ କେନାଲ ଯାଇ ସେ ପୋତି ହୋଇ ଡାଳୁଅ ବିଲରେ ପରିଣତ ହେଲାଣି ।

ଭାରତୀୟ ଐତିହାସିକ ଗବେଷଣା ପତ୍ରିକାରୁ ଜଣାଯାଏ ଯେ ରତ୍ନଚିରାର ଦୁଇ କୂଳେ କଳିଙ୍ଗର ସଭ୍ୟତା ପକ୍ଷ ବିସ୍ତାର କରିଥିଲା । ଯୁଗ ଯୁଗ ଧରି ବହୁତ ମହା ମନୀଷୀ ଏହାର କୂଳରେ ଜନ୍ମ ଗ୍ରହଣ କରିଛନ୍ତି । କଳିଙ୍ଗେଇ ଠାକୁରାଣୀ ଏବେ ବି ରତ୍ନଚୀରା ନଦୀ କୂଳରେ ଅଛନ୍ତି । କଳିଙ୍ଗର ରାଜଧାନୀ କଳିଙ୍ଗା ଏବେ କୋରଙ୍ଗା ଗ୍ରାମ ନାମରେ ପଡ଼ିରହିଛି ।

ରତ୍ନଚିରା ନଦୀଟିକୁ ଦେଖିଲେ ଜଣାଯାଏ, ଏହା କେଉଁ ନଦୀର ଶାଖାନଦୀ ବା ଉପନଦୀ ନୁହେଁ, କିମ୍ବା କେଉଁ ପାହାଡ଼ରୁ ମଧ୍ୟ ତାର ଉତ୍ପତ୍ତି ହୋଇନାହିଁ । ସେ ହଠାତ୍ ପଡ଼ିଆରୁ ବାହାରି ପଡ଼ିଲା ପରି ବାହାରିପଡ଼ିଛି ।

ଲୋକକଥା ଅନୁସାରେ ରାମଚନ୍ଦ୍ର ବନବାସ ସମୟରେ ରତ୍ନମୁନି ଋଷି ସ୍ୱଚ୍ଛସଲିଳା ରତ୍ନଚିରା ନଦୀର ସୃଷ୍ଟି କରିଥିଲେ । ତା' ବିଷୟରେ ରାଧାନାଥ ରାୟଙ୍କ ପରି ବଡ଼ ବଡ଼ କବିମାନେ "ସୌଗନ୍ଧିତ ଗନ୍ଧେ ଗୃରୁ ରତ୍ନଚିରା" ପ୍ରଭୃତି କବିସୁଲଭ ଉପାଦେୟ ବିଶେଷଣ ସବୁ ତାର ପଛରେ ଯୋଡ଼ି ତାର ମହନୀୟତା ପ୍ରକାଶ କରିଯାଇଛନ୍ତି । ଫୁଲଅଳସାରେ ସତ୍ୟବାଦୀ ଗ୍ରାମ, ସେଥିରେ ସାକ୍ଷୀଗୋପାଳ ମନ୍ଦିର, ତାର ଅନତି ଦୂରରେ ରତ୍ନଚିରା ନଦୀ । ପରବର୍ତ୍ତୀ କାଳରେ ଓଡ଼ିଶାର କେହି କେହି କବି ରତ୍ନଚିରା ନଦୀକୁ ଯମୁନା ସଙ୍ଗେ ତୁଳନା କରି, ସାକ୍ଷୀଗୋପାଳ ମନ୍ଦିରର ସେବକ ସାହୁର ଝିଅଟିକୁ ରାଧାବୋଲି ଦର୍ଶାଇ, ବକୁଳବନକୁ ଗୁପ୍ତବୃନ୍ଦାବନ ନାମ ଦେଇ, ସେଥିରେ ରାଧାକୃଷ୍ଣଙ୍କର ଲୀଳା ବର୍ଣ୍ଣନା କରି କାବ୍ୟମାନ ଲେଖିଯାଇଛନ୍ତି ।

ପ୍ରଥମରୁ କୁହାଯାଇଛି ଯେ ରତ୍ନଚିରା ଆଉ ପୂର୍ବପରି ନାହିଁ । ସେ ଏବେ ବିଗଳିତଦଳପୂର୍ଣ୍ଣ ମଶକ ଉତ୍ପାଦନୀ ଯୋଡ଼ି । ରାମଚନ୍ଦ୍ରଙ୍କ ମୁନିରୁ ତାର ଉତ୍ପତ୍ତି ବିଷୟରେ ଗୋଟିଏ ସୁନ୍ଦର କୌତୁକିଆ କଥନ ଅଛି ।

ଶ୍ରୀରାମଚନ୍ଦ୍ରପୁର ଶାସନର ବାଡ଼ପଟେ ରତ୍ନଚିରାର କୂଳରେ ଗୋଟିଏ ପୁରୁଣା ଓ ବିରାଟ ବେଲ ଗଛ ଥାଏ । ପୂର୍ବେ ସତ୍ୟବାଦୀ ସ୍କୁଲରେ ପାଠପଢ଼ିସାରି ପିଲାଏ ଗାଁକୁ ଫେରିଲାବେଳେ ବରକୋଳି, ବେଲ, କଇଁଥ ପ୍ରଭୃତିଗଛକୁ ଠେକା ମାରି ଫଳ ଝଡ଼ାଇ ନେଇଯାଆନ୍ତି । କିନ୍ତୁ କେହି ସେ ପୁରୁଣା ବେଲ ଗଛକୁ ଠେକା ମାରନ୍ତି ନାହିଁ କି ବେଲ ଝଡ଼ାନ୍ତି ନାହିଁ । ସେ ଗଛମୂଳେ ମୁଣ୍ଡିଆ ମାରନ୍ତି, ଝଡ଼ା ପାଚିଲା ବେଲ ପାଇଲେ ଅବଶ୍ୟ ଖୁସି ହୋଇ ନେଇଯାଆନ୍ତି । ପିଲାଙ୍କର ଧାରଣା, ସେ ଋଷିଙ୍କର ଗଛ ।

ଶୁଣାଯାଉଛି, ରାମ ଲକ୍ଷ୍ମଣ ସୀତା ବନବାସ କରି ଦଣ୍ଡକାରଣ୍ୟ ଆଡ଼କୁ ଯାତ୍ରା କଲାବେଳେ ସେଇ ସ୍ଥାନରେ କେଉଁଠି, ସୀତାଙ୍କର ସେ ବେଲ ଖାଇବାକୁ ଇଚ୍ଛା ହେଲା । ଲକ୍ଷ୍ମଣ ଆଗଭର ହୋଇ ବେଲ ତୋଳିବାକୁ ବେଲ ଗଛରେ ଚଢ଼ିଲେ ଓ ପାଚିଲା ପାଚିଲା ବେଲ ତୋଳି ତଳକୁ ଫୋପାଡ଼ିଲେ । ରାମ ବୋଧ-ହୁଏ ଅଣ୍ଟି ଦେଖାଇ ସେଗୁଡ଼ିକୁ ଧରିନେଉଥିଲେ, ତା ନହେଲେ ସେ ସୁସ୍ୱାଦୁ ବେଲର ଗୋଟିପା ଯେପରି ପଡ଼ିଲା ତାହା ତଳେ ପଡ଼ି ମାଟିରେ ମିଶି ମେଞ୍ଚାଏ ହୋଇଯାଇଥାଆନ୍ତା । ବେଲ ଭଙ୍ଗା ହେଲା । ସେମାନେ ସମସ୍ତେ ଖାଇଲେ । ପାଟି ଅଠା ଅଠା ହୋଇଗଲା । ସୀତାଙ୍କୁ ବି ଶୋଷକଲା । ଭାଇ ଦୁହିଁଙ୍କର ଦାଢ଼ି ଓ ଜଟରେ ହାତ ଲାଗିଯିବା ପୂର୍ବରୁ ଅଠାହାତ ବି ଧୋଇବା ଦରକାର ହେଲା । ଧୁଆଧୋଇ ହେବାକୁ ନଦୀଟିର ସନ୍ଧାନ ପାଇଁ ଲକ୍ଷ୍ମଣ ପୁଣି ଗଛ ଉପରେ ଉଠିଲେ, କିନ୍ତୁ ପାଖ ଆଖରେ କେଉଁଠାରେ ନଦୀଟିଏ ଦେଖିଲେ ନାହିଁ । ଗଛରୁ ଓହ୍ଲାଇ ସୀତାଙ୍କ ପାଇଁ ପିଇବାପାଣି ଆଣିବାକୁ ଯାଇ ଆଖପାଖର କୂଅ, ଖାତ, ପୋଖରୀ ସବୁ ପରୀକ୍ଷା କଲେ, କିନ୍ତୁ ସମୁଦ୍ର ପାଖ ଅଞ୍ଚଳ ହୋଇଥିବାରୁ ସେ ସବୁର ପାଣି ଛଡ଼ାମୂତ ପରି ଖାରିଆ । ତେଣୁ ଲକ୍ଷ୍ମଣ ଓ ସୀତା ଯୋଡ଼ହସ୍ତ ହୋଇ ରାମଚନ୍ଦ୍ରଙ୍କୁ ସେ ସଙ୍କଟରୁ ଉଦ୍ଧାର କରିବାକୁ ପ୍ରାର୍ଥନା କରିଥିଲେ । ରାମଚନ୍ଦ୍ର ତାଙ୍କ ରତ୍ନ ମୁଦିଟିରେ ମାଟିକୁ ଦୁଇଭାଗ କରି ଚିରିଦେବାରୁ ସେଠି ସ୍ୱଚ୍ଛ ସୁମିଷ୍ଟ ଉଦକଧାରୀ ନଦୀଟିଏ କୁଳୁକୁଳୁ ହୋଇ ବୋହିଗଲା । ସେ ନଦୀର ନାମ ହେଲା ରତ୍ନଚିରା । ସୀତାଙ୍କ ଶୋଷ ମଲା ଓ ସମସ୍ତଙ୍କ ହାତ ମୁହଁ ମଧ୍ୟ ଧୁଆ ହେଲା । ସେଥିରେ ଗାଧୁଆପାଧୁଆଟାଏ ମଧ୍ୟ ହୋଇଥିବ । ସେ ବେଲଗଛ ଗୁଳଣ ବର୍ଷ ତଳ ପର୍ଯ୍ୟନ୍ତ ଥିଲା, କିନ୍ତୁ ଏବେ ବେଶି ଅଧର୍ମ ବଢ଼ିଯିବାରୁ କୁଆଡ଼େ ଉଭାଇଗଲାଣି ଓ ସେଇ କାରଣରୁ ରତ୍ନଚୀରା ବି ମଧ୍ୟ ଅନ୍ତର୍ଦ୍ଧାନ ହେବାକୁ ବସିଲାଣି ।

ଐତିହାସିକ ଗବେଷଣା ଅତ୍ୟନ୍ତ କଠିନ ବ୍ୟାପାର । ବହୁକାଳ ତଳର ଅନ୍ଧାର ଯୁଗର ଘଟଣାବଳୀକୁ ସଂଗ୍ରହ କରି ବିଂଶଶତାବ୍ଦୀର ବିଜୁଳି ଆଲୁଅରେ ପରୀକ୍ଷା କରି ଦେଖିବା ଯାହା, କୁଟାଗଦା ଭିତରୁ ଛୁଞ୍ଚିଟିଏ ସଂଗ୍ରହ କରି ଚରିଜାମା ସିଲାଇ କରିବାର ଯୋଗାଡ଼ କରିବା ସେହିପରି । ପୃଥିବୀ ବକ୍ଷରେ କେତେ ସଭ୍ୟତା ଉଠିଛି ପଡ଼ିଛି । ସେଥିରୁ କେତେକ ଆଦିମ ସଭ୍ୟତା ହୁଏତ ଏବର ସଭ୍ୟତାଠାରୁ ଆହୁରି ଉତ୍କୃଷ୍ଟ ଥିଲା । ସେତେବେଳେ ହୁଏତ ବିଜୁଳିବତୀଠାରୁ ଆହୁରି ଉଜ୍ଜ୍ୱଳମୟ ଆଲୋକ ଥିଲା । ଆଧୁନିକ ବିମାନଠାରୁ ପୁଷ୍ପକ ବିମାନ ଓ

ନାରଦଙ୍କ ଚିଙ୍କି ବିମାନ ପ୍ରଭୃତି ହୁଏତ ଉତ୍କୃଷ୍ଟତର ଥିଲା । ବର୍ତ୍ତମାନ ଯୁଗର ଆଟମ୍‌ବୋମା ଓ ହାଇଡ୍ରୋଜେନ ବୋମାଠାରୁ ବଳି ମାରାତ୍ମକ ଅସ୍ତ୍ରମାନ ଉଦ୍ଭାବିତ ହୋଇ ହୁଏତ ସେ ସଭ୍ୟତାକୁ ସମ୍ପୂର୍ଣ୍ଣ ନିଶ୍ଚିହ୍ନ କରିଦେଇଛି । କିନ୍ତୁ ସେ ସବୁର ଇତିହାସ କାଳର-ମସୀରେ ମଳିନ ହୋଇ ବହୁ ଯୁଗର ଅନ୍ଧାର ଭିତରେ ଲୁଚିଯାଇଛି । ସେଗୁଡ଼ିକ ଶୁଣି ବିଶ୍ୱାସ କରିବା ଆମ୍ଭମାନଙ୍କ ପକ୍ଷରେ ଅସମ୍ଭବ ହୋଇଉଠିଛି ।

ଟାଇଗ୍ରିସ-ଇଉଫ୍ରେଟିସ ଓ ନୀଳ ନଦୀ କୂଳ ସଭ୍ୟତା ପରି ଋଷିକୁଲ୍ୟା କୂଳ ସଭ୍ୟତା ଦିନେ ହୁଏତ ଚରମ ସୀମାରେ ପହଞ୍ଚିଥିଲା । ସତ୍ୟବାଦୀ ମନ୍ଦିର ପଛପଟରେ ଥିବା ଖାଲଟିରୁ ଏବେ କେତେବର୍ଷ ତଳେ ସତ୍ୟବାଦୀ ସ୍କୁଲର କେତେକ ପିଲା ଗ୍ରୀଷ୍ମକାଳରେ ସେଥିର ଗାତଟିଏ ଖୋଳି ପାଣି ଜମାଇ ମାଛ ଧରୁଥିଲେ । ହଠାତ୍ ଜଣକର ଗୋଡ଼ରେ ଗୋଟିଏ ଟାଣ କଣିଆ ପଦାର୍ଥ ବାଜିଲା । ତାକୁ ଖୋଳି ବାହାର କରିବାର ଉଦ୍ୟମ କରି ପିଲାମାନେ ଖଣ୍ଡିଏ ଫାଟିକିଆ ଇଟା ତା ଭିତରୁ ବାହାରକଲେ । ତାକୁ ପରିଷ୍କାର କରି ସେଇପରି ଫୁଟେ ଚଉଡ଼ା ଓ ଫୁଟେ ଲମ୍ବ ଇଟାରେ ଗଢ଼ା କ୍ଷୁଦ୍ର କୂଅଟିର ସନ୍ଧାନ ପାଇ ସେ କୂଅଟିକୁ ଘେରାଉ କରି ରଖିଛନ୍ତି । ପରେ ସୁବିଧା ହେଲେ ହୁଏତ ପ୍ରତ୍ନତତ୍ତ୍ୱ ବିଭାଗ ସେଥିରୁ ଇତିହାସ ଖୋଜି ବାହାର କରିବା ପାଇଁ ଯାହାହାର ତାର ଗବେଷଣା କରାଇବେ । ସେଇ ଇଟା ଖଣ୍ଡିକ ବୁଦ୍ଧଦେବ ସିଦ୍ଧି ଲାଭ କରିଥିବା ବୋଧିଦ୍ରୁମ ଥିବା ବୌଦ୍ଧଗୟା ମନ୍ଦିର ଗାତର ଇଟା ସଙ୍ଗେ ପ୍ରାୟ ସମାନ । ସେଥିରୁ ଅନୁମିତ ହୁଏ, କଳିଙ୍ଗ ଯୁଦ୍ଧ ପରେ କଳିଙ୍ଗ ସଭ୍ୟତା ସଙ୍ଗେ ସଙ୍ଗେ ବୌଦ୍ଧ ସଭ୍ୟତା ହୁଏତ ଋଷିକୁଲ୍ୟା କୂଳରେ ବିସ୍ତାର ଲାଭ କରିଥିଲା ।

ପୂର୍ବବର୍ଣ୍ଣିତ ବକୁଳବନର ସେ ପତିତପାବନ ମୂର୍ତ୍ତି ବି ସେଇ କାଳର ହୋଇପାରନ୍ତି । ସେତେବେଳେ ଲୋକମାନେ କିପରି ଥିଲେ ଓ କିପରି ଭାବରେ କାଳଯାପନ କରୁଥିଲେ ଓ ବର୍ତ୍ତମାନ ସେଠାରେ ଥିବା ଶାସନ, ସେବାୟତ ଓ ଅନ୍ୟାନ୍ୟ ଗ୍ରାମର ଲୋକମାନଙ୍କ ଚାଲିଚଳନଠାରୁ ତାହା କେତେ ପୃଥକ୍ ଥିଲା, ତାହା ହୁଏତ ଭବିଷ୍ୟତ ଗବେଷକମାନେ ଗତ କେତେ ଯୁଗର ସେଠାର ଲୋକଙ୍କ ଚାଲିଚଳନ ପ୍ରଭୃତି ବିଷୟ ଅବଗତ ହେଲେ ସେ ସବୁକୁ ତୁଳନା କରି ଦେଖିପାରିବେ ।

କଳଙ୍ଗ ଯୁଦ୍ଧ ସମୟର ଓଡ଼ିଶା, ବୌଦ୍ଧଯୁଗର ଓଡ଼ିଶା, ବିଭିନ୍ନ ସ୍ୱାଧୀନ ନରପତି ଯୁଗର ଓଡ଼ିଶା, ମଣିମା ଯୁଗର ଓଡ଼ିଶା, ପରାଧୀନ ଯୁଗର ଓଡ଼ିଶା ଓ ଆଧୁନିକ ଓଡ଼ିଶାର ଲୋକଙ୍କ ଚାଲିଚଳନ ପ୍ରତ୍ୟେକଠାରୁ ଅଲଗା ଅଲଗା । ମନ୍ଦିରଗାତ୍ରର କାମଶାସ୍ତ୍ରୀୟ ଖୋଦନଗୁଡ଼ିକୁ କେଉଁ ଯୁଗରେ କପରି ଭାବରେ ଗ୍ରହଣ କରାଯାଉଛି । କେବେ ତାହାକୁ ଅତ୍ୟନ୍ତ ଅଶ୍ଳୀଳ ଓ ରୁଚିହୀନ କଳାର ପ୍ରତୀକ ବୋଲି ପ୍ରତ୍ୟାଖାନ କଲାବେଳେ, ପୁଣି କେଉଁ ଯୁଗରେ ତାକୁ ଉତ୍କୃଷ୍ଟ କଳା ବୋଲି ଆଦର କରାଯାଉଛି ।

ସେଇପରି ଆଧୁନିକ ଯୁଗରେ ବିଭିନ୍ନ ବେଶ ପୋଷାକ ବଦଳି ଚାଲିଛି । ସ୍ୱାଧୀନତା ପୂର୍ବରୁ ରେଭେନ୍‌ସା କଲେଜ ବୋର୍ଡ଼ିଂରେ ଭଲ ଶାନ୍ତିପୁରୀ ଧୋତିକୁ ଗୋଡ଼ ତଳେ ଘୋଷାରି, କାନପୁରୀ ଚପଲକୁ ଆଗକୁ ଫିଙ୍ଗି ଫିଙ୍ଗି ଚାଲିବାଟା ପିଲାଙ୍କର ଆଭିଜାତ୍ୟ ଥିଲା । ତାହା ସ୍ୱାଧୀନତା ପରେ ସୁଟ୍ ଓ ଟାଇରେ ପରିଣତ ହେଲା । ସେଥିରୁ ନଳୀ ପେଣ୍ଟ ଓ ଚୂଡ଼ିଦାର ଯୋଡ଼ାକୁ ବଦଳିଲା । ଏବେ ଆସି ବେଲ୍‌ବଟମ୍, ଲମ୍ବାକଲି ଓ ବାବୁରିବାଳରେ ପହଞ୍ଚିଛି । ପୁଣି କେଉଁଠି ପହଞ୍ଚିବ ତା ଭବିଷ୍ୟତ ବଂଶଧରମାନେ କହିବେ । କାହାର ସେଥିରେ କିଛି କହିବାର ନାହିଁ —ସେ ଯୁଗର ଧର୍ମ । ପୂର୍ବ ଓ ପର ଯୁଗର ଗବେଷଣା ଆମ ଲେଖାର ପରିସରଭୁକ୍ତ ନୁହେଁ । 'ମଣିମା' ଯୁଗର କଥା କଥାହିଁ ଆମର ଆଲୋଚ୍ୟ ବିଷୟ ।

## ଚଉଦ

ସାକ୍ଷୀଗୋପାଳ ମନ୍ଦିର ଗଢ଼ା ହେଲା ପରେ ସତ୍ୟବାଦୀର ରାଜାଙ୍କ ଚେଷ୍ଟାରେ ରଣପୁରର ଭକ୍ତ-ରାଜାଙ୍କ ଦାନରେ ଶ୍ରୀ ରାଧାଙ୍କର ପିତଳ ମୂର୍ତ୍ତି ଗଢ଼ାଗଲା । ରଣପୁରରାଜା ରାଧାମୂର୍ତ୍ତି ଗଢ଼ା ହେବା ପାଇଁ ତେରହଜାର ଟଙ୍କାଭିତରେ ସ୍ୱର୍ଣ୍ଣ ମହୁଡ଼ ଓ ନଅ ଶହ ବିଶା ପିତଳ ଦେଇଥିଲେ । ୧୮୬୨ରେ ମୂର୍ତ୍ତି ଗଢ଼ା ସରି ପ୍ରତିଷ୍ଠା ହେଲା । ରାଧାଙ୍କର ମୁଖମଣ୍ଡଳ ଗଢ଼ାଗଲାବେଳେ ପିତଳ ସଙ୍ଗେ ବହୁତ ସୁନା ମିଶିଥିବାରୁ ମୁହଁଟି ବଡ଼ ଚକ୍ ଚକ୍ ଦିଶେ । ଓଡ଼ିଆ କାରିଗରଙ୍କର ହାତଗଢ଼ା ହୋଇଥିବାରୁ ଏ ମୂର୍ତ୍ତିଟି ସମ୍ପୂର୍ଣ୍ଣ ଓଡ଼ିଆ ପ୍ରତିମା । ସେତେବେଳେ ବୈଷ୍ଣବମାନେ ଭାରତର ସବୁଆଡ଼େ ଶ୍ରୀ କୃଷ୍ଣଙ୍କ ମୂର୍ତ୍ତି ପାଖରେ

ଶ୍ରୀ ରାଧାଙ୍କର ମୂର୍ତ୍ତି ସ୍ଥାପନ କରୁଥିଲେ । ସାକ୍ଷୀଗୋପାଳଙ୍କ ମନ୍ଦିରରେ ଶ୍ରୀକୃଷ୍ଣଙ୍କ ବାମପଟକୁ ଶ୍ରୀ ରାଧାଙ୍କ ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି ।

ରାଧାମୂର୍ତ୍ତି ପ୍ରତିଷ୍ଠା ସମ୍ବନ୍ଧରେ ବହୁ କମ୍ବଦନ୍ତୀ ଗଢ଼ି ଉଠିଲା । ସେଇ କମ୍ବଦନ୍ତୀରେ ମନ୍ଦିର ସଂଲଗ୍ନ ସେବକସାହିଟିର ମହତ୍ତ୍ୱ ବି ପ୍ରଚାର ହୋଇଗଲା । ସେଇ ଗାଁର ଲକ୍ଷ୍ମୀ ନାମ୍ନୀ ଦ୍ୱିଜକନ୍ୟାଙ୍କ ପ୍ରାଣ କେଉଁଠି ଶ୍ରୀ ରାଧାଙ୍କ ମୂର୍ତ୍ତିରେ, ସେ ମୂର୍ତ୍ତି ପ୍ରତିଷ୍ଠା ବେଳେ, ଲୀନହୋଇଗଲା ।

ସେ ସେବକସାହିଟିକୁ ଦେଖିଲେ ସ୍ୱତଃ ମନରେ ବହୁପ୍ରକାର ପ୍ରଶ୍ନ ଉଠେ । ଯେଉଁ କାଳରେ ଗଜପତିମାନେ ପୁରୀର ବଡ଼ଦାଣ୍ଡ ତିଆରକଲେ, ବ୍ରାହ୍ମଣଶାସନମାନ ବସାଇ ବଡ଼ ବଡ଼ ଓସାରିଆ ରାସ୍ତାମାନ ପ୍ରସ୍ତୁତକଲେ, ସେତେବେଳେ ସତ୍ୟବାଦୀ ରାଜା ସେବକସାହିଟିର ଦାଣ୍ଡଟି କାହିଁକି ଏତେ ଅଣଓସାରିଆ କଲେ ? ମନ୍ଦିର, ରଥଚକ୍ର—ସବୁ ବିଷୟରେ ଇତିହାସ ଓ କମ୍ବଦନ୍ତୀ ମିଳୁଛି; କିନ୍ତୁ ସୁଆରସାହିର ଇତିହାସ ଯେତେ ଖୋଜିଲେ ମଧ୍ୟ କିଛି ମିଳୁନାହିଁ ।

ସେ ରାସ୍ତା ଏପରି ସଂକୀର୍ଣ୍ଣ ଯେ ଗୋଟେ ପଟୁ ଗୋଟେ ରିକ୍ସା କି ଶଗଡ଼ ପଶିଲେ ଅନ୍ୟପଟୁ ଆଉ କୌଣସି ଯାନ ନ ଆସି ପାରି ଅଟକି ରହେ । ଗୋଟିଏ ଘରେ ନିଆଁ ଲଗିଲେ ରହୁଁ ରହୁଁ ଦୁଇପଟର ଚାଳ ହୁତୁହୁତୁ ହୋଇ ଜଳିଉଠେ । ଜଣକ ଘରେ ସଂକ୍ରାମକ ରୋଗ ହେଲେ ଗାଁର ଚାରିଆଡ଼େ ବ୍ୟାପିଯିବାକୁ ଅତି ସହଜ ହୁଏ । ଠିକ୍ ସେହିପରି ଗାଁଟିଯାକ ଜଳଯାଏ ।

ଏ ସବୁ ତ ଗଲା ରାସ୍ତାର ଅପକାରିତା ବିଷୟରେ କୁହାଗଲା । ଶ୍ରେଷ୍ଠ ଶ୍ରେଷ୍ଠ ଯେଉଁସବୁ ରାସ୍ତାଗୁଡ଼ିକ ଅଛି ତାର ଉପକାରିତା ଅଛି । ବାହାରର ଚୋର ସେ ଗାଆଁରେ ପଶିଲେ କୁଆଡ଼େ ଦଉଡ଼ି ପଳାଇ ଯାଇ ପାରିବ ନାହିଁ—ନିଶ୍ଚୟ ସେ ଧରାପଡ଼ିବ । ବିଶେଷରେ ଗ୍ରାମବାସୀ ସେବାୟତମାନେ ସକାଳୁ ରାତି ଅଧ ଯାଏ ମନ୍ଦିର କାର୍ଯ୍ୟରେ ବ୍ୟସ୍ତଥିଲାବେଳେ ଘରଗୁଡ଼ିକ ଲାଗି ଲାଗି ଥିବାରୁ ଚୋର, ଡକାୟତ ଓ ଅସାମାଜିକ ଲୋକଙ୍କର ଭୟ କମ୍ ।

ଭାବଆଦାନପ୍ରଦାନ ସଙ୍ଗେ ସଙ୍ଗେ ସମୟ କଟାଇବାକୁ ଶାସ୍ତ୍ରବହିର୍ଭୂତ କଳ ପ୍ରଣାଳୀ ପ୍ରୟୋଗ କରିବା ପାଇଁ ପିଣ୍ଡାଗୁଡ଼ିକ ଖୁବ୍ ଉପଯୋଗୀ । ଦୁଇ ଘରର ଦୁଇଟି ବୁଢ଼ୀ ନିଜ ନିଜ ପିଣ୍ଡା ପାହାଚରେ ଠିଆହୋଇ ବା ପିଣ୍ଡା ଗୁଡ଼ିକରେ ମଶିଣା ପକାଇ ବସିପଡ଼ି ଘଣ୍ଟା ଘଣ୍ଟା ଧରି ବାଦପଲା ପରି ହାତ

ହଲାଇ ପରସ୍ପରେ ବଚନ କଟାକଟି ହୋଇ, ଗଣ୍ଡୀ ଆଣ୍ଠୁକୁଡ଼ୀ ପୁଅମୁଣ୍ଡଖାଇ ପ୍ରଭୃତ ଅଭଧାନ ବହିର୍ଭୂତ ଭାଷା ଆଦାନପ୍ରଦାନ କରିବା ସେଠାରେ ଯେପରି ସହଜ; ପାଟି କରି କରି ଶାଶୁମାନଙ୍କର ତଣ୍ଟି ଶୁଖିଗଲା ବେଳକୁ ସନ୍ଧ୍ୟାକାଳ ଭାବରେ ବୋହୂମାନେ ପାନ ଭାଙ୍ଗି ମଝିରେ ମଝିରେ ଖଣ୍ଡିଏ ଖଣ୍ଡିଏ ବଢ଼ାଇଦେଇ କଳିକୁ ବଞ୍ଚାଇରଖିବା ମଧ୍ୟ ସେହିପରି ସୁବିଧାଜନକ ।

ସୁଖ ବା ଦୁଃଖ ଅନୁଭବ କରିବା ଏକପ୍ରକାର ମାନସିକ ଅବସ୍ଥା ମାତ୍ର । କେଉଁ ଅବସ୍ଥାଟା ଦୁଃଖମୟ ଏବଂ କେଉଁ ଘଟଣାଟା ସୁଖମୟ, ତାହା କାହା ପାଇଁ କଅଣ କହିବା ଦୁରୂହ ବ୍ୟାପାର । ଗୃହଜୀବନ ପରି ଆଜିର ଯେଉଁସବୁ ଘଟଣାବଳୀକୁ ମଣିଷ ଅତ୍ୟନ୍ତ ଦୁଃଖମୟ ବୋଲି ଭାବେ, କେତେ ବର୍ଷ ପରେ ଭାବିଲା ବେଳକୁ ସେଇ ଘଟଣା ବା ସମୟଟି ପରବର୍ତ୍ତୀକାଳୀନ ସୁଖର ମୂଳଦୁଆ ପରି ପ୍ରତିଭାତ ହୁଏ ।

ଦେବାଳୟର ସେବାୟତମାନେ ସୁଖଧର୍ମୀ । ସେମାନେ ଦୁଃଖରେ ଥାଆନ୍ତୁ ବା ସୁଖରେ ଥାଆନ୍ତୁ, ଅଭାବରେ ଥାଆନ୍ତୁ ବା ପ୍ରାଚୁର୍ଯ୍ୟ ଭିତରେ ଥାଆନ୍ତୁ, ଠାକୁରଙ୍କ କରୁଣାରୁ ସେମାନଙ୍କଠାରେ ସବୁବେଳେ ସବୁ କଥା ପାଇଁ ରାଜକୀୟ ବେପରବାୟ ଭାବ ପରିଲକ୍ଷିତ ହୁଏ । ଟଙ୍କା ମିଳିଗଲା ତ ପାଟ ଗହଣା କିଣାହୋଇଯିବ, ଟଙ୍କା ଅଭାବପଡ଼ିଲା ତ ସଙ୍ଗେ ସଙ୍ଗେ ଘରୁ ସେଗୁଡ଼ିକ ଯେନଆସି ବନ୍ଧାଛନ୍ଦା ଦେଇ ଟଙ୍କା ସଂଗ୍ରହକରି ଭାଙ୍ଗ ଓ ସ୍ନେହସାର ଖାଦ୍ୟ ପାପୁଡ଼ି ସରପୁଲି ପ୍ରଭୃତି ଖାଦ୍ୟର ବ୍ୟବସ୍ଥା କରାଯିବ । ଯାହାହେଉପଛେ, ସେମାନଙ୍କର ଜାଗାମଉଜ ବନ୍ଦ ହୋଇପାରିବ ନାହିଁ । ଗାମୁଚ୍ଛା ପଗ୍ଗ ଓ ଚନ୍ଦନଗାଧୁଆ ମଉଜଠାରୁ ପୋଖରୀପାଣି ବା ଝାଡ଼ାଫେରିବା ପର୍ଯ୍ୟନ୍ତ ଆଠକାଳବାରମାସି ନାନାପ୍ରକାର ମଉଜମଜଲିସ୍ ଚାଲିଥିବ । ପାଚିଲାଗାମୁଚ୍ଛା ଖଣ୍ଡେ ପ୍ରସ୍ତୁତ କରିବା ପାଇଁ ପ୍ରାୟ ପାଞ୍ଚକୋଡ଼ି ଟଙ୍କା ଖର୍ଚ୍ଚ । ତା ସାଙ୍ଗକୁ ଗୋବରିଚଢ଼େଇ ଲଢ଼େଇ, ଷଣ୍ଢ ଲଢ଼େଇ, ନଡ଼ିଆ ଲଢ଼େଇ, ଗଞ୍ଜାଲଢ଼େଇ ପ୍ରଭୃତି ଅଛି । ପାଚକ ପାଇଁ ନାଗସାପ ଧରି ତାର ଗରଳ ଦୋହିଁ ତାକୁ ଗୁଡ଼ଦେବା ମଧ୍ୟ ଗୋଟିଏ ପ୍ରକାର ମଉଜ । ଅଭାବବେଳେ ଘରଣୀ ଅଳଙ୍କାରପତ୍ର ଦେବାକୁ ଆପତ୍ତି କଲେ ଉତ୍ତର ମିଳିବ, "ଆଲୋ ରହ, ପୁଣି ଯେତେବେଳକୁ ଗୋପାଳ ଯଦି ଦୟା କରିବେ ଓ ଯାବୀ ଯଦି ଲଗିଯିବେ ତେବେ ତୋତେ ଗୋସାଣୀ (ବା ପୁରୀର ଦଶହରା ସମୟର ଦେବୀମୂର୍ତ୍ତି) ପରି ପାଟ ଓ ସୁନାରେ ଗୁଡ଼ିଣି କରିଦେବି ।"

ଏ ମଉଜ ବିଷୟରେ ନାନା ପ୍ରକାରର କଥା ଶୁଣାଯାଏ । ଥରେ କେତେକ ସେବାବ୍ରତ ପାଠକ ପାଣି ସାର ଖଣ୍ଡିଏ ଲେଖାଏଁ ଗାମୁଛା ପିନ୍ଧି ଓ ପାଚିଲା ଗାମୁଛା କାନ୍ଧରେ ପକାଇ ପୋଖରୀପାଣି ମଉଜ ପାଇଁ ଉପଯୁକ୍ତ ସ୍ଥାନ ନିରୂପଣ କରୁକରୁ ଶେଷରେ ଷ୍ଟେସନ ପାଖରେ ପହଞ୍ଚି ରେଳଗାଡ଼ିରେ ଚଢ଼ି କଟକରେ ଓହ୍ଲାଇପଡ଼ିଲେ । କାଠଯୋଡ଼ି ନଈ ବାଲିକୁ ଯାଇ ଭଲ ଭାବରେ ଡ଼ୋ ଡ଼ୋ କରି ପେଟ ବାଡ଼ଉଁ କରି ଶେଷରେ ନଈ ମଝିରେ ଝାଡ଼ା-ଫେରିବାକୁ ବସିପଡ଼ିଲେ । ସେତେବେଳେ କଟକରେ ପାଞ୍ଚଆଇନ ଜୋର-ସୋର୍‌ରେ ଲାଗୁକରାଯାଉଥାଏ । ପୁରୀଘାଟ ଫାଣ୍ଡିରୁ କନେଷ୍ଟବଳ ସେମାନଙ୍କୁ ଧରିବାକୁ ଗିବାରୁ ସେମାନେ ହାତ ଠରାଠରି କରି ଅଣ୍ଟା ଦେଖାଇଲେ; ତାପରେ ଶୌଚସାରି କନେଷ୍ଟବଳ ସଙ୍ଗେ ଫାଣ୍ଡିକୁ ଗଲେ । ଫାଣ୍ଡିକୁ ଆସି ସବ୍‌ଇନସ୍‌ପେକ୍‌ଟର ବାବୁଙ୍କୁ କହିଲେ, "ବାବୁ, ପାଞ୍ଚଆଇନରେ ତ ପାଞ୍ଚ-ଟଙ୍କା ଜୋରିମାନା, ରଜାପିଲା ପରି ଯେଉଁ ମଉଜରେ ବାଲି ଭିତରେ ଆମ୍ଭେମାନେ ଦୁଇକାର୍ଯ୍ୟ ବଡ଼ାଇଲୁ ସେଥିରେ ତମ୍ବା ତାର ପରି କୋଷ୍ଠ ପରିଷ୍କାର ହୋଇଗଲା । ଏ ସବୁ କାଠଯୋଡ଼ି ବାଲିର ମହତ୍ତ୍ୱ । ଏଥିପାଇଁ ମାତ୍ର ପାଞ୍ଚଟଙ୍କା କଅଣ ୧୦-୧୫ ଟଙ୍କା ଦେବାକୁ ଆମର ଆପତ୍ତି ନାହିଁ । ଆପଣ କେତେ ଜୋରିମାନା ଆମଠାରୁ ନେବେ କହିବାହେଉ !"

ପୁଲିସବାବୁ ଏ ସବୁ ଶୁଣିସାରି ମୁରୁକି ହସି କହିଲେ, "ତମେ ପୁରୀଆଡ଼ୁ ଏତେ ବାଟ ଯେଉଁଥିପାଇଁ ଆସିଲ, ଆମେ ବୋକାଗୁଡ଼ାକ ଏତେ ପାଖରେ ରହି ତାର ମହତ୍ତ୍ୱ ବୁଝିପାରିଲୁ ନାହିଁ । ସରକାର ବି ମଧ୍ୟ ବୋକା । ଧନ୍ୟ ତୁମେ ! ହଉ ଗୋସେଇଁ, ଆଉଥରେ ଏପରି ଡ଼ୋ ଡ଼ୋ ପେଟବାଡ଼ଆ ନ କରି ଶୀଘ୍ର ଗାଁଆକୁ ପଳାଅ—ଜୋରିମାନା ଦରକାର ନାହିଁ ।"

ଆଉ ଥରେ ଜଣେ ସେବାବ୍ରତଙ୍କର ସରକାରଙ୍କଠାରୁ କିଛି ପାଉଣା ପାଇବାରଥିଲା । ସେ କଟକର ଜଣେ ବିଖ୍ୟାତ ଓକିଲଙ୍କୁ ଦେଇ ସରକାରଙ୍କ ବିରୁଦ୍ଧରେ ମୋକଦ୍ଦମା ଦାୟରକଲେ । କିନ୍ତୁ ତାରିଖ ଦିନ ଆସିଲେ ନାହିଁ । ତାରିଖ ଗଡ଼ିଗିବାର ପ୍ରାୟ ୧୫ ଦିନ ପରେ ଓକିଲଙ୍କ ପାଖରେ ଆସି ହାଜରହେଲେ । ଓକିଲ ପଚାରିଲେ, "କିଓ, ତାରିଖ ଦିନ କାଗଜପତ୍ର ଦାଖଲ କରିବା କଥା—କାଗଜପତ୍ର ନେଇ ସେଦିନ କାହିଁକି ଆସିଲ ନାହିଁ ?"

ସେବାଏତ ଅଣ୍ଟାରୁ ଚନ୍ଦନ, ସିନ୍ଦୂର ଓ ଅଳରୁ ଭୋଗ ବାହାର କରି ଓକିଲଙ୍କୁ ଦେଇସାରି କହିଲା, "ହଜୁର, ସୁବିଧା ଅସୁବିଧା କଅଣ ହାକିମ ବୁଝିବେ ନାହିଁ ? ଗୋଟିଏ ଅସୁବିଧା ପଡ଼ିଗଲା, ନ ହେଲେ କଅଣ ଏ ଗରିବ ନ ଆସିବା ଲୋକ ?"

କି ପ୍ରକାର ଅସୁବିଧା ହେଲା ବୋଲି ଓକିଲ ପଚାରିଦେବାରେ, ସେ କାନ କୁଣ୍ଡାଇ କୁଣ୍ଡାଇ କହିଲେ, "କଅଣ କହିବି, କହି ନ କହିବା କି ଲାଭ, ଯାହା ହେବାର ତ ହେଲାଣି, ଯିଏ ଯାହା କରେ ସିଏ ତାର ଫଳ ପାଏ—ଆମେ ସେଥିରେ କଅଣ କରିପାରିବା ? ତାପରେ ଯିଏ ଯେତେ ଦିନକୁ ବରାଦ କରି ଆସିଥାଏ ସେ ସେତିକି ଦିନ ରହି ବାହାରିଯାଏ । ଆମ ପୁଅ ବୋଲି ଦୁଃଖ କଲେ କଣ ମିଳିବ ? ମୋର ଦଶ-ପନ୍ଦର ବର୍ଷର ବଡ଼ ପୁଅଟା—ଯେତେ କହିଲି ମୋ କଥା ମାନିଲାନାହିଁ । ଆମ ସାଇ କଣ ମୁଣ୍ଡରେ ଗୋଟିଏ ଗୁଡ଼ୁଲିଆ (ପିଜୁଳି) ଗଛ ଅଛି । ସେଥିରେ ଗୋଟିଏ ପିଚାଶୁଣୀ ଘର କରି ଅଛି ବୋଲି ସମସ୍ତେ ଜାଣନ୍ତି । ଖରାବେଳେ ତ ପିଚାଶୁଣୀର ସବୁଠାରୁ ବେଶି ପ୍ରକୋପ । ସମସ୍ତେ ମନାକରନ୍ତି—ମୁଁ ବି ପୁଅକୁ ମନାକରି କହିଥିଲି ତୁ ଖରାବେଳେ ସେ ଗଛ ପାଖକୁ ଯାଆନା । ତାକୁ ତ ଯୋଗ ଡାକୁଛି, ମରଣ ହାତ ଠାରି ଡାକୁଛି, ସେ ଆମ କାହା କଥା କାହିଁକି ଶୁଣନ୍ତା ? ଉଦୁଉଦିଆ ଖରାବେଳେ ଯାଇ ସେ ଗଛରେ ଫଳ ଖାଇବାକୁ ଚଢ଼ିଲା । ଫଳ ପାଇଲା । ପିଚାଶୁଣୀ ତାକୁ ପଛଆଡ଼ୁ ନାଡମାରି ଭୂଷୁକରି ତଳକୁ ପକାଇ ମାଡ଼ିବସିଲା । ତାର ନାକ ବାଟେ କାନ ବାଟେ ରକ୍ତ ଶୋଷିଗଲା ।

'ମୁଁ ଖବର ପାଇ ଦଉଡ଼ିକରି ଗଲି । ତାକୁ କହିଲି—ମୋ କଥା ଶୁଣିଲୁ ନାହିଁ, ଫଳ ପାଆ । କିନ୍ତୁ ସେ କଅଣ ହୋସ୍‌ରେ ଥିଲା ଯେ ଶୁଣିବ ? ମୁଁ ଦେଖିଲାବେଳକୁ ଗଛ ମୂଳେ ଗୁରିକାଡ ମେଲାଇ ଆଁ ଟେ କରି ଅଚେତ ହୋଇ ପଡ଼ିଛି, ବହୁତ ଲୋକ ଜମାହୋଇଛନ୍ତି । ମତେ ସମସ୍ତେ କହିଲେ—ବଡ଼ ଡାକ୍ତରଖାନା ନିଅ, ଚିକିତ୍ସା କର । ଲୋକ ଅପବାଦକୁ ଡରି ଟେକାଟେକି କରି ତାକୁ ଡାକ୍ତରଖାନା ନେଲି । କିଛି ପଇସାପଇ ମଧ୍ୟ ବୃଥାରେ ଖରଚହେଲା । ସେ କଅଣ ଆଉ ହବାର କଥା ? ଜମୁନା ଧାନ କି ଗଜା ହୁଏ ? ଡାକ୍ତରମାନେ ତାଙ୍କ ଚେଷ୍ଟାରେ କିଛି ଊଣା କରିନାହାନ୍ତି, କିନ୍ତୁ ହେବ କଅଣ, ମୋର ପୁଅ ବୋଲି ଯମ ସଙ୍ଗେ ଲଢ଼ି ସୁକୁ ସୁକୁ ହୋଇ ସେହିପରି ଅଚେତ ଅବସ୍ଥାରେ

ଦୁଇଦିନ ମାରିନେଲା—କିନ୍ତୁ ଠାକୁର କେତେବେଳେ । ପିତାଶୂଣୀର ଜୋର୍ ଆଗରେ ମଣିଷର ବା କେତେ ଜୋର୍ ?

"ଶେଷକୃତ୍ୟ ସରିଲା । ଶ୍ରାଦ୍ଧ ଶୁଦ୍ଧ ତ ପୁଣି ମୁଁ କରିବି—ଆଉ କିଏ ଅଛି ଯେ କରିବ ! ବାପ ହୋଇ ମଧ୍ୟ ବାଧହୋଇ ସେ ସବୁ ମୋତେ କରିବାକୁ ବିଧି ଲେଖିଥିଲା । ସେ ସବୁ ନ ସାରି କପରି ବା ଆସନ୍ତି ? ତେଣୁ ସେ ସବୁ ସାରି ଆସୁ ଆସୁ ଡେରିହୋଇଗଲା । ହଜୁର ଦୟାବନ୍ତ ପୁରୁଷ, ଆପଣ ହାକମଙ୍କୁ ବୁଝାଇ କାମଟା ସମ୍ଭାଳି ନ ନେଲେ ଆଉ କିଏ ସମ୍ଭାଳିବ ?"

ଓ୍ଵେଲ ଏସବୁ ଶୁଣି ହତବାକ୍ ହୋଇ ଗୁହିଁରହିଲେ । ଭାବିଲେ ଆମ ଧର୍ମ ଓ ରାଜାମାନେ ଏପରି ଗୁଡ଼ିଏ ନିର୍ବିକାର ପୁରୁଷ ତିଆରି କରିପାରିଛନ୍ତି । ଏପରି ଲୋକ ପୃଥିବୀର ଆଉ କୌଣସି ଧର୍ମରେ ବା ଦେଶରେ ନ ଥିବେ । ଏତେ ବଡ଼ ବିପଦକୁ ବି ଏହିଭଳି ବେପରୁଆ ଭାବରେ ଏମାନେ ବରଦାସ୍ତ କରିଯାଆନ୍ତି । ବାସ୍ତବିକ, ଭୋଳାନାଥଙ୍କର ଏମାନେ ଗୋଟିଏ ଗୋଟିଏ ଚଳନ୍ତିପ୍ରତିମା । ରିହିଚର ବୌଦ୍ଧ ସଭ୍ୟତା କାଳର ନିର୍ବିକାର ନିର୍ଲିପ୍ତ ସନ୍ନ୍ୟାସୀମାନଙ୍କର ଏକଦେଶଦର୍ଶୀ ଆତ୍ମା ହୁଏତ ଏବେ ବି ଏମାନଙ୍କ ଭିତରେ ବସା ବାନ୍ଧି ରହିଛି ।

× × ×

ସତ୍ୟବାଦୀ ରାଜାଙ୍କର ହାତଗଢ଼ା ଏହି ସତ୍ୟବାଦୀର ସାକ୍ଷୀଗୋପାଳ ମନ୍ଦିର, ଏହି ସେବକସାହି ଓ ସେହି ବକୁଳବନ । ଲୋକକଥା ଓ କିମ୍ବଦନ୍ତୀରେ ଏ ସବୁର ଇତିହାସ ଏତେ ବଦଳିଯାଇଛି ଯେ ସବୁର ପ୍ରକୃତ ଇତିହାସ ସଂଗ୍ରହ କରିବା ଅତି କଷ୍ଟକର ବ୍ୟାପାର ।

ଦିଅଁଙ୍କର ନାମ ଥିଲା ସତ୍ୟବାଦୀ-ସାକ୍ଷୀଗୋପାଳ । ସେ କେବଳ ସାକ୍ଷୀଗୋପାଳ ନ ଥିଲେ । ଆଜିକାଲି ସାକ୍ଷୀ ବୋଇଲେ ଝୁଟା-ସାକ୍ଷୀ ବା ମିଥ୍ୟାର ସାକ୍ଷୀ ବି ହୋଇପାରନ୍ତି । ଗୋପାଳ ସତ୍ୟବାଦୀ ଥିଲେ, ସତ୍ୟ ପାଇଁ ସାକ୍ଷୀ ଦେଉଥିଲେ । ତେଣୁ ପଦ୍ମାବତୀଙ୍କୁ ଗ୍ରହଣ କଲାଠାରୁ ଏ ସତ୍ୟବାଦୀ ଗୋପାଳଙ୍କୁ ପୁରୁଷୋତ୍ତମଦେବ ଗୃହଦେବତା କରି ରଖିଥିଲେ । ୧୮୯୭ ରେ ପୁରୀକୁ ରେଳଗାଡ଼ି ଯାତାୟାତ କଲା । ୧୯୯୯ରେ ସତ୍ୟବାଦୀ ରେଳଷ୍ଟେସନର ନାମ ସାକ୍ଷୀଗୋପାଳକୁ ବଦଳିଲା । ଏ ପର୍ଯ୍ୟନ୍ତ ପୋଲିସ ଥାନା ଓ ଡାକ୍ତରଖାନା ନାମ ସତ୍ୟବାଦୀ ଥିଲା, ଏବେ ସବୁ ସାକ୍ଷୀଗୋପାଳକୁ ବଦଳୁଛି ।

ମନ୍ଦିର ନିକଟ ଥାଳଧୂଆ ପୋଖରୀକୁ ସେବକମାନେ ନାମ ବଦଳାଇ କରିଛନ୍ତି ଶ୍ୟାମକୁଣ୍ଡ । ମନ୍ଦିର ଆରପଟ କେତକୀଝରର ପୋଖରୀର ନାମ ଦେଇଛନ୍ତି ରାଧାକୁଣ୍ଡ । ଶ୍ୟାମକୁଣ୍ଡ ଓ ରାଧାକୁଣ୍ଡ ନାମରେ ପଣ୍ଡାମାନେ ଯାତ୍ରୀମାନଙ୍କୁ ସେ ସବୁରେ ସଂକଳ୍ପ କରାଉଛନ୍ତି । ଥରେ ଜଣେ ପଣ୍ଡା ଯାତ୍ରୀମାନଙ୍କୁ ଗୁପ୍ତ ବୃନ୍ଦାବନର ମାହାତ୍ମ୍ୟ ବୁଝାଉ ବୁଝାଉ ବକୁଳବନରେ ଥିବା ଲମ୍ବା ଲିଙ୍ଗା ବା ଲମ୍ବ ଗାଡ଼ଆକୁ ଗିରି ଗୋବର୍ଦ୍ଧନ ବୋଲି ଦେଖାଇଦେଲେ ।

ସନ୍ଧ୍ୟାବାସୀ ସ୍କୁଲ ଓ ବୋର୍ଡ଼ିଂ ବା ହଷ୍ଟେଲ ଗଢ଼ାହେଲାବେଳେ ସେଥିରୁ ମାଟି ଖୋଳାହୋଇଯାଏ । ସେଠି ବଡ଼ ଗାଡ଼ଆଟିଏ ସୃଷ୍ଟି ହୋଇଥିବା କଥା ପଣ୍ଡାଙ୍କର ବୋଧେ ଖିଆଲରେ ନଥିଲା । କହୁ କହୁ ସେ ଏପରି ଭାବରେ କହିପକାଇଲେ । ଯାତ୍ରୀମାନଙ୍କ ଭିତରେ ଜଣେ ବଡ଼ ପାଠୁଆ ଲୋକ ଥିଲେ । ସେ ପଣ୍ଡାଙ୍କର କଥାକୁ ଧରି ତାଙ୍କୁ ପଚାରିଲେ—ଗିରିର ଅର୍ଥ ପର୍ବତ । ଏଠିତ ପର୍ବତପର୍ବତ କିଛି ନାହିଁ ଏ ଗାତଟା କିପରି ଗିରିଗୋବର୍ଦ୍ଧନ ହେବ ?

ଏପରି ଯୁକ୍ତିରେ ପଣ୍ଡାଙ୍କର ଅକଲ ଗୁଡ଼ୁମ୍ । କିନ୍ତୁ ସେ ତ ହାରିଯିବା ଲୋକ ନୁହନ୍ତି । ସେ କହିଲେ, ମୋ କଥାରେ ଯଦି ଆପଣଙ୍କର ଅବିଶ୍ୱାସ ହେଉଛି ଆପଣ ଚାଲନ୍ତୁ ମଣିମାଙ୍କୁ ପଚାରିବା । ସେ ଏଠାର ରାଜ ବଂଶର ଲୋକ—ତାଙ୍କୁ ଏଠାର ବିଷୟ ସବୁ ଜଣା । ଆପଣ ପାଠ ପଢ଼ିପାରିଥାନ୍ତି, କିନ୍ତୁ ଯୁକ୍ତିରେ କଅଣ ସବୁ ମିଳେ ? କଥାରେ ଅଛି "ବିଶ୍ୱାସେ ମିଳଇ ହରି, ତର୍କେ ବହୁ ଦୂର" । ଆଜ୍ଞା, ଠାକୁରଙ୍କ ମହିମାରେ ସବୁ ହୋଇପାରେ । ପର୍ବତ ବି ମାଟିରେ ପଶିଯାଇ ଗାତ ତଳେ ପଶିଯାଇ ରହିପାରେ ।

ଯାତ୍ରୀ କିନ୍ତୁ ଏ ସବୁ ଯୁକ୍ତିରେ ସନ୍ତୁଷ୍ଟ ନ ହୋଇ ଜାଣିବାଲୋକ କାହାକୁ ପଚାରିବାକୁ ଜିଦ୍ ଧରି ବସିବାରୁ ପଣ୍ଡାଏ ତାଙ୍କୁ ମନ୍ଦିର ପାଖରେ ବସାଇଦେଇ ମଣିମା ଅଛନ୍ତି କି ନାହିଁ ଦେଖି ଆସୁଛି କହି ସେଠାରୁ ଖସିଆସି ମଣିମାଙ୍କ ଗୋଡ଼ତଳେ ପଡ଼ି, ମଣିମାଙ୍କୁ ତାଙ୍କ ମାନ ରଖିବାକୁ ଅନୁରୋଧ କରି ମଣିମାଙ୍କ ଆଗେ ଘଟଣାଟି ଆମୂଳଚୂଳ ବର୍ଣ୍ଣନାକଲେ । ମଣିମା ତ ଗାଲୁ ଭୂରୁଡ଼ରେ ପଟୁ ନୁହନ୍ତି—ସେ ବା ପଣ୍ଡାଙ୍କୁ କିପରି ସାହାଯ୍ୟ କରିପାରିବେ ? ତେଣୁ ସେ କି ଉତ୍ତର ଦେବେ କିଛି ଠିକ୍ କରି ନ ପାରି, ସ୍କୁଲର ବିଶିଷ୍ଟ ପଣ୍ଡିତଙ୍କୁ ପଚାରିବାକୁ ପଣ୍ଡାଙ୍କୁ ନିର୍ଦ୍ଦେଶଦେଲେ ।

ପଣ୍ଡା ସେଠାରୁ ଯାଇ ପଣ୍ଡିତଙ୍କ ପାଖରେ ପହଞ୍ଚିଲେ । ପଣ୍ଡିତେ ସବୁ ଶୁଣିସାରି ଗମ୍ଭୀର ହୋଇ କହିଲେ—ତୁମେ ଗଣ୍ଡମୂର୍ଖ ଗୁଡ଼ାକ କାହିଁକି ଶାସ୍ତ୍ର ଚର୍ଚ୍ଚା କରୁଛ ବା କରିବାର ସାହସ କରୁଛ ? ବିଚ୍ଛୁ ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରାଅ କାହିଁକି ? ହଉ ହଉ, ତୁମେ ତୁନି ହୋଇ ଶୁଣିବ, କିଛି ବାକ୍ ବିତଣ୍ଡା କରିବ ନାହିଁ । ଯାଅ ସେ ଯାତ୍ରୀଙ୍କୁ ଏଠାକୁ ଡାକିଆଣ ।

ରାଜାଙ୍କର ସଭାପଣ୍ଡିତେ ଏ କଥା ବୁଝାଇ ଦେବେ ବୋଲି ଡାକୁଛନ୍ତି —କହିବାରୁ ଯାତ୍ରୀମହାଶୟ ପଣ୍ଡାଙ୍କ ସାଙ୍ଗରେ ଯାଇ ପଣ୍ଡିତଙ୍କ ପାଖରେ ହାଜରହେଲେ । ଆଗନ୍ତୁକ ଆସି ପହଞ୍ଚିବାରୁ ପଣ୍ଡିତେ ତାଙ୍କଠାରୁ ପୁଣି ସବୁ କଥା ତାଙ୍କ ତର୍କବିତର୍କ ସହିତ ଶୁଣିଲେ । ଆଖି ବୁଜି କିଛିକ୍ଷଣ ରହିବା ପରେ ଆଖି ଖୋଲି କହିଲେ—ଆପଣ କଣ ପୁରାଣ ପଢ଼ି ନାହାନ୍ତି—ଏତିକି କଥା ବୁଝିପାରୁନାହାନ୍ତି ? ଏ ପରା ଗୁପ୍ତବୃନ୍ଦାବନ ! ସେଇ ସ୍ଥାନରେ ଗିରିଗୋବର୍ଦ୍ଧନ ଥିଲା । ତାକୁ ଗୋପାଳ ଟେକିକରି ଆଙ୍ଗୁଠି ଅଗରେ ଧରିଲା ବେଳକୁ ଯେଉଁ ବିରାଟ ଖାତଟି ସୃଷ୍ଟି ହୋଇଥିଲା ଏ ତାର ଚିହ୍ନମାତ୍ର । ଗୋପାଳ ଆଙ୍ଗୁଠି ଛୁଆଁଇଦେବାରେ ପର୍ବତଟି ଯାଇ ବହୁ ଦୂରରେ ଅନ୍ୟତ୍ର ପଡ଼ିଲା । ତେଣୁ ଏଠି ଗିରିଗୋବର୍ଦ୍ଧନ ଥିଲା ବୋଲି ଏହି ସ୍ଥାନଟି ଦଳବର୍ଦ୍ଧନ ହେଲେ ମଧ୍ୟ ତାର ନାମ ସେହିପରି ରହିଛି ।

ଏଥର ସବୁ ବୁଝିଯାଇ, ଗୋପାଳଙ୍କ ମାହାତ୍ମ୍ୟ ଗାଇ ଗାଇ ଯାତ୍ରୀ ଆଗେ ଆଗେ ଚାଲିଲେ । ପଣ୍ଡା ପଛେଇ ପଛେଇ ପଛକୁ ଚାହିଁ ପଣ୍ଡିତେ ତାଙ୍କ ଆଡ଼କୁ ଲକ୍ଷ୍ୟ କରି ମୂରୁକେଇ ମୂରୁକେଇ ହସୁଥିବାର ଦେଖିପାରିଲେ !

## ପନ୍ଦର

ରାଧାକୃଷ୍ଣଙ୍କର ପ୍ରେମସ୍ଥଳୀ ଥିଲା ବୃନ୍ଦାବନର କେଳିକୁଞ୍ଜ । ସେଠାରେ ସେ ଗୋରୁ ଚରାଉଥିଲେ ଏବଂ ବଂଶୀ ବଜାଉଥିଲେ, ରାଧା ଓ ଗୋପୀମାନଙ୍କ ସଙ୍ଗେ କେଳି କରୁଥିଲେ । ପ୍ରେମ ଶିକ୍ଷା ଦେଉଥିଲେ । ସବୁ ଧର୍ମରେ ସବୁ ଶାସ୍ତ୍ରରେ ପ୍ରେମର ପ୍ରଶସ୍ତି ନିହିତ ଅଛି । କାଳକ୍ରମେ ସେ ସ୍ୱର୍ଗୀୟ ପ୍ରେମ ଓ ଜୀବାଧର୍ମକୁ କିଏ କି ପ୍ରକାରର ଅର୍ଥ କରି ଗ୍ରହଣ କରୁଛନ୍ତି ।

ବୃନ୍ଦାବନର କେଳି କୁଞ୍ଜ ଗ୍ରାମରେ କୁରୁଆଅନା ବକୁଳ ବୃକ୍ଷ ପୁଞ୍ଜି ବକୁଳବନର ସୃଷ୍ଟି ହୋଇଥିଲା । ତାହା ଗୋଟିଏ ସୁରମ୍ୟ ଉଦ୍ୟାନ ଥିଲା । ଗୋପାଳଙ୍କର ସେଇ ଘଞ୍ଚ ବକୁଳବନର ପତ୍ର ଭେଦ କରି ସୂର୍ଯ୍ୟ କିରଣ ଦିନରେ ଭୂମି ସ୍ପର୍ଶ କରିପାରୁନଥିଲା ।

କୁରୁଆଅନା ଗଛ ଗୁଡ଼ିକ ସିଧା ସିଧା ଓ ଡେଙ୍ଗା । ମୂଳରୁ ଆଠ ଦଶ ଫୁଟ ଯାଏଁ ଡାଳପତ୍ର ନ ଥାଏ । ବନର ତଳଟି ବାଲୁକାମୟ । ପତ୍ର ଓଳାଇ ଦେଲେ ଘରର ଚଟାଣ ପରି ପରିଷ୍କାର ଦିଶେ । ଗଛଗୁଡ଼ିକର ଉପରର ଡାଳପତ୍ର ସବୁ ଛତାପରି ବଣଟିକୁ ଘୋଡ଼ାଇରଖିଥାନ୍ତି । ପ୍ରଚଣ୍ଡ ଖରାବେଳେ ମଧ୍ୟ ବନ ଭିତରଟି ଥଣ୍ଡା ଥାଏ । ବଉଳ, କୁରୁଆଅନା, ମାଳତୀ, କେତକୀ ପ୍ରଭୃତି ତରୁଲତାମାନଙ୍କର ସୁଗନ୍ଧ ପୁଷ୍ପର ସୁବାସରେ ସମସ୍ତ ବନଟି ମହକ ଉଠେ । ଉପରେ କୋକିଳ ଡାକେ, ହଳଦୀବସନ୍ତ ଡାଳକୁଡ଼ାଳ ଡେଇଁ ବନର ସବୁଜ ଲହରୀ ଭିତରେ ହରିତ ତରଙ୍ଗ ସୃଷ୍ଟି କରେ । ତଳୁ କେତକୀ ବନ ଭିତରୁ ଧୂସରିତ ଶରୀର ନଚାଇ କୁମ୍ଭାଟୂଆ ବାହାରକୁ ବାହାରିଆସେ ।

ବନର ବାହାରପଟେ କଅା ବୁଦା ନିକଟରେ ଉଇମାନେ ହୁଙ୍କା ସୃଷ୍ଟି କରିଥାନ୍ତି । ସେ ପଟକୁ ପ୍ରାୟ କେହି ବେଶି ଯିବା-ଆସିବା କରନ୍ତି ନାହିଁ । ସେ ସ୍ଥାନରେ ମହାଦେବଙ୍କର ପ୍ରିୟ ଫଣୀମାନେ ଆନନ୍ଦରେ ବସବାସ କରୁଥିବାର ଦେଖାଯାଏ । ବେଳେ ବେଳେ ଅବଶ୍ୟ କେହି କେହି ଗରଳ-ପାଚକ ପ୍ରେମୀ ଭାଙ୍ଗ ନିଶା ଟାଣ କରିବାକୁ ଗରଳ ସଂଗ୍ରହ କରିବା ପାଇଁ ସର୍ପମାନଙ୍କୁ ବ୍ୟସ୍ତ କରନ୍ତି । ସେମାନେ ନାଗସାପଟିଏ ଦେଖିଲେ ତା ନିକଟକୁ ଦୌଡ଼ିଯାଇ ଡାହାଣ ହାତରେ ତାର ଲାଞ୍ଜଟିକୁ ଧରି ଉପରକୁ ଟେକି ତାକୁ ଘିରି ଘିରି କରି ବୁଲାନ୍ତି ଏବଂ ତାଙ୍କର ସାଥୀମାନଙ୍କୁ ଡାକପକାନ୍ତି । ନାଗଟି ବୁଲି ବୁଲି ହାଲିଆ ହେଲା-ବେଳକୁ କେହି କେହି ସାଥୀଙ୍କ ଅନୁଗ୍ରହରୁ ତାଳପତ୍ରରେ ଘୋଡ଼ଆ ହୋଇଥିବା ଗ୍ଲେଟ ହାଣ୍ଡି ବା ଷଢ଼େଇଟିଏ ସାପକୁ ବୁଲାଉଥିବା ଲୋକର ହାତକୁ ଚାଲିଆସି ଥାଏ । ତାର ଉପରେ ନାଗକୁ ଗ୍ଲେଟ ମରାଯାଏ । ନାଗ ଗ୍ଲେଟ ମାରିଲାବେଳେ ଗରଳତକ ସେ ହାଣ୍ଡି ବା ଷଢ଼େଇଟି ଭିତରେ ରହିଯାଏ । ତା ପରେ ନାଗଟିକୁ ଅବଶ୍ୟ ଛାଡ଼ିଦିଅନ୍ତି, ସେ ପଳାଇଯାଏ ।

ସେଇ ଗରଳକୁ ଭାଙ୍ଗ ସାଙ୍ଗରେ ବାଟିକରି ଖାଇଲେ ଚଢ଼ା ନିଶା ହୁଏ ବୋଲି ଶୁଣିବାକୁ ମିଳେ । ବୈଜ୍ଞାନିକମାନଙ୍କର ମତରେ ଗରଳ ରକ୍ତରେ

ମିଶିଲେ ଉତ୍କଟ ବିଷପରି କାମ କରେ, କିନ୍ତୁ ପାଚିବାଟେ ଗଲେ ପେଟରେ ଥିବା ଅମ୍ଳତା ଯୋଗୁଁ ତାର ବିଷ ନଷ୍ଟ ହୋଇଯାଏ—କୌଣସି କ୍ଷତି ଘଟାଏ ନାହିଁ । ଯାହାହେଉ ସେ ଲୋକମାନେ ବୈଜ୍ଞାନିକ ନ ହୋଇ ମଧ୍ୟ ସେ ଦ୍ରବ୍ୟର ଗୁଣ, ସେମାନଙ୍କୁ ବେଶ୍ ଜଣାଅଛି ।

× × ×

ବକୁଳବନ ରାଧାକୃଷ୍ଣଙ୍କର ତଥାକଥିତ କେଳିକୁଞ୍ଜରୂପେ ନିର୍ଜନ ବନରୁ ଧିରେ କୋଳାହଳମୟ ଛାତ୍ରମାନଙ୍କର ବନବିଦ୍ୟାଳୟରେ ପରିଣତ ହେଲା । ମନ୍ଦିର ପଛପଟେ ଥିବା ଚାଳିଆ ସ୍କୁଲଟି ରକ୍ଷଣଶୀଳମାନଙ୍କଦ୍ୱାରା ଭସ୍ମସାତ୍ ହୋଇଯିବା ପରେ ବକୁଳବନ ଭିତରେ ଇଟା ସିମେଣ୍ଟର ଚଉକି ଟେବୁଲ ଗଢ଼ାହୋଇ ସେଥିରେ ବସି ଶିକ୍ଷକମାନେ ପିଲାଙ୍କୁ ପାଠ ପଢ଼ାଇଲେ । ଟେବୁଲ ପଛରେ ଥିବା ଗଛରେ ବ୍ଲାକବୋର୍ଡ଼ ଟଙ୍ଗାହେଲା । ପିଲାମାନେ ପଟି ଓ ସ୍ଲେଟ କାଠ ଡେକ୍‌ସ ଖଣ୍ଡିଏ ଲେଖାଏଁ ଧରି ତଳେ ବସି ବିଦ୍ୟାଭ୍ୟାସ କଲେ । ବକୁଳବନର ସୁରକ୍ଷା ପାଇଁ ଅଧକ୍ଷ ମହାଶୟଙ୍କ କଡ଼ା ନିର୍ଦ୍ଦେଶରେ ଯେ କେହି ପତ୍ରଟିଏ କି ଡାଳଟିଏ ମଧ୍ୟ ଛିଣ୍ଡାଇବାକୁ ମନାହେଲା । ପତ୍ରଟିଏବି ଛିଣ୍ଡାଇଦେଲେ ଛାତ୍ରକୁ କଠୋର ଶାସ୍ତି ଭୋଗ କରିବାକୁ ପଡ଼ୁଥିଲା ।

ଦେଶଭକ୍ତ ପଞ୍ଚସଖାଙ୍କ ଉଦ୍ୟମରେ ନୂତନ ଉତ୍କଳ ଗଠନ ପାଇଁ ସେଠାରେ ମଣିଷ ଗଢ଼ା ଚାଲିଲା । ଭାରତର ଓ ବିଦେଶର ବଡ଼ ବଡ଼ ମହାତ୍ମା-ମାନଙ୍କର ପାଦ ସେହି ବକୁଳବନରେ ପଡ଼ିଲା । କିଏ କେତେ ପ୍ରକାରର ପ୍ରଶଂସା କରିଗଲେ । ଇଂରେଜ ସରକାର ସେ ଅନୁଷ୍ଠାନ ଉପରେ ଖାସ୍ ସନ୍ଦେହ ଦୃଷ୍ଟି ରଖି, ସେ ଅନୁଷ୍ଠାନକୁ ବୋମାଗଢ଼ା ବିପ୍ଳବୀ ଅନୁଷ୍ଠାନ ବୋଲି ଅନୁମାନ କରି ବନ୍ଦ କରିଦେବା ପାଇଁ ଚେଷ୍ଟା କରି ବିଫଳହେଲେ । ସେ ବନବିଦ୍ୟାଳୟ ଶିକ୍ଷା ଓ ସମାଜ ସେବାର ଉଚ୍ଚତମ ପାବଚ୍ଛ ଆରୋହଣ କରି ଚାରିଆଡ଼େ ପ୍ରସିଦ୍ଧି ଲାଭକଲା ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ମହାତ୍ମାଗାନ୍ଧି ଆସି ଉଦ୍-ବୋଧନ ଦେଲେ । ସ୍କୁଲ କଲେଜ ଓ ସରକାରୀ ଚାକିରି ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାର ସ୍ଥିର ହେଲା । ସେଥିରେ ସ୍କୁଲର ପ୍ରତିଷ୍ଠାତା ଗୋପବନ୍ଧୁ ନେତୃତ୍ୱ ନେଲେ । ସେଠାର ଛାତ୍ର ଓ ଶିକ୍ଷକମାନେ ଆନ୍ଦୋଳନରେ ଯୋଗଦେଇ ସ୍ୱାଧୀନତା ସଂଗ୍ରାମର ଯଜ୍ଞବେଦୀରେ ହସି ହସି ଝାସଦେଲେ ।

ନିଜ ହାତରେ ତିଳ ତିଳ କରି ଗଢ଼ିଥିବା ସେ ଅନୁଷ୍ଠାନର ଅଧ୍ୟକ୍ଷ ନୀଳକଣ୍ଠ, ସେତେବେଳେ ସୁଦୂର କଲିକତା ମହାନଗରୀରେ କଲିକତା ବିଶ୍ୱବିଦ୍ୟାଳୟ କୁଳପତିଙ୍କ ଅନୁରୋଧରେ ଓ ଗୋପବନ୍ଧୁଙ୍କ ଅନୁମତିରେ ଗୋଟିଏ ନୂଆ ବିଭାଗକୁ ସାମୟିକ ଅଧ୍ୟାପକ ହୋଇ ଯାଇଥିଲେ । ସେ ଉକ୍ତ ଅନୁଷ୍ଠାନର ବିଲୟ ଦେଖିବାଟା ସହ୍ୟ କରି ନ ପାରି ଗୋପବନ୍ଧୁଙ୍କ ଅନୁମତି ନେଇ ସମ୍ବଲପୁରରେ ତାଙ୍କ କର୍ମସ୍ଥଳୀ ବାଛି ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ସେଠାରେ ଜାତୀୟ ସ୍କୁଲଟିଏ ଗଢ଼ି ତାର ପ୍ରଧାନଶିକ୍ଷକ ହେଲେ ଓ ପରେ କାରାରୁଦ୍ଧ ହେଲେ । ୧୯୨୮ ମସିହାରେ ଗୋପବନ୍ଧୁ ଅବସାଦ ଓ ଦୁଃଖରେ ଅକାଳରେ ସେଇ କର୍ମସ୍ଥଳୀରେ ଚିରଦିନ ପାଇଁ ଆଖି ମୁଦିଲେ । ନୀଳକଣ୍ଠଙ୍କଠାରୁ ଅଧ୍ୟକ୍ଷ ଦାୟିତ୍ୱ ନେଇଥିବା ଗୋଦାବରୀଶ, ବିଚ୍ଛିନ୍ନାଞ୍ଚଳରେ ଜାତୀୟ ସ୍କୁଲରେ କାର୍ଯ୍ୟ କରି, ନିଜର ଗ୍ରାମକୁ ଫେରି ସତ୍ୟବାଦୀ ସ୍ମୃତିକୁ ଧରି ବାଣପୁରରେ ସ୍କୁଲଟିଏ ଗଢ଼ିଲେ ।

ସତ୍ୟବାଦୀ ସ୍କୁଲ ଘର ସବୁ ଅଯତ୍ନରେ ଭାଙ୍ଗି ରୁଜେଇ ହୋଇପଡ଼ିଲା । ବକୁଳବନକୁ ବାଟୋଇ ଓ ସ୍ଥାନୀୟ ଲୋକମାନେ ଭାଙ୍ଗି ଚୂରମାର କରିଦେଲେ । ବର୍ତ୍ତମାନ ବକୁଳବନ ବୋଲି କହିବାକୁ ଆଉ ସେ ବନ କି ସେ ଉଦ୍ୟାନ ନାହିଁ । କେବଳ କେତୁଟା ଥୁଣ୍ଟାଗଛ ମନମାରି ଠିଆ ହୋଇଛନ୍ତି । ଶିକ୍ଷକମାନଙ୍କର ଚୌକି, ପିଲାଙ୍କର ଟେବୁଲ ଭାଙ୍ଗିରୁଜି ଖଣ୍ଡେ ଅଧେ ସେଇ ଭଗ୍ନ ଅବସ୍ଥାରେ ତଳକୁ ମୁଣ୍ଡିଆ ମାରି ବିକଳ ଅବସ୍ଥାରେ ପଡ଼ିରହିଛନ୍ତି । ସେଇ ବକୁଳବନ ପଡ଼ିଆକୁ ଅବମୂଲ୍ୟକାରୀ ସରକାରୀ କର୍ମଚାରୀ ଛିନ୍ନଭିନ୍ନ କରି ତା ଭିତରେ ଗୋଟିଏ କେନାଲ ଖୋଳସାରିଲେଣି ।

ସେଇ ବନବିଦ୍ୟାଳୟର ଶ୍ମଶାନ ଉପରେ ଗୋପବନ୍ଧୁଙ୍କ ତିରୋଧାନ ଉତ୍ତାରୁ ନୀଳକଣ୍ଠଙ୍କ ସଭାପତିତ୍ୱରେ କେତେଜଣ ପୂର୍ବତନ ଛାତ୍ର ସେଠାରେ ଏକ ମାଇନରସ୍କୁଲ ଆରମ୍ଭକଲେ । ତାହା ବଢ଼ି ବଢ଼ି ହାଇସ୍କୁଲଟିଏ ହୋଇଛି । ମାଇନର ସ୍କୁଲଟିଏ ଆରମ୍ଭବେଳେ ବଉଳ ବଣରେ କିଛି କିଛି ଗଛ ପତ୍ର ଥିଲା । ପିଲାଏ ମଧ୍ୟ ଖେଳଛୁଟିରେ ବା ପିରିୟଡ଼ରେ ମାଷ୍ଟରଙ୍କ ଅନୁପସ୍ଥିତି ସମୟରେ ଅବାଧରେ ଗଛକୁ ଗଛ ଡେଇଁ 'ଡାଳମାଙ୍କୁଡ଼' ଖେଳ ଖେଳପାରୁଥିଲେ ।

ଦିନକର କଥା, ପିରିୟଡ଼ରେ ଶିକ୍ଷକ ନ ଆସିବାରୁ, ସେ ଛୁଟିରେ ଥିବାର ସନ୍ଧାନ ନେଇଁ ଦଶ ପନ୍ଦର ମିନିଟ୍ ଅପେକ୍ଷା କଲା ପରେ ଛାତ୍ରମାନେ ଗଛ

ଉପରକୁ ଉଠି ଡାଳମାଙ୍କୁଡ଼ ଖେଳ ଆରମ୍ଭକରିଦେଲେ । ସେ ଖେଳରେ ଗୋଟିଏ ପିଲା ଚୋର ହୁଏ ଓ ଅନ୍ୟମାନଙ୍କୁ ଧରିବାକୁ ଡାଳେ ଡାଳେ ଗୋଡ଼ାଏ । ତଳକୁ କେହି ଆସନ୍ତି ନାହିଁ । ଏପରି ଜୋର୍‌ସୋର୍‌ରେ ଖେଳ ଚାଲିଥିବାବେଳେ ହଠାତ୍ ଗଛ ଉହାଡ଼ରୁ ବାହାରି ବେତ ଖଣ୍ଡିଏ ହାତରେ ଧରି ମାଇନର ସ୍କୁଲ ହେଡ୍‌ପଣ୍ଡିତେ ସେଠାରେ ଆସି ଉପସ୍ଥିତ ହେଲେ । ସେ ବଡ଼ କଡ଼ା ଓ ରାଗୀ ଲୋକ । ତାଙ୍କ ଆସିବାର ସୂଚକ ପାଇ ପିଲାମାନେ ଧଡ଼ଧାଡ଼ ଓହ୍ଲାଇପଡ଼ି ସୁନାପିଲା ପରି ଯେଝା ସ୍ଥାନରେ ଯାଇ ମୁଣ୍ଡ ତଳକୁ କରି ବସିପଡ଼ିଲେ । ସେଥିରୁ ଜଣେ ପିଲା ଗୋଟିଏ ଡେଙ୍ଗା ଛୁଆଁଅନା ଗଛର ଉପର ଡାଳ ଭିତରେ ଲୁଚି କରି ବସିଥିଲା । ହଠାତ୍ ତାର ଦୃଷ୍ଟି ଉପରକୁ ଚାହିଁରହିଥିବା ହେଡ୍ ପଣ୍ଡିତଙ୍କ ଡେଙ୍ଗା ଡେଙ୍ଗା ଆଖି ଉପରେ ପଡ଼ିଗଲା । ପଣ୍ଡିତେ ଆଁ କରି ଉପରକୁ ଚାହିଁଛନ୍ତି । ଗ୍ଲାନିଆ ହୋଇ ସେ ପିଲାର 'ଏକ' ହୋଇଗଲା । ପଣ୍ଡିତେ "ଦୁଷ୍ଟପିଲା, ରାମ ରାମ" କହି କହି ସେଠା ଛାଡ଼ି ଅଫିସକୁ ପଳାଇଲେ ।

ତାପରେ ପିଲାଙ୍କର ଯେଉଁ ହସ କୁରୁଡ଼ ଛୁଟିଲା, ତାହା ବର୍ଣ୍ଣନା କରି ହେବ ନାହିଁ । ପିଲାଟି ଗଛ ଉପରେ ବରଡ଼ା ପତ୍ର ପରି ଥରୁଥାଏ । କେତେକ ପିଲା ମାଷ୍ଟରଙ୍କ ବାଟକୁ ଜଗି ଠିଆହେଲେ । ଅନ୍ୟ କେତେକ ପିଲା ଗଛ ଉପରକୁ ଉଠି ସେ ପିଲାକୁ ଧରାଧରି କରି ବହୁ କଷ୍ଟରେ ତଳକୁ ଆଣିଲେ । ଏବେ ଆଉ ସେ ବନ ନ ଥିବାରୁ, ହାଇସ୍କୁଲଟି ବନବିଦ୍ୟାଳୟ ନ ହୋଇ ପାରି, ଶେଷରେ ସରକାରଙ୍କ ଆଶ୍ରୟ ନେଇ ସାଧାରଣ ସରକାରୀ ସ୍କୁଲରେ ପରିଣତ ହୋଇଛି ।

## ଷୋହଳ

ସ୍ୱର୍ଗୀୟ ଆନନ୍ଦର କଳ୍ପନା କରିବା ମନୁଷ୍ୟ ପକ୍ଷରେ କଷ୍ଟ । କିନ୍ତୁ କେତୋଟି ସାଧାରଣ ଘଟଣାରୁ ସମୟସମୟରେ ତାହା ବେଶ୍ ଅନୁମାନ କରିହୁଏ । ସେଇ ଘଟଣାମାନଙ୍କ ମଧ୍ୟରୁ ଗୋଟିଏ ହେଲା ଶ୍ରେଷ୍ଠ ପିଲାମାନଙ୍କର ସ୍କୁଲ ଛୁଟି ବେଳର ଆନନ୍ଦ ଅନୁଭୂତି । ସ୍କୁଲ ଛୁଟିର ବେଲ୍ ବାଜିଗଲେ, ପିଲାମାନଙ୍କର ବଡ଼ ଆନନ୍ଦ । ସେମାନେ ଆଉ ମୁହୂର୍ତ୍ତେ ଡେରି ନ କରି ବହିପତ୍ର

କାଖରେ ଜାକ ଆଷାଢ଼ ମାସରେ ନଈ ବନ୍ଧ ଭାଙ୍ଗି ପାଣି ସୁଅ ଏଣେତେଣେ ଛୁଟିଲା ପରି ଗୁରୁଆଡ଼େ ଖେଳାଇ ହୋଇ ଦଉଡ଼ ଦଉଡ଼ ପଳାନ୍ତି । ଗାଈଗୋଠର ଧୂଳି ଓ ପିଲାଙ୍କ ଦଉଡ଼ାର ଧୂଳି ସବୁ ମିଶି ଏକାକାର ହୋଇ ଦୋଳ-ପୂନେଇଁର ଫଗୁ ପରି ସମସ୍ତଙ୍କ ଦେହ ମୁଣ୍ଡରେ ବୋଳିହୋଇଯାଏ ।

ନୂଆ ସତ୍ୟବାଦୀ ମାଇନର୍ ସ୍କୁଲ ଗୁରୁଣ୍ଟାବେଳେ ଛୁଟି ହୋଇଯିବା ପରେ, ଦୁଇମାଇଲ ଦୂର ବନପୁର ଗ୍ରାମର ଦୁଇଟି ଭାଇଭଉଣୀ ହସଖୁସିରେ କାଖରେ ବହି ବ୍ୟାଗ୍ ଜାକି, ହାତରେ ଶ୍ୟାଇଘଣ୍ଡ଼ ଧରି ନାଚ ଖେଳ ଗାଁକୁ ଲେଉଟନ୍ତି । ଭାଇଟିର ବୟସ ଏଗାର, ଭଉଣୀଟିର ବୟସ ଆଠ । ଘରକୁ ଫେରୁ ଫେରୁ ବାଟରେ କେଉଁଠି ବରଗଛ ଓହଳରେ ଦୋଳି ଖେଳି, କମ୍ବା କେଉଁଠି ଗଛକୁ ଟେକା ପକାଇ, କୋଳି ଝଡ଼ାଇ ବା ରାସ୍ତାକଡ଼ ବିଲରେ ପଚ ପଚ ପାଣିରୁ ହାତ ବନ୍ଧଣୀ ଦେଇ କେରାଣ୍ଡି ଗଡ଼ିଶା ପ୍ରଭୃତି ମାଛ ଧରି ବା ଏହିପରି ଆହୁରି ନାନା ପ୍ରକାରର କାର୍ଯ୍ୟ କରି କରି ମୁହଁସଞ୍ଜ ବେଳକୁ ଘରେ ପହଞ୍ଚନ୍ତି ।

ତାଙ୍କ ବାଟରେ, ସିଦ୍ଧବକୁଳଙ୍କ ପଛପଟେ, ପୁରୁଣା ସ୍କୁଲର ଭଙ୍ଗାରୁଜା 'ଖ' ବ୍ଲକ ବୋର୍ଡ଼ିଂଟି ପଡ଼େ । ତାର ଭଙ୍ଗାରୁଜା ଇଟା ପାଚେରି ଭିତରେ ଭଙ୍ଗାଭଙ୍ଗି ମାଟି ଇଟାର ଗୋଟିଏ କୁଦ ନିକଟରେ ଖଣ୍ଡେଅଧେ ଭଙ୍ଗାଘର, ପାଚେରି ଭିତରେ ମନକୁ ଉଠିଥିବା ନାନା କୋଳି, ଫଳ ଓ କଣ୍ଟାବୁଦାର ଜଙ୍ଗଲ ମଝିରେ ଲୁଚିକରି ମୁହଁମାଡ଼ି ପଡ଼ିଥାଏ । ଅନେକ ସମୟରେ ସେ ଗଛର ଫଳମାନଙ୍କୁ ଗୃହିଁ ଭାଇଭଉଣୀ ଦୁଇଟିଙ୍କର ପାଦ ଆପେ ଆପେ ସେ ପାଚେରି ପାଖରେ ଅଟକିଯାଏ । କିନ୍ତୁ ସାପ ଓ ଦୁଷ୍ଟ ଜୀବଜନ୍ତୁ ଭୟରେ ସେ ପାଚେରି ଡେଇଁ ତା ଭିତରକୁ ଯିବାକୁ ଗୋଡ଼ ଆଗେଇ ଯାଏ ନାହିଁ ।

ଵନେ ଵନେ ସେମାନେ ପାଚେରି ନିକଟରେ ଥିବା ରାସ୍ତାପାଖ ବରଗଛ ମୂଳରେ ବସି ବରି କୋରଡ଼ରେ ମୁଣ୍ଡା ପେନ୍‌ସିଲ, ରବର ଓ ଗୋଡ଼ ଧରି ଖେଳନ୍ତି ଓ ପାଚେରି ଭିତରକୁ ଲକ୍ଷ୍ୟ କରନ୍ତି । ସେତିକବେଳକୁ ବେଳେବେଳେ ପାଚେରି ଭିତରେ ମଣିଷ ପାଦର ଆବାଜ ଆସେ ଓ କୁଦ ପାଖ ଭଙ୍ଗା ଘର ଆଡ଼ୁ କଳକଳା ହସର ଶବ୍ଦ ଶୁଭେ । ସେମାନଙ୍କର ଛାତି ଡରରେ ଥରିଯାଏ । ସେମାନେ ଖେଳ ବନ୍ଦକରି ଦଉଡ଼ ଦଉଡ଼ ରାସ୍ତା ଉପରେ ଘରମୁହାଁ ହୋଇ ପଳାଇଯାଆନ୍ତି ।

ପିଲାଙ୍କ ଭିତରେ ପଚରାପଚରି ହେବାରୁ ସେମାନେ ଶୁଣିଲେ, ସେ ଘରେ ଗୋଟିଏ ପିଲାଧରା ବାଇଆ ଅଛି । ସେ କାହା ସଙ୍ଗେ ମିଶେ ନାହିଁ କି କଥାବାର୍ତ୍ତା ମଧ୍ୟ ହୁଏନାହିଁ । ବାହାରକୁ ମଧ୍ୟ ସେ ଯାଏ ନାହିଁ । ବେଳେବେଳେ ବାଡ଼ିଟାଏ ଧରି ସେ ଘରର କୁନ୍ଦ ପାଖରେ ଠକ୍ ଠକ୍ କରି ପଇଁତରା ମାରୁଥାଏ ଓ ମଝିରେ ମଝିରେ କଳକଳା ଶବ୍ଦ କରି ହସିଉଠେ ।

ସେ ଘରର କଥା ଶୁଣି ଶୁଣି ପିଲା ଦୁଇଟିଙ୍କର କୌତୂହଳ ବଢ଼ିଲା— ତା ଭିତରେ ସତରେ କିଏ ଅଛି ଜାଣିବାକୁ ଭାରି ଇଚ୍ଛା ହେଲା । ଦିନେ ମନରେ ସାହସ ବାନ୍ଧି, ପାଚେରି ବାହାରର କଣ୍ଟାବୁଦା ଡେଇଁ ଭଙ୍ଗା ପାଚେରିର ଫାଟ ବାଟେ ମୁହଁ ଗଳାଇ ସେମାନେ ଭିତରକୁ ଚାହିଁଲେ । ସେ ପାଗଳଟା ଆସି ପାଚେରିର ଅଳ୍ପ ଦୂରରେ ଠିଆହୋଇଥିଲା । ସେ ପାଗଳର ଆଖି ତାଙ୍କ ଉପରେ ପଡ଼ିଗଲାକ୍ଷଣି ସେ ହସି ହସି ଆନନ୍ଦରେ ଦୁଇ ହାତ ଟେକି ତାଙ୍କ ଆଡ଼କୁ ଦଉଡ଼ି ଆସିଲା । ଏତିକିରେ ପିଲା ଦୁହିଁଙ୍କର ପିଳେହି ପାଣି । ଚମ୍କଟ୍ ମାରି ଦୁହେଁ ଏକା ଦଉଡ଼ାରେ ଆସି ଘରେ ପହଞ୍ଚିଲେ । ସେମାନେ ବାହାରିଲେ ପାଚେରିଟା ଥିବାରୁ ସେମାନେ ପାଗଳ ହାତରେ ନ ପଡ଼ି ରକ୍ଷା-ପାଇଗଲେ ।

ଏହାପରେ ସବୁଦିନ ଦୁହେଁ ସେ ବାଟେ ଗଲା ଅଇଲା ବେଳକୁ ଡରି ଡରି ପାଚେରି ଆଡ଼କୁ ଚାହାନ୍ତି । ତାଙ୍କୁ ବେଳେବେଳେ ଲାଗେ ଯେପରିକି ତା ଭିତରେ ଲୁଚି ଲୁଚି ଠିଆହୋଇ କିଏ ତାଙ୍କର ଗତିବିଧି ଲକ୍ଷ୍ୟ କରୁଛି । କିନ୍ତୁ ସେ ଶବ୍ଦ ଆଉ ଶୁଣିବାକୁ ନପାଇବାରୁ କି ପାଗଳଟାକୁ ନଦେଖିବାରୁ ତାଙ୍କର ଡର ଆସ୍ତେ ଆସ୍ତେ କମିଗଲା ।

ପୁଣି ଯିବାଆସିବା ବେଳେ ବର ଓହଳରେ ଓ ବର କୋରଡ଼ରେ ଖେଳ ଆରମ୍ଭ ହୋଇଗଲା । ଦିନେ କୋରଡ଼ ଭିତରେ ଗୋଡ଼ି ଲୁଚାଇ ଖେଳିବାକୁ ଗଲାବେଳେ ତା ଭିତରେ ଗୋଟିଏ ପଦ ପୁଡ଼ିଆ ଥୁଆହୋଇଥିବାର ଦେଖିଲେ । ପ୍ରଥମେ ତାଙ୍କୁ ଡରମାଡ଼ିଲା । ପୁଡ଼ିଆ କାହାର, କିଏ ଏଠି ରଖିଛି, କାହିଁକି ରଖିଛି, ତାକୁ ଆଣିବେ କି ନାହିଁ—ଏପରି ନାନା ପ୍ରକାର ଦ୍ୱନ୍ଦ୍ୱରେ ପଡ଼ି, ବହୁତ ଭାବି ଭାବି, ଏପଟ ସେପଟକୁ ଚାହିଁ, ଭଉଣୀର ଅନୁରୋଧରେ ଭାଇ ସେ ପୁଡ଼ିଆଟି ଉଠାଇଆଣିଲା । ସେ ପୁଡ଼ିଆଟି ଫିଟାଇଲା ବେଳକୁ ତା ଭିତରେ ବନ୍ଧାହୋଇ ଦୁଇଟି ପାଚିଲା ଫଳ ଓ ଗୁରି ଛଅଟି ପାଚିଲା ବରକୋଳି ଥିବାର

ଦେଖାଗଲା । ସେମାନେ ଆଉ ବେଶି ସମୟ ଲୋଭ ସମ୍ଭାଳି ନ ପାରି ସେତକ ଉଦରସାତ୍ କରିଦେଲେ ।

ଏହାପରେ ସେମାନଙ୍କର ଲୋଭ ବଢ଼ିଲା ଓ ଡର କମିଲା । ଦେଖିକି ଆପେ ଆପେ ବରଗଛ ପାଖରେ ଗୋଡ଼ ରହିଯାଏ । ସେମାନେ ଆଖିକୁ କୋରଡ଼ ଭିତରକୁ ପଠାଇବାକୁ ଲାଗିଲେ । ଆଖି ମଧ୍ୟ ସବୁବେଳେ ନିରାଶ ନ ହୋଇ ମଝିରେ ମଝିରେ, ଅଉ ଗୋଟିଏ ଗୋଟିଏ ଫଳ ପୁଡ଼ିଆ ବା କେତେବେଳେ ହାତଗଡ଼ା ମାଟି କୁଣ୍ଢେଇଟିଏ ଆବିଷ୍କାର କରେ । କଥାରେ ଅଛି ଲୋଭର ସୀମା ନାହିଁ । କୋରଡ଼ରୁ ମିଳୁଥିବା ସ୍ଵାଦୁ ଫଳରେ ତୃପ୍ତ ନ ରହି ଆସ୍ତେ ଆସ୍ତେ ପାଚେରି ଆରପଟ ଫଳଗଛ ଆଡ଼କୁ ତାଙ୍କ ମନ ଦଉଡ଼ିଲା ।

ଶେଷରେ ଭାଇ ପାଚେରିକୁ ଲାଗି ଠିଆହେଲା, ଭଉଣୀ ତା କାନ୍ଧରେ ଚଢ଼ି କେଉଁ ଗଛରେ ଫଳ ପାଚିଛି ଦେଖିବାକୁ ପାଚେରି ଆରପଟ ବଗିଚାକୁ ଉଣ୍ଡିଲା । ସେଇ ସମୟରେ ପୁଣି ପୂର୍ବପରି ବିକଟାଳ ହସ ହସି ପାଗଳଟା ଦୁଇ-ହାତ ବଢ଼ାଇ ତାଙ୍କ ଆଡ଼କୁ ଦଉଡ଼ିଆସିଲା । ଭଉଣୀଟି ପ୍ରାଣବିକଳରେ ଭାଇ କାନ୍ଧରୁ ଓହ୍ଲାଇପଡ଼ିଲା । ଦୁହେଁ ଦଉଡ଼ିକରି ପଳାଇଲାବେଳକୁ ଭାଇ କାନ୍ଧର ପାଳୁଡ଼ା (ଗୁଦର)ଟି ପାଖ କଣ୍ଟାବୁଦାରେ ଲାଗି ଚିରିକରି ଓହ୍ଲାଇଗଲା । କିନ୍ତୁ ସେଥିପ୍ରତି ଲକ୍ଷ୍ୟ ନକରି ଗୁଦରଟିକୁ ସେଇଠାରେ ଛାଡ଼ି, ସେମାନେ ବରଗଛ ମୂଳରୁ ବହିପତ୍ରତକ ଗୋଟାଇକରି, ଜାକିଧରି ଦଉଡ଼ି ଦଉଡ଼ି ଘରକୁ ପଳାଇଗଲେ ।

ଦିନେଦୁଇଦିନ ପରେ କୋରଡ଼ରୁ ଗୁଦରଟି ମିଳିଲା । ଚିରିବା ସ୍ଥାନଟି ସିଲାଇକରି ଗୁଦରଟିକୁ ଚଉତିଗୁଡ଼ାଇ କିଏ ସେଠି ରଖିଯାଇଛି । ସେ ବିଷୟରେ ଭାଇଭଉଣୀଙ୍କ ଭିତରେ କିଛି ସମୟ ଆଲୋଚନା ଚାଲିଲା । ତାଙ୍କ ପଛରେ ସେଦିନ ଆଉ କେତୋଟି ଉପର କ୍ଲାସର ପିଲା ସ୍କୁଲରୁ ଡେରିରେ ଫେରୁଥିଲେ । ସେମାନଙ୍କ ମଧ୍ୟରୁ ତାଙ୍କ ଉପର କ୍ଲାସର ପିଲା ଇନ୍ଦିରା ଭଲ ସିଲାଇ ଜାଣେ । ସେ ହୁଏତ ପାଳୁଡ଼ାଟିକୁ ତାଙ୍କର ବୋଲି ଚିହ୍ନିପାରି ଘରକୁ ନେଇ ସିଲେଇ କରି ମଜା ଦେଖିବାକୁ ତାଙ୍କ ହାତରେ ନ ଦେଇ ସେ କୋରଡ଼ରେ ଚଉତିଗୁଡ଼ାଇ କରି ଆଣି ଥୋଇଦେଇଯାଇଛି । କିନ୍ତୁ ପରେ ଇନ୍ଦିରା ଓ ଅନ୍ୟାନ୍ୟ ପିଲାଙ୍କୁ ପଚାରିପଚାରି କରିବାରେ ସେମାନେ ସେ କଥା କିଛି ଜାଣନ୍ତି ନାହିଁ ବୋଲି କହିଲେ ।

ପିଲାଙ୍କର ଏ ସବୁ କାଣ୍ଡ ତାଙ୍କର ବାପା ବା ମାଆ କେହି ଜାଣନ୍ତି ନାହିଁ । ତାଙ୍କର ମାତା, ଗୁଡ଼ାଏ ପିଲାପିଲିକା ଧରି ରନ୍ଧାବଢ଼ା ଓ ପିଲାଙ୍କର କାମଧନ୍ଦା କରୁକରୁ ତାଙ୍କୁ ବେଳ ମିଳେନାହିଁ । ପିତା ହରିବାବୁ ମଧ୍ୟ ବଡ଼ କାର୍ଯ୍ୟବ୍ୟସ୍ତ ଲୋକ । ପୁଅଝିଅଙ୍କର ଦୈନନ୍ଦିନ ଖବର ରଖିବାକୁ ତାଙ୍କୁ ବେଳ କାହିଁ ? ସେ ତ ଘରକୁ ଫେରୁ ଫେରୁ ବହୁତ ରାତି ହୋଇଯାଏ ! ସେତେବେଳକୁ ପିଲାଏ ଖାଇପିଇ ନଘୋଡ଼ ନିଦରେ ଶୋଇପଡ଼ିଥାଆନ୍ତି । ତାପରେ ଏ ପିଲାଙ୍କ ଖେଳ ମାତ୍ର । ପିଲାଏ ତ ଖେଳି ଖେଳି ଲୁଗା ଚିରନ୍ତି, ଦେହ ଖଣ୍ଡିଆ କରନ୍ତି, ଏହା ତ ନିତିଦିନିଆ କଥା । ଏହା ପୁଣି କି ଗୋଟାଏ ବଡ଼ ଖବର ଯେ ତାଙ୍କୁ କିଏ ଏ ବିଷୟ ଜଣାଇବ ?

ହରିବାବୁ ପ୍ରଥମେ 'ମୁକ୍ତାର'ଙ୍କ ଘରେ ମ୍ୟାନେଜର ଥିଲେ । ମୁକ୍ତାରଙ୍କ ପୁଅ ତ ନିଶା ଜୋର୍‌ରେ ଦେଉଳିଆହୋଇ ଶେଷରେ ଅଦ୍ଭୁତ କାଣ୍ଡ ସବୁ ଘଟାଇ ଜେଲ୍‌ଗଲେ । ଜେଲରୁ ଫେରି କୁଆଡ଼େ ଉଭେଇଗଲେ ଯେ କେହି ତାଙ୍କର ଠେର୍ ବି ପାଇଲେ ନାହିଁ । ଜମିବାଡ଼ି ସବୁ ନିଲାମ ହୋଇ ପର ହାତକୁ ଚାଲିଗଲା । ଭଙ୍ଗାରୁଜା କୋଠା ଖଣ୍ଡିକ ବି ନିଲାମରେ ଯାଇଛି । କିନ୍ତୁ ତାକୁ ଅନ୍ୟ ଜଣେ ତାର ଭାଗଅଛି କହି ମାଡ଼ିବସିଥିବାରୁ ନିଲାମ ନେଇଥିବା ବ୍ୟକ୍ତି ଅନ୍ୟ ଜଣେ ଲୋକଙ୍କୁ ଅଳ୍ପ ଦାମରେ ବିକିଦେଇସାରିଲେଣି ।

ମୁକ୍ତାରଙ୍କ ପୁଅ ପୀତା କେତେ ଆଦରରେ ବଢ଼ିଥିଲା । ବାପାଙ୍କର ସେ ଏକମାତ୍ର ପୁଅ । ତାକୁ ଅତିମାତ୍ରାରେ ସୁଖପାଇ ବାପ ଖରାପ କରିଦେଲେ । ସେ ବଡ଼ ଚାଲାକ ପିଲା । ଭଲ ବାଟରେ ଯାଇଥିଲେ ବର୍ତ୍ତମାନ କେତେ ବଡ଼ ହୋଇଥାଆନ୍ତା । ସେ ତାଙ୍କର ଘରେ ଚାକିରି କରି ଜୀବନ କଟାଇଥାଆନ୍ତେ । ଏବେ ବାଧହୋଇ, ବାରଜାଗା ବୁଲି ବୁଲି, ଯାହାର-ତାର ସାମୟିକ ବ୍ୟବସାୟରେ ଦେଖି ନିଜର ଗୁଜୁରାଣ ମେଣ୍ଟାଇବା ଛଡ଼ା ତାଙ୍କର ଅନ୍ୟ ଉପାୟ ନାହିଁ । ପୀତବାସଙ୍କର ଅବସ୍ଥା ଖରାପହୋଇ ସେ ନାହିଁ କରିବା ପର୍ଯ୍ୟନ୍ତ ସେ ତାଙ୍କ ପାଖରେ ଥିଲେ ।

ଶେଷବେଳକୁ ସେ ଯଦି ଇଚ୍ଛା କରିଥାଆନ୍ତେ ତାହାହେଲେ ହୁଏତ ଘରପୋଡ଼ିରୁ କୁଟାଖିଏ ପରି କିଛିହେଲେ ମାରି ଆଣି ପାରି ଥାଆନ୍ତେ । କିନ୍ତୁ ନିମକ-ହାରାମି ତାଙ୍କର ଜାତକରେ ନାହିଁ । ସେ ଭାବନ୍ତି, ସେ ଲୋଭରେ ନ ପଡ଼ି ଭଲକରିଛନ୍ତି । ଭଗବାନ ଖୁଦକାଞ୍ଜି ଦେଇ ତାଙ୍କ ପିଲାଙ୍କୁ ବଞ୍ଚାଇ ରଖିବେ ଓ ତାଙ୍କର ମଙ୍ଗଳ କରିବେ ।

# ସତର

ବସୁନ୍ଧରା ପଡ଼ିରହିଛି । ମଣିଷ ଅଳ୍ପ ଦିନ ପାଇଁ ଆସି ମୋର ମୋର କହି ନାନାପ୍ରକାର ଜଞ୍ଜାଳରେ ଘାରିହେଉଛି । ମାଲିମକଦ୍ଦମାରେ, ଦଙ୍ଗାହାଙ୍ଗାମାରେ ମାନସିକ ଅଶାନ୍ତି ଭିତରେ ଛଟପଟ ହେଉଛି । କିନ୍ତୁ ଇଞ୍ଚିଏ ଜମି ବି କେହି ସାଙ୍ଗରେ ନେଇପାରୁନାହିଁ, ତଥାପି ମଣିଷ ଲୋଭ ଛାଡ଼ିପାରୁନାହିଁ ।

ମଣିମାଙ୍କ ଜମିବାଡ଼ିରୁ କେତେକ ଚଞ୍ଚକ କରି ମୁକ୍ତାରେ ଜବରଦସ୍ତି ମାଡ଼ିବସିଥିଲେ । ଆଉ ଅନେକ ସମ୍ପତ୍ତି ନିଜେ କରିଥିଲେ । ପୁଅଙ୍କ ଦେଣା ପାଉଣା ପାଇଁ ସବୁ ନିଲାମରେ ଉଠି ଅନ୍ୟ ହାତକୁ ଗଲା । ଚଳନ୍ତି ସମ୍ପତ୍ତି ସବୁ ପାଞ୍ଚଲୋକ ମାଡ଼ିବସି ହାତପଇଠକଲେ ।

ମୁକ୍ତାରେ ପୃଥିବୀରୁ ଖାଲିହାତରେ ଫେରିଥିଲେ, କିନ୍ତୁ ତାଙ୍କର ଅତୃପ୍ତ ଆତ୍ମା ହୁଏତ ସେ ସମ୍ପତ୍ତି ପଛେ ପଛେ ବୁଲୁଥିଲା । ତାଙ୍କର ପ୍ରେତାତ୍ମା ହୁଏତ ନୀଳମଣି ନାମକ ଜଣେ ଲୋକକୁ ଆକ୍ରମଣକଲା । ନୀଳମଣି ବଂଶକୁ ଭୂତ ଲାଗିଲା ପରି ସେମାନେ ସେ ସମ୍ପତ୍ତି ପାଇଁ ପାଗଳ ହେଲେ ।

ପୀତବାସ ଫେରାର ହେବା ପରେ ତାଙ୍କର ଲେଖାଯୋଖାରେ ବଂଶଧର କହି ନିଜକୁ ଓ୍ୟାରିସ୍ ବୋଲାଇ ନୀଳମଣି ସେ ଘର ଦଖଲ କରି ବସିଲେ । ନୀଳମଣି ଦାବିକରନ୍ତି—ପୀତବାସବଂଶର କେହି ଲୋକ ପ୍ରଥମେ ପୁଅ ନଥିବାରୁ ତାଙ୍କ ପିତା କାଶୀଦାସଙ୍କୁ ପୁଅ କରିଥିଲେ । ଅବଶ୍ୟ ପରେ ତାଙ୍କର ପୁତ୍ର ଜନ୍ମ-ହେବାରୁ, କିଛି ଧନସମ୍ପତ୍ତି ଦେଇ କାଶୀଙ୍କଠାରୁ ଲେଖାଇନେଇ ତାଙ୍କୁ ତ୍ୟଜ୍ୟ ପୁତ୍ର କରିଥିଲେ । କିନ୍ତୁ ପୀତବାସଙ୍କ ବଂଶରେ ଆଉ କେହି ନଥିବାରୁ ସେ ସେହି ବଂଶର ଓ୍ୟାରିସ୍ । ସେ ପୁଣି ଦାବି କରନ୍ତି, ପୀତାଙ୍କ ନିଲାମ ହୋଇଯାଇଥିବା ଜମିର ମୋକଦ୍ଦମାରେ ତାଙ୍କ ବଂଶର କାହାକୁ ପକ୍ଷ କରିନଥିବାରୁ ସେ ଜମିବାଡ଼ି ଓ ଘରେ ତାଙ୍କର ଅଂଶ ଓ ଅଧିକାର ଅଛି । ପୀତବାସଙ୍କର ନିଲାମରେ ଯାଇଥିବା କେତେକ ଜମି ଜବର ଦଖଲ କରିବାକୁ ଯାଇ ସେ କେତେଥର ମାଡ଼ ଖାଇଲେ ଓ ଶେଷରେ ମକଦ୍ଦମାରେ ପଡ଼ି ସର୍ବସ୍ୱାନ୍ତ ହୋଇ ଜେଲ୍ ମଧ୍ୟ ଗଲେ ।

ଯେଉଁ ଶେଷର ମକଦ୍ଦମାରୁ ପ୍ରମାଣ ଅଭାବରେ ଖସି ଆସିଲେ, ସେ କାଗଜ ଗଣ୍ଡାକ କାଖରେ ଜାକି ନିଜର ଦାବି ସାବ୍ୟସ୍ତ କରିବାକୁ ଗାଁରେ ବୁଲି

ବୁଲ ପ୍ରଚାରକଲେ । ମକଦ୍ଦମା ଚଳାଇବାକୁ ପୀତବାସଙ୍କ ଘରର ପଥରପାହାଚ ଛାଡ଼, ଦୁଆର ଝରକା ଓ କାନ୍ଥର ଇଟା ସଂଗ୍ରହ କରି ବିକିକରିବାକୁ ଲାଗିଲେ, କାରଣ ଘରର ଆସବାପତ୍ର, ପେଡ଼ି, ଖଟ, ଆଲମାରି ପ୍ରଭୃତି ପୀତବାସ ଆଗରୁ ବିକିକରିଦେଇଥିଲେ ।

ମାଳମଣି, ଗୁମାସ୍ତା ହରିବାବୁଙ୍କୁ ପୀତାଙ୍କ ଜମିର କାଗଜପତ୍ର ସବୁ ମାଗିଲେ । ସେସବୁ ସେ ଦେଇନପାରିବାରୁ ଓ ତାଙ୍କୁ ମାଲିମକଦ୍ଦମାରେ ସାହାଯ୍ୟ ନକରିବାରୁ ତାଙ୍କର ସବୁଠାରୁ ବେଶି ରାଗ ହରିବାବୁଙ୍କ ଉପରେ । ପୀତା ମରିଛନ୍ତି ବୋଲି ପ୍ରମାଣ କରିବାକୁ ସେ ଶାସ୍ତ୍ରୀୟ ମତରେ ତାଙ୍କର ଶୁଦ୍ଧଶ୍ରାଦ୍ଧ କଲେ । କିନ୍ତୁ ହରିବାବୁ ସେଥିରେ ମଧ୍ୟ ଯୋଗ ନ ଦେଇ ପଛରେ ତାଙ୍କୁ ଥଟ୍ଟା ଠାପରି କଲେ । ସେ ଭାବିଲେ, ହୁଏତ ହରିବାବୁଙ୍କର ପୂର୍ଣ୍ଣ ବିଶ୍ୱାସ ପୀତା ଦିନେ ନା ଦିନେ ଫେରିବେ, ତେଣୁ ସେ କାଗଜପତ୍ରତକ ମାଡ଼ିବସିଛନ୍ତି--ପୀତା ଫେରିଲେ ତାଙ୍କୁ ସାହାଯ୍ୟକରି ମାଳମଣିଙ୍କୁ ସେ ଘରୁ ତଡ଼ିଦେବେ ।

ମାଳମଣି ସନ୍ଧ୍ୟାବାଘରୁ ଗୁଜବ ଶୁଣିଲେ—ଗୋଟିଏ କିଏ ବାଇଆ ଆସି ଭଙ୍ଗା ସ୍କୁଲର ବୋଡ଼ିଂ ହତା ଭିତରେ ଡହୁଛି । ସେ ବରାବର ଛପି ଛପି ପ୍ରକୃତ ଘଟଣା ବୁଝିବାକୁ ସେ ସ୍ଥାନର ଚାରିପଟେ ବୁଲିଲେ । ଦିନେ ପାଗଳାଟାକୁ ଦେଖି ସେ ଚମକିପଡ଼ିଲେ—ସଙ୍ଗେ ସଙ୍ଗେ ଚିହ୍ନି ପକାଇଲେ । ମନେ ମନେ ବିଚାରିଲେ, ସେ ପାଗଳଟାକୁ ପୂରା ଉଡ଼ାଇନଦେଲେ ସେଇଟା ତାଙ୍କର କଣ୍ଟା ହୋଇ ରହିବ । ସେଇଥିପାଇଁ ସୁବିଧା ପାଇବାକୁ ଅପେକ୍ଷାକଲେ । କିନ୍ତୁ ତାଙ୍କୁ ଦେଖି ସେ ପାଗଳଟା ଆଉ ବେଶି ବାହାରକୁ ନବାହାରି ଛେଉଁକା ହୋଇଯାଇ ସେ ବଣ ଭିତରେ କେଉଁଠି ଲୁଚିରହିଲା ।

× × × ×

ସ୍କୁଲ ପିଲାଙ୍କର ଭାରି ଆନନ୍ଦ, ଏ ବର୍ଷ ନୂଆ କରି ଥିଏଟର ହେବ । ଷ୍ଟେଟ ବଡ଼ ସବୁ କ୍ଲାସରୁ ପିଲାମାନେ ବଛାହୋଇ ଅଭିନୟ କରିବେ । ସ୍କୁଲ ପାଖକୁ ଲାଗି ରହିଥିବା ମୁକ୍ତାରଙ୍କ ପୂର୍ବ ପ୍ରଜାଡ଼ିହ ଖଣ୍ଡେ ଥିଏଟରର ପେଣ୍ଡାଲ ପାଇଁ ବଛାହେଲା । ଆଖପାଖ ଲୋକମାନେ ଏବଂ ପିଲାମାନଙ୍କ ଅଭିଭାବକମାନେ ଶିକ୍ଷକଙ୍କ ସଙ୍ଗେ ମିଶି ପେଣ୍ଡାଲ ପ୍ରଭୃତି ବାନ୍ଧିବାରେ ଲାଗିପଡ଼ିଲେ । ମାଳମଣିଙ୍କର ପୁଅ ବି ଅଭିନୟ କରିବ । ସେ ସବୁଠାରୁ ବେଶି ଖୁସିହୋଇ ଖମ୍ବ ପୋତା ପାଇଁ ନିଜେ ଗାତ ଖୋଳିବାରେ ଲାଗିଛି । ଏହି ସମୟରେ ରିହରସାଲ୍ କରି

ବାହାରଆସୁଥିବା ଦୁଇଟି ପିଲା ତାଙ୍କ ଆଖିରେ ପଡ଼ିଗଲେ । ସେ ଗାତ ଖୋଳା ବନ୍ଦ କରି ଠିଆହୋଇଗଲା । ଏ ଦୁଇଟି ହରିବାବୁଙ୍କର ପୁଅ ଓ ଝିଅ । ହରିବାବୁ ଓ ପୀତବାସଙ୍କ କଥା ମନେପଡ଼ି ତାଙ୍କର ଛାତି ଦମ୍ ଦମ୍ ହୋଇ ପଡ଼ିଲା ଉଠିଲା । ମାଟି ଖୋଳିବାକୁ ଧରିଥିବା ସାବଳଟି ହାତରୁ ଦୁମ୍ କରି ତଳେ ଖସିପଡ଼ିଲା ।

ପିଲା ଦୁଇଟିଙ୍କର ଆଖି ତାଙ୍କୁ ଶାଗୁଣାର ଆଖିପରି ଜକ୍ ଜକ୍ ଦିଶିଲା । ତାଙ୍କୁ ଲାଗିଲା ଯେପରି ତାଙ୍କ ବିରୁଦ୍ଧରେ ଗୋଟିଏ ଭୀଷଣ ଷଡ଼ଯନ୍ତ୍ର ଚାଲିଛି ଓ ହରିବାବୁ ନିଜେ ସେ ଷଡ଼ଯନ୍ତ୍ର ପଛରେ ଅଛନ୍ତି । ଯେଉଁଠି ପେଣ୍ଡାଲ ବନ୍ଧାହେଉଛି ସେ ଜମି ଥିଏଟର ବାହାନାରେ ବି ସେ ପୀତାଙ୍କ ପାଇଁ ଦଖଲ କରିନେବେ ଓ ପୀତାଙ୍କୁ ଦର୍ଶାଇ କଚେରୀରେ ପ୍ରମାଣ କରାଇ ପୀତାଙ୍କ ଘରୁ ତାଙ୍କୁ ବେଦଖଲ କରିବେ ।

ହରିବାବୁ ତ ତାଙ୍କୁ ଆଦୌ ସହି ପାରନ୍ତି ନାହିଁ, ସେ ମଧ୍ୟ ହରିବାବୁଙ୍କୁ ଦେଖିଲେ ବାଟ ଆଡ଼େଇ ଚାଲିଯାଆନ୍ତି । କେବେ ତାଙ୍କ ସାମନାରେ ପଡ଼ିଗଲେ ତାଙ୍କର ରୁକ୍ଷ ଚାହାଣି, କଣିକିଆ ମୁରୁକି ହସ ଓ 'ହଇରେ ମଣି' ଡାକରେ ତାଙ୍କର ତାଳୁକ ଶୁଖିଯାଏ । ତେଣୁ ହରିବାବୁ ଗୋଟିଏ କିଛି ଷଡ଼ଯନ୍ତ୍ର କରିଥିଲା ପରି ତାଙ୍କୁ ଜଳଜଳ ଦିଶିଲା ।

ଥିଏଟର ରାତି । ସମସ୍ତେ ଥିଏଟର ଦେଖିଯିବାକୁ ସଜବାଜ ହେଉଛନ୍ତି । କିନ୍ତୁ ମଣି ତାଙ୍କର ଗୁପ୍ତି ଛୁରୀଟା ଲୁଚାଇକରି ପଥରରେ ଘଷି ପକାଇବାରେ ଲାଗିଛନ୍ତି । ସେ ଆଗରୁ ଲକ୍ଷ୍ୟ କରିଛନ୍ତି, ପାଗଳଟି ହରିବାବୁଙ୍କ ପିଲାଙ୍କୁ ଦେଖିଲେ ଖୁସିହୁଏ । ପିଲାମାନେ ଯେଉଁ ଗଛ ମୂଳେ ଖେଳନ୍ତି ସେଠି ଲୁଚାଇକରି ଆଣି କଅଣ ରଖେ ଓ ବେଳେବେଳେ ଚାରିଆଡ଼କୁ ଚାହିଁ ସେଠାରେ ଆସି ଏକୁଟିଆ ବସେ । ହୁଏତ ଚିଠିପତ୍ର ଦିଆନିଆ କରି ଗୋପନରେ ସେ ପିଲାଙ୍କଦ୍ୱାରା ହରିବାବୁଙ୍କ ସଙ୍ଗେ ସମ୍ପର୍କ ରଖି କିଛି ଗୋଟାଏ ଯୋଜନା କରୁଛି !

ଅବଶ୍ୟ ପାଗଳ ଚାଲିଗଲା ପରେ, ସେ—ସେ ସ୍ଥାନକୁ ଯାଇ ଚିଠିପତ୍ର ଖୋଜନ୍ତି, କିନ୍ତୁ ଫଳ ପୁଡ଼ିଆଟାଏ ବା ମାଟି କଣ୍ଢେଇଟାଏ ଛଡ଼ା ଆଉ କିଛି ପାଇନାହାନ୍ତି । ହୁଏତ ସେଗୁଡ଼ିକ କିଛି ସଙ୍କେତ ପରି କାମ କରୁଥିବ ! ଫଳ ପ୍ରଭୃତି ଦେବାର ଜାଣିଲେ ହରିବାବୁ ସେ ଚିଠି ଅନ୍ୟ କେଉଁଠି ଲୁଚାଇ ରଖିଛି

ବୋଲି ଜାଣିପାରୁଥିବେ କି ରାତିରେ କେତେବେଳେ ଆସି ତା ସଙ୍ଗେ କଥାବାର୍ତ୍ତା ହୋଇ ଯାଉଥିବେ ।

ଆଜି ପିଲ୍ଲମାନେ ଥିଏଟର ଦେଖିବାକୁ ଆସିଛନ୍ତି, ପାଗଳା ନିଶ୍ଚୟ ଜାଣିଥିବ ଓ ସେମାନେ ଫେରିଲାବେଳକୁ ସେଠାରେ ନିଶ୍ଚୟ ରହିଁ ରହିଥିବ । ଆଜି ସେ ଗଛ ପାଖରେ ସୁବିଧା ଦେଖି ଜଗିରହିବେ । ପାଗଳା ଆସିଲାବେଳକୁ ତା ଛାତିକୁ ଲକ୍ଷ୍ୟ କରି ଛୁରୀ ଛାଡ଼ିବେ । ହରିବାବୁ ତ ପିଲାଙ୍କୁ ନେବାକୁ ଆସିବେ —ତେଣୁ ପ୍ରମାଣ ଅଭାବ ହେବନାହିଁ । ସେ ଖୁଣୀମକଦ୍ଦମାରେ ପଡ଼ି ମାମୁଁ ଘରକୁ ଯିବେ । ଏକା ଗୁଳିକେ ଦୁଇଟିଯାକ ଚଢ଼େଇ ମରିବେ । ଏ ସୁବର୍ଣ୍ଣସୁଯୋଗ ଛାଡ଼େ କିଏ ? ସେ ତାଙ୍କ କାର୍ଯ୍ୟରେ ସଫଳ ହେଲେ ଚିରଦିନପାଇଁ ଶତ୍ରୁଶୂନ୍ୟ ହେବେ । ଅଲବତ୍ ସବୁ ଜମିବାଡ଼ି ତାଙ୍କୁ ମିଳିଯିବ ।

ଥିଏଟର ସରିଲା । ହରିବାବୁଙ୍କ ପିଲା ଦିଓଟି ଘରୁ କିଏ ତାଙ୍କୁ ନେବାକୁ ଆସିଥିବ ବୋଲି କିଛି ସମୟ ଅପେକ୍ଷା କଲେ । ପିଲାଏ ଯେ ଯୁଆଡ଼େ ଯେଝା ଘରକୁ ଗଲେ । ବାଧ୍ୟରେ ଚାଲି ଚାଲି ହୋଇ ସେ ପିଲା ଦୁଇଟି ଆସି ସେ ବରଗଛର ପାଖାପାଖି ପହଞ୍ଚିଲେ । ଡରିଡ଼ରି ଧୀରେ ଧୀରେ ଚାଲିଥାଆନ୍ତି । ବରଗଛ ତଳର ଘୁପୁଘୁପୁଆ ଅନ୍ଧାର, ମୁହଁକୁ ମୁହଁ ଦିଶୁ ନାହିଁ । ହଠାତ୍ ଗୋଟିଏ କଅଣ ସର୍ କରି ତାଙ୍କ ମୁଣ୍ଡ ପାଖକୁ ଚାଲିଆସିବାର ଶବ୍ଦ ହେଲା । ଘୁନିଆରେ ଦୁହିଁଙ୍କ ହାତ ଛାଡ଼ିଗଲା ଓ ପୁଅପିଲାଟି ତଳେ ପଡ଼ିଯାଇ 'ଆଲୋ ବୋଉଲୋ, ମରିଗଲି ଲୋ', ବୋଲି ଗୋଟିଏ ଚିତ୍କାର ଛାଡ଼ିଲା । ସେ ଚିତ୍କାର ଶୁଣି ଝିଅଟି କାଲୁସ୍ତ ହୋଇ ଛିଡ଼ାହୋଇଗଲା ।

ସେତିକବେଳକୁ ପାଖ ଗଛରୁ କିଏ ଗୋଟିଏ ଭୟଙ୍କର ଡେଇଁଲା ପରି ଶବ୍ଦ ହେଲା ଓ କ୍ଷଣକ ମଧ୍ୟରେ ଡେଇଁବା ଲୋକ ତଳୁ ଉଠି ତଳେ ପଡ଼ିଥିବା ପିଲା ପାଖରୁ କଅଣ ଗୋଟିଏ ଭିଡ଼ି, ଦଉଡ଼ି ପଳାଇଲା ବେଳକୁ କାହା ଦେହରେ ବାଡ଼େଇହୋଇଯାଇ ଚିତ୍କାରଟାଏ କରି ପୁଣି ଦଉଡ଼ି ପଳାଇଲା ।

ଏ ଚିତ୍କାର ସବୁ କଅଣ—ଏ କଥା ଝିଅଟି ଭାବୁଛି—ଏହି ସମୟରେ କିଏ ଆସି ପୁଅକୁ ଉଠାଇ କାନ୍ଧରେ ପକାଇ ତା ହାତ ଧରି ଅସ୍ପଷ୍ଟ ସ୍ୱରରେ କହିଲା, "ଡରନା-ମା, ମୋ ସଙ୍ଗେ ଚାଲି ଘରକୁ ଯିବୁ" ।

କିଛି ବାଟ ମନ୍ତ୍ରମୁଗ୍ଧ ଭାବରେ ସେ ଲୋକ ପଛେ ପଛେ ଚାଲିଲା ପରେ ସେ ଭଲକରି ବୁଝିପାରିଲା ଲୋକଟା ତା ଭାଇକୁ କାନ୍ଧରେ ଧରିଛି । ତାର ମୁହଁ

ହଣୁ ନାହିଁ । ଘାଇର ପାଦ ତା ଦେହରେ ବେଳେବେଳେ ବାଜୁଥାଏ । ଘାଇର ଚେତା ନାହିଁ, ଇଁ କି ଚୁଁ ଶବ୍ଦ ନାହିଁ । ଘାଇର କଅଣ ହୋଇଛି ପଚାରିବାକୁ ତାର ବି ସାହସ ନାହିଁ । ସେ ଭାବିଲା ମା ଚାକରଟାକୁ ପଠାଇବାକୁ କହିଥିଲେ । ତାଙ୍କୁ ଡର ଲଗିଲା ବେଳକୁ ଚାକରଟା ତାଙ୍କ ପାଖରେ ପହଞ୍ଚି ତାଙ୍କୁ ବିପଦରୁ ରକ୍ଷା କରି ଘରକୁ ନେଇ ଯାଉଛି । ସେ ଥରେ ଦୁଇଥର ବାଟରେ କଅଣ ପଚାରିବାକୁ ଚେଷ୍ଟା କଲା, କିନ୍ତୁ ଲୋକଟା ପୁଣି ନିରୁତ୍ତର, ସେ ଖାଲି ଆଗେଇ-ଚାଲିଥାଏ ।

ସେମାନେ ଆସି ହରିବାବୁଙ୍କ ଦୁଆରେ ପହଞ୍ଚିଲେ । ପିଣ୍ଡାକୁ ଉଠି, ଝିଅ ଦୁଆର ବାଡ଼େଇଲା । ଦୁଆର ଖୋଲିଲା । ହରିବାବୁ ପିଲାଙ୍କୁ ଅପେକ୍ଷା କରୁଥିଲେ । ଦାଣ୍ଡପିଣ୍ଡାକୁ ଲଣ୍ଠନଟିଏ ଧରି ଚାଲିଆସିଲେ । ଝିଅ ଘର ଭିତରକୁ ପଶିଗଲା । ଲୋକଟାର କାନ୍ଧ ଉପରେ ପୁଅକୁ ଏପରି ଅବସ୍ଥାରେ ଦେଖି ସେ ବ୍ୟାକୁଳ ହୋଇଉଠିଲେ । ସେ ଲୋକଟାର ମୁହଁକୁ ମଧ୍ୟ ଚାହିଁଲେ । କିମ୍ଭୂତକିମାକାର ରୂପ ଦେଖି ପାଗଳଟା ବୋଲି ଜାଣିପାରି ଚମକିପଡ଼ିଲେ । କିନ୍ତୁ କଥାବାର୍ତ୍ତା ହେବାକୁ କିମ୍ବା ପ୍ରଶ୍ନ କରିବାକୁ ଆଉ ତର କାହିଁ ।

ହରିବାବୁ ଦୁଇ ହାତରେ ପୁଅକୁ ଟେକି ନେଇ ଘର ଭିତରେ ପଶିଲେ । ପୁଅ ଥିଏଟରରେ ବୁଢ଼ା ବେଶ ପିନ୍ଧି ଅଭିନୟ କରୁଥିଲା । ତାର ମୁହଁଯାକ ଦାଢ଼ି, ମୁଣ୍ଡରେ ପଗଡ଼ି । ଛୁରୀଟା ମୁଣ୍ଡ ପାଖରେ ବାଜି ପଗଡ଼ିର ଗୋଟେ ପଟେ ଏପଟ ସେପଟ ଫୁଟାଇ ଦେଇଛି, କିନ୍ତୁ ମୁଣ୍ଡ ଭିତରକୁ ପଶିନାହିଁ । ପଗଡ଼ି ଯୋଗୁଁ ପୁଅ ରକ୍ଷା ପାଇ ଯାଇଛି । ପୁଅକୁ ଖଟ ଉପରେ ଶୁଆଇଦେଇ ମୁହଁରେ ପାଣି ମରା-ମରି କରି ହରିବାବୁ ଡାକ୍ତରଙ୍କ ପାଖକୁ ଲୋକ ପଠାଇଲେ ।

ଡାକ୍ତର ଆସି ରୋଗୀକୁ ପରୀକ୍ଷା କରି ତା ପାଖରେ ବସିରହିଲେ । ରୋଗୀକୁ ଗରମ ଦୁଧ ଖୁଆଇବାର ବ୍ୟବସ୍ଥା କଲେ । ଔଷଧ ଇଞ୍ଜେକ୍‌ସନ ଦେଲେ । ପୁଅ ଡରରେ ଛାନିଆ ହୋଇ ଅଚେତ ହୋଇଯାଇଛି । ମୁଣ୍ଡରେ ଛୁରୀଟି ଅଳ୍ପ ଘଷି ହୋଇ ଯାଇଛି । କ୍ଷତ ବଡ଼ ନୁହେଁ କି ସାଙ୍ଘାତିକ ନୁହେଁ । ସେ ଶୀଘ୍ର ଚେତନା ଲାଭ କରିବ ବୋଲି ସାନ୍ତ୍ୱନା ଦେଇ କ୍ଷତ ଉପରେ ଔଷଧ ଓ ତୁଳା ଦେଇ ବାନ୍ଧିସାରି ସେ ଲେଉଟିଗଲେ । ଡାକ୍ତର ଗିବା ପରେ ପରେ ପୁଅ ଆଖି ମେଲାଇ ଜୁଳୁଜୁଳୁ କରି ଚାହିଁଲା ଓ ଅଳ୍ପ ସମୟ ପରେ ଭଲରେ କଥାବାର୍ତ୍ତା କଲା ।

ପୁଅଝିଅ ସେ ଘଟଣା ବିଷୟରେ ଯେତିକ ଜାଣିଥିଲେ ସେତିକ କହିଲେ । ସେଥିରୁ ବେଶିକିଛି ବୁଝାଗଲା ନାହିଁ । ତୀରଟା ନାହିଁ, ତୀର ମାରିବା ଲୋକ ହୁଏତ ବଡ଼ ମଣିଷଟିଏ ଭାବି ଗୁଣ୍ଡିକୁ ଲକ୍ଷ୍ୟ କରି ତୀର ମାରିଥିଲା । ତୀର ଯାହା ଦେହରେ ବାଜିଲା ସେ ବୁଢ଼ାବେଶ ହୋଇଥିଲେ ମଧ୍ୟ ଗ୍ରେଟପିଲା ଓ ଅଳ୍ପ ଉଚ୍ଚ ହୋଇ-ଥିବାରୁ ତା ମୁଣ୍ଡ ପଗଡ଼ିରେ ବାଜିଲା । ତୀର ମାରିବା ଲୋକ ଗଛ ଡାଳରେ ବସି ସିଧା ତୀର ଫୋପାଡ଼ିଛି । ପିଲାଟା ପଡ଼ିଯିବା ପରେ ଗଛରୁ ଡେଇଁପଡ଼ି ତୀରଟା ପଗଡ଼ିରୁ ଭିଡ଼ି ପ୍ରମାଣଟା ଲୁଚାଇବାକୁ ତୀରଟି ଧରି ପଳାଇଯାଉଯାଉ ଅନ୍ୟ ଲୋକ ଦେହରେ ବାଜି ଚକ୍କାରଟାଏ କରି ପଳାଇଯାଇଛି ।

ଚାକରଟା ପିଲାଙ୍କୁ ଆଣିବାକୁ ଯାଇଥିଲା, କିନ୍ତୁ ଥିଏଟର ଦେଖୁ ଦେଖୁ ଗୋଟିଏ କଣରେ ଶୋଇପଡ଼ିଥିଲା । ଥିଏଟର ଭାଙ୍ଗିବା ପରେ ପିଲାଙ୍କୁ ଖୋଜି ସେମାନଙ୍କୁ ନପାଇବାରୁ ପଛରେ ଆସି ଘରେ ପହଞ୍ଚିଲା ।

ଚାକରକୁ ଦେଖି ଝିଅ କହିଲା, "ବାପା, ମୁଁ ଭାବିଥିଲି ଆମ ଚାକରଟା ଆମକୁ ସେଠାରୁ ସାଙ୍ଗରେ ଆଣି ଆସିଥିଲା ବୋଲି । କିନ୍ତୁ ଚାକର ତ ଏବେ ଆସିଲା ! ତେବେ ଆମକୁ କିଏ ସାଙ୍ଗରେ ଆଣିଥିଲା ଓ ସେ ଲୋକଟା କିଏ ? ସେ ଗଲା କୁଆଡ଼େ ?"

ସେ ଲୋକକୁ ତ ଭଲକରି କେହି ଦେଖି ନାହାନ୍ତି, ତା କଥା ବି ବିଚାରିବାକୁ ସମୟ କାହାର ଥିଲା ? ସେ ତ ପୁଅକୁ ହରିବାବୁଙ୍କ ହାତକୁ ବଢ଼ାଇଦେଇ ପିଣ୍ଡାର ଖୁଣ୍ଟ ଆଉ ପଟକୁ ଘୁଞ୍ଚିଯାଇଥିଲା । ସେ ଅଛି କି ନାହିଁ ଦେଖିବାକୁ ଆଲୁଅ ଧରି ସମସ୍ତେ ଦାଣ୍ଡପିଣ୍ଡାକୁ ଆସିଲେ । ଝିଅ ଆଗେ ଆଗେ ଚାଲିଥିଲା । ସେ ଲୋକଟା ସେତିକିବେଳକୁ ଦାଣ୍ଡପିଣ୍ଡାରେ ଗୋଟେ କଣକୁ ଆଉଜି ଠିଆହୋଇରହି ଘର ଖବର ସବୁ ଶୁଣୁଥିଲା । ଝିଅକୁ ଦେଖିବା ସଙ୍ଗେ ସଙ୍ଗେ ପିଣ୍ଡା କଣରୁ ବାହାରିଆସି ଝିଅଟିକୁ କୋଳ କରି ମୁଣ୍ଡରେ ହାତ ବୁଲାଇ ଦେଇ କହିଲା, "ଭାଇ ତ ଭଲ ହୋଇଗଲାଣି—ଏଣିକି ଆଉ ଡରିବନିତ ? ଭଗବାନ ତୁମ ଦୁହିଁଙ୍କୁ ଭଲରେ ରଖନ୍ତୁ ।"

ଏତିକି କହି ଦାଣ୍ଡପିଣ୍ଡାରୁ ଖପ୍ କରି ଡେଇଁପଡ଼ି ଦଉଡ଼ି ଦଉଡ଼ି ଯାଇ ଅନ୍ଧାରରେ ମିଶିଗଲା । ତାକୁ ଭଲକରି ଦେଖି ପ୍ରଶ୍ନ ପଚାରିବାକୁ ସେ କାହାକୁ ସମୟ ଦେଲା ନାହିଁ ।

କିନ୍ତୁ ଗାଁ ମୁଣ୍ଡରୁ ଆସୁଥିବା ତାର ପୂର୍ବପରିଚିତ ବିକଟାଳ ହସଟାଏ ଶୁଣି ସେ କିଏ ତାହା ଝିଅଟି ଭଲକରି ବୁଝିପାରିଲା ।

ତାପରେ ସ୍କୁଲକୁ ଗଲାବେଳେ ସେମାନେ ଭଙ୍ଗା ଘର ଆଡ଼କୁ ଚାହାନ୍ତି । କୋରଡ଼ରେ ତାର ସନ୍ଧାନ ଖୋଜନ୍ତି, କିନ୍ତୁ ପାଗଳାକୁ ଆଉ ଦେଖନ୍ତି ନାହିଁ । ସେ ଘଟଣା ପରେ ସତ୍ୟବାଦୀରେ ଆଉ କେହି ମଧ୍ୟ ସେହି ପାଗଳକୁ ଦେଖିବାକୁ ପାଇନାହାନ୍ତି । ସତ୍ୟବାଦୀର ସେହି ପାଗଳା ବିଷୟ ନେଇ ଲୋକଙ୍କ ଭିତରେ ବହୁ ତର୍କ ବିତର୍କ ଚାଲିଲା, କିନ୍ତୁ ତାଙ୍କ ବିଷୟରେ କେହି କୌଣସି ଘଟଣା ଠିକ୍ କରି କହି ପାରିଲେ ନାହିଁ ।

ହରିବାବୁଙ୍କର ମଣିମାଙ୍କ ସଙ୍ଗେ ଦେଖାହେଲା । କଥା ହେଉ ହେଉ କଥାପ୍ରସଙ୍ଗରେ ସେ ପାଗଳା ବିଷୟ ଉଠିଲା । ମଣିମା ପ୍ରଥମରୁ କିଛି କହିଲେ ନାହିଁ, କିନ୍ତୁ ପାଗଳା କଥା ପଡ଼ିବାରୁ ଟିକିଏ ଚକିତ ହେଲାପରି ଦେଖାଗଲେ ଓ ତାପରେ ଖୋଲିକରି ସବୁ କଥା ତାଙ୍କ ଆଗରେ କହିଲେ । ଭଙ୍ଗା ବୋଡ଼ିଂରେ ରହିବା ପୂର୍ବରୁ ପାଗଳ ପରି ଦିଶୁଥିବା ପୀତବାସ ସିଧା ଗାଡ଼ିରୁ ଓହ୍ଲାଇ ମଣିମାଙ୍କ ଘରକୁ ଆସି ତାଙ୍କୁ କୁଣ୍ଢାଇପକାଇ କାନ୍ଦିଲେ । ମଣିମା ତାଙ୍କୁ ଶାନ୍ତି ସାରିବା ପରେ ସେ ତାଙ୍କର ଓ ତାଙ୍କ ବଂଶର ଦୋଷ ପାଇଁ ତାଙ୍କଠାରେ କ୍ଷମା ମାଗିଲେ । କିଛି ସମୟ ଏଣୁତେଣୁ କଥାବାର୍ତ୍ତା ପରେ ମଣିମାଙ୍କ ପୁଅଝିଅ ସବୁ କାହାନ୍ତି ଓ କଅଣ କରୁଛନ୍ତି ବୋଲି ପଚାରିଲେ । ମଣିମାଙ୍କର କେହି ପିଲାପିଲି ନାହାନ୍ତି ବୋଲି ଶୁଣି ଥକ୍କା ମାରି ବସିପଡ଼ିଲେ । ବସି ବସି ଦୀର୍ଘଶ୍ୱାସ ମାରିଲେ ।

ତାଙ୍କର ପିଲାଙ୍କ ପ୍ରତି ମମତା କଥା ମଣିମା ବୁଝିପାରିଲେ । ଜନ୍ମ ମାଟି ପ୍ରତି ଆକର୍ଷଣ ମଧ୍ୟ ଜାଣିପାରିଲେ । ତାଙ୍କୁ ତାଙ୍କର ଘର, ଜମିବାଡ଼ି ସବୁର ସମ୍ବାଦ ଶୁଣାଇ ତାଙ୍କ ଶୁଦ୍ଧଶ୍ରାଦ୍ଧ ସମାପନ କରିଥିବା ମଣିଙ୍କ ବିଷୟ ବିଶଦ ଭାବରେ ବୁଝାଇ ମଣିଙ୍କ ପ୍ରତି ସତର୍କ ଦୃଷ୍ଟି ରଖି ଚଳିବାକୁ ଉପଦେଶ ଦେଲେ । ହଠାତ୍ ଗ୍ରାମକୁ ଯିବାକୁ ବାରଣକଲେ ।

ସେ ଜନ୍ମମାଟିର ମମତା ଛାଡ଼ି ହଠାତ୍ ପୁଣି ଅନ୍ୟତ୍ର ଯିବାକୁ ରାଜି ହେଲେ ନାହିଁ । ଶେଷରେ ପାଗଳା ବେଶ ଧରି ଖଣ୍ଡିଆ ବୋଡ଼ିଂରେ ଲୁଚି କରି ରହିଲେ । ମଣିମା ସିଦ୍ଧବକୁଳଙ୍କ ପାଖକୁ ଗଲାବେଳେ ଗୋଟିଏ ଖାଦ୍ୟପୁଡ଼ିଆ

ସାଙ୍ଗରେ ନେଇକରି ଯାଆନ୍ତି । କବେଳା ଦେଖି ତାଙ୍କୁ ଡାକ ପୁଡ଼ଆଟି ଦେଇ-ଆସନ୍ତି । ସେତିକ ପାଇ ପୀତବାସ ସେଠାରେ ଜୀବନ ଧରି ଥାଆନ୍ତି ।

ସେ ମଣିମାଙ୍କୁ ବି ନକଚ୍ଛି କୁଆଡ଼େ ଚାଲିଗଲେ । ତାଙ୍କର ନୂଆ କରି ପୁଣି ଦୁନଆ ଗଢ଼ି ଘରଦ୍ୱାର କରି ସମାଜରେ ରହିବା ଆଶା ବୋଧହୁଏ ଚରିଦନ ପାଇଁ ଭୁଟିଗଲା ।

# ଅଠର

ସବୁଠାରୁ ଧନସମ୍ପତ୍ତି ଗୋଟିଏ ବଡ଼ ମୋହ । ସେ ମୋହଗ୍ରସ୍ତ ଲୋକ ସମସ୍ତ ପ୍ରକାର ହିତାହିତ ଜ୍ଞାନ ଭୁଲି ଏକପ୍ରକାର ପାଗଳାମିରେ ନଜକୁ ବୁଡ଼ାଇ ରଖେ । ମୁକ୍ତାର ବଂଶର ଓ୍ୟାରସ୍ ବୋଲିଉଥିବା ମାଳମଣି ଖୁବ୍ ବଳିଷ୍ଠ ଚେହେରାର ଲୋକ । ସବୁ କାମକୁ ସେ ଧୁରନ୍ଧର ଥିଲେ । ଅଳସୁଆ ନୁହଁ କି ନଶାଖୋର ନୁହନ୍ତି । ସେ ସ୍ପଷ୍ଟବାଦୀ ଓ ମେଳାପି ଲୋକ ଥିଲେ । ଗ୍ରାମର ସବୁ ଯାନଯାତାରେ ମଉଜ ମଜଲସ୍‌ରେ ସେ ଆଗୁଆ ହୋଇ ବାହାରୁଥିଲେ । ସେ ଥିଲେ କୌଣସି କାମ ଅଟକି ଯାଏ ନାହିଁ । ତାଙ୍କ ସଂସାର ଚଳାଇ ସମସ୍ତଙ୍କର ସଙ୍ଗେ ମିଳମିଶି ସେ ଏକପ୍ରକାର ସୁଖରେ ଚଳୁଥିଲେ । କନ୍ତୁ ପୀତାଙ୍କ ଜେଲ୍ ଘଟଣା ପରେ ତାଙ୍କ ମୁଣ୍ଡରେ ମୁକ୍ତାରଙ୍କ ଭୂତ ପଶିଲା । ଧନ-ମୋହରେ ତାଙ୍କ ସ୍ୱଭାବ, ଚରିତ୍ର ସବୁ ଏକାବେଳେକେ ବଦଳିଗଲା । ତାଙ୍କ ସମ୍ବନ୍ଧରେ ବହୁତ ପ୍ରକାର ଗୁଜବ ଶୁଣାଗଲା । ଟ୍ରେଟ ଟ୍ରେଟ ହାତସଫାଇରେ ମଧ୍ୟ ସେ ପାରଙ୍ଗମ ହୋଇଉଠିଲେ ।

ସତ୍ୟବାଦୀ ବନବିଦ୍ୟାଳୟର ଦୁଇଟା ଛାତ୍ରବାସରେ ସେତେବେଳେ ପାଞ୍ଚ ଛଅ ଶହ ପିଲା ରହୁଥାନ୍ତି । ପିଲାଙ୍କ ପାଇଁ ହେଉଥିବା ରନ୍ଧାବଡ଼ାର ତଦାରଖ ନେବା ପାଇଁ ପ୍ରଧାନପାଚକ ବା ମୁଖୁଣିଆ ଭାବରେ ମାଳମଣିଙ୍କୁ ନଯୁକ୍ତ କରା-ଯାଇଥିଲା । ସେ ଶିକ୍ଷକ ଓ ଛାତ୍ରମାନଙ୍କର ସମସ୍ତ ଖାଦ୍ୟର ତଦାରଖି କରୁଥିଲେ ।

ଦିନେ ରାତିରେ ଡାଇନଂ ହଲ୍‌ର ଗୋଟେପଟକୁ ସ୍କୁଲ ସମ୍ପାଦକ ଗୋପବନ୍ଧୁ, ପ୍ରଧାନଶିକ୍ଷକ ନୀଳକଣ୍ଠ ଓ ଛାତ୍ର ବାସ ପାଳକ ହରିହର ଖାଇ ବସିଲେ । ତାଙ୍କ ଆଗରେ ରୁଟି ଓ କ୍ଷୀରି ବଢ଼ାଗଲା । ନୀଳକଣ୍ଠ ସେ କ୍ଷୀରିକୁ

ଅଳ୍ପ ଟିକଏ ଚୁଖିଦେଇ କହି ଉଠିଲେ, "ହରଭାଇନା, ଏ ଗୁଡ଼ାକ ଭୂଆ ମୂତ"। ଆଚାର୍ଯ୍ୟ ହରିହର ତାଙ୍କ କ୍ଷୀରପାତ୍ରଟିକୁ ପାଟି ନିକଟକୁ ନେଇ ଅଳ୍ପ ଚୁଖି ଦେଇ କହିଲେ, "ଆରେ କଣ୍ଠ, ଭୂଆ ମୂତରେ ଭୂଆ ମୂତ"। ତାପରେ ଦୁହେଁଯାକ ନିଜନିଜର କ୍ଷୀର ପାତ୍ରକୁ ଦୂରକୁ ଠେଲିଦେଲେ । ପାଖରେ ବସିଥିବା ଗୋପବନ୍ଧୁ ସେ ସବୁ ଦେଖିଲେ, କିନ୍ତୁ କିଛି ନ କହି ତାଙ୍କ କ୍ଷୀରତକ ପିଇବାକୁ ଲାଗିଲେ । ଅନ୍ୟ ଦୁହେଁ ତାହା ଦେଖି ବିବ୍ରତ ହୋଇ କହିପକାଇଲେ, "ଦାସେ ଆପଣେ, ଆପଣ କଣ କରୁଛନ୍ତି । ଭୂଆମୂତ ଗୁଡ଼ାକ ପିଇ ଯାଉଛନ୍ତି, ଯେ କଣ , ଆପଣଙ୍କୁ ଘୃଣା ଲାଗୁନି ? ତାପରେ ଏଗୁଡ଼ାକ ପିଇଲେ ତ ନିଶ୍ଚୟ ଦେହ ଖରାପ ହେବ । ଆପଣ କିପରି ସେଗୁଡ଼ାକ ନିର୍ବିକାର ଚିତ୍ତରେ ପିଇ-ଯାଉଛନ୍ତି ?"

ସେଥିରେ ଦାସେଆପଣେ ଅଳ୍ପ ହସିକରି କହିଲେ, "ତୁମେ ଦୁଇଟି ଏଡ଼େ ବଡ଼ ବଡ଼ ମଣିଷ । ଜଣେ ବନବିଦ୍ୟାଳୟର ଅଧ୍ୟକ୍ଷ, ଅନ୍ୟ ଜଣେ ଛାତ୍ରାବାସର ଆଚାର୍ଯ୍ୟ । ତୁମେ ଭାବୁ ନାହଁ ଯେ କ୍ଷୀର ସିଝି ସାରି ଶିକାରେ ଥିଲା । ଶିକାରୁ କାଢ଼ାହୋଇ ଆସି ତୁମମାନଙ୍କ ଆଗରେ ବଢ଼ାହେଲା । ଭୂଆ ଶିକା ଉପରକୁ ଗଲା କିପରି ? ଶିକାରେ ଗୋଡ଼ ବା ରଖିଲା କେଉଁଠି ? ଠିକ୍ କ୍ଷୀର ହାଣ୍ଡି ଭିତରକୁ 'ଏକ' ବା କଲା କିପରି ? ଏଡ଼େ ଏଡ଼େ ପଣ୍ଡିତଟିଏ ଲେଖାଏଁ ହୋଇଚ, ଏତିକ ଅକଲ ନାହିଁ ? କଥା ବୁଝିବା ନାହିଁ, ବିଚାରିବା ନାହିଁ ? ଜଣେ କହୁଛି 'ହରିଭାଇନା ଭୂଆମୂତ' ତ ଅନ୍ୟଜଣେ ତାର ଉତ୍ତର ଦେଉଛି 'କଣ୍ଠ' ଭୂଆ ମୂତରେ ଭୂଆ ମୂତ । ହଇଓ, ତୁମେ ପରା ମଣିଦାସକୁ ଚୁଖୁଣିଆ କରି ରଖିଚ ? ତା' କଥା ଭୁଲିଗଲ । ସେ ଚୁଖୁ ଚୁଖୁ ଯଦି ବେଶି କରି ଟିକଏ ଚୁଖିଦେଇ ଭରଣା କରିବା ପାଇଁ ସୁବିଧାରେ ଥିବା ପାଖ ଗଡ଼ିଆ ପାଣିରୁ ପୂରାଇ ସମାନ କରିଦେଇଥିବ—ତାହାହେଲେ କଣ ଏଥି ସ୍ୱାଦୁ ମିଳିବ ନାହିଁ ?"

ଗୋପବନ୍ଧୁଙ୍କ କଥା ଶୁଣିବା ପରେ ଦୁଇଜଣଯାକ ଶିକ୍ଷକ ହଲ୍‌ରେ ବସିଥିବା ପିଲାମାନଙ୍କ ଆଡ଼କୁ ଲକ୍ଷ୍ୟକରି ଲଜ୍ଜାରେ ମୁହଁ ତଳକୁ ପୋତି-ଦେଲେ । କିନ୍ତୁ ସେଇଦିନଠାରୁ ମଣିଦାସଙ୍କର ଚୁଖୁଣିଆ ଚାକିରିରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ଆଉ ଗୋଟିଏ ଘଟଣା । ଦିନେ ମଣିଦାସଙ୍କ ମାଉସୀ-ଝିଅ-ଭଉଣୀଙ୍କ ଘରେ କାନ୍ଦ ବୋବାଳି ଶୁଭିଲା । ବଡ଼ଝିଅଟି ଔଷଧ ନ ପାଇ ପୂର୍ବବର୍ଷ ମରିଯାଇଥିଲା ।

ଏବେ ସାନଝିଅଟି ସେହ୍ନିପର ରୋଗରେ, ଅକାଳରେ ଗୁଲିଗଲା । ଭଉଣୀଙ୍କ ସ୍ୱାମୀ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ଜେଲ ଦଣ୍ଡ ଭୋଗକରୁଥାନ୍ତି । ସରକାରଙ୍କ ଲୋକ ଆସି ତାଙ୍କ ଉପରେ ହୋଇଥିବା ଜୋରିମାନା ପାଇଁ ଘର କୋରଖ କରି, ଗାଈ ଗୋରୁ ବାସନକୁସନ ସବୁ ନିଲାମ କରି ନେଇଯାଇ-ଥାଆନ୍ତି । ଭଉଣୀ ପ୍ରାୟ ଅର୍ଦ୍ଧମୃତ ଅବସ୍ଥାରେ ପଡ଼ିଥାଆନ୍ତି । ଘରର ଗୋଟାଏ କଣରେ ତାଙ୍କର ବନ୍ଧାଛନ୍ଦା ଓ ଘର ଚଳାଇବା ପାଇଁ ପଇସାପତ୍ର ସହିତ ସ୍ଲେଟ କାଠ ବାକ୍ସଟିଏ ଥୁଆହୋଇଥାଏ । ନୀଳମଣି ଭଉଣୀଙ୍କୁ ଶାଂଖୋଳିବାକୁ ଯାଇ ତାଙ୍କ ଦୁଃଖରେ ସମବେଦନା ଜଣାଇ, ବାହୁନା ପକାଇ ବହୁତ କନ୍ଦାକଟା କଲେ । ତାଙ୍କର ସେ କେଉଁଠି ଅତି ଆଦରର ଭଉଣୀ । ପିଲାଦିନେ ତାଙ୍କୁ କେତେଥର କାନ୍ଧରେ ଏ ଗାଁକୁ ସେ ଗାଁ ନିଆଅଣା କରିଥିଲେ ଓ ସେହି ଗ୍ରାମର ତାଙ୍କର ଜଣେ ପିଲାଦିନର ଗୁହାଳ ସାଙ୍ଗଙ୍କ ସଙ୍ଗେ ନିଜେ ପ୍ରସ୍ତାବ ଦେଇ ବାହାଘର କରାଇଥିଲେ । ସେ ଭିଣୋଇ ଖୁବ୍ ବଡ଼ ପାଠୁଆ ହେଲେ । ପାଠ ପଢ଼ିସାରି ଗୁକିରି ବାକିରି ନ କରି ଦେଶସେବାରେ ଲାଗି ଥରକୁ ଥର ହସି ହସି ଦେଶ ପାଇଁ କାରାବରଣକଲେ । ଘରକଥା କି ପିଲାପିଲିଙ୍କ କଥା କିଛି ବୁଝି ପାରିଲେ ନାହିଁ ।

ଭଉଣୀଙ୍କର ଏ ଦୁଃଖରେ ମଣିଙ୍କର ଦୁଃଖ ହେବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ । ଭଉଣୀ ଆଖି ବନ୍ଦକରି ପଡ଼ି ରହି ଭାଇଙ୍କର ବାହୁନା ଶୁଣୁଥିଲେ । କେତେବେଳ ପରେ ବାହୁନା ବନ୍ଦ ହେଲା । ଭାଇ ପାଖରେ ବସିଥିଲେ । ସବୁ ତୁନିତାନ୍ ହେବା ପରେ, ଭଉଣୀ ଆଖି ଖୋଲି ଗୁହିଁଲା-ବେଳକୁ ସମବେଦନା ଜଣାଇସାରି ମଣି ଉଠି ଗୁଲିଯାଇଛନ୍ତି ଓ ତାଙ୍କ ସଙ୍ଗେ ସଙ୍ଗେ ହୁଏତ ତାଙ୍କ ଶେଷ ସମ୍ବଳ କାଠ ବାକ୍ସ ମଧ୍ୟ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଛି । ଭାଇ ଡକାହୋଇ ଆସିଲେ । ପୁଣି ସମବେଦନାରେ ଗ୍ଲେରକୁ ଧିକ୍କାର ବାହୁନାପକାଇଲେ; କିନ୍ତୁ ବାକ୍ସଟି ଆଉ ଫେରିଲା ନାହିଁ ।

ଗୃହବାସରେ ମଣି ଅତି ପାରିବାର । ସେ ଯେଉଁ ଗଛଟି ପୋତନ୍ତି ସେଥିରେ ସୁନା ଫଳେ । ସେଇ ଗାଁରେ ତାଙ୍କର ଆଉ ଗୋଟିଏ ମାଉସୀ-ଝିଅ ଭଉଣୀର ଘର । ତାଙ୍କର ଗୁରିଟି ପୁଅ । ଭିଣୋଇ ଜଣେ ଆଦର୍ଶବାଦୀ ସ୍କୁଲ ଶିକ୍ଷକ । ସେ ସତ୍ୟବାଦୀ ସ୍କୁଲରେ ଶିକ୍ଷକତା କରୁଥିଲେ । ସ୍କୁଲ ଭାଙ୍ଗିଯିବାପରେ ଗାନ୍ଧିବାଦୀଲୋକ ହିସାବରେ ସରକାରୀ ଗୁକିରିର ପ୍ରଲୋଭନ ଏଡ଼ି ଏଠି ସେଠି

ବେସରକାରୀ ସ୍କୁଲମାନଙ୍କରେ ଶିକ୍ଷକତା କରି ଚଳନ୍ତି । ସେଥିରେ ଯାହା ପାଆନ୍ତି ତାକୁ ସମ୍ବଳ କରି ସଂସାର ଚଳାଇ, ଏତେଗୁଡ଼ାଏ ପିଲାଙ୍କୁ ପାଠପଢ଼ାଇ ମଣିଷ କରିବା ତାଙ୍କ ପକ୍ଷେ କମ୍ କଷ୍ଟକର ନୁହେଁ ।

ପ୍ରଥମ ପୁଅଟିକୁ ନାମମାତ୍ର ବଡ଼ଭାଇଙ୍କୁ ପୁଅ କରି ଦେଇଥିଲେ, କିନ୍ତୁ ତାର ଶିକ୍ଷାର ଭାର ତାଙ୍କ ଉପରେ ହିଁ ନ୍ୟସ୍ତ ଥିଲା । ଦ୍ୱିତୀୟପୁଅଟି ପାଇଁ ତାଙ୍କର ଚିନ୍ତା । ତାକୁ ବେଶି ପାଠ ନ ପଢ଼ାଇ କୌଣସି ରୋଜଗାର ପନ୍ଥାରେ ଲଗାଇଲେ, ସେ ତାଙ୍କୁ ଆର୍ଥିକ ସାହାଯ୍ୟ କଲେ, ଅନ୍ୟ ପିଲାଗୁଡ଼ିକ ବି ପଢ଼ି ପାରନ୍ତେ । ତାପରେ, ସେ ପୁଅଟି ବଡ଼ ବାଧ୍ୟ ଓ ସୁଧାର ପିଲା । ସେ ଯାହା କହିବେ ବା ଯେଉଁ କାମରେ ଲଗାଇବେ ସେ ନିଶ୍ଚୟ ମନ ଦେଇ ସେ କାମ କରିବ ।

ତାକୁ କି କାମରେ ନିୟୋଜିତ କରିବେ, ସେ କଥା ଠିକ୍ କରିବାକୁ ତାଙ୍କର "ବାଣିଜ୍ୟେ ବସତେ ଲକ୍ଷ୍ମୀ,ସ୍ତଦର୍ଦ୍ଧଂ କୃଷିକର୍ମଣି···"ଶ୍ଳୋକଟି ମନେ-ପଡ଼ିଲା । ବାଣିଜ୍ୟ ସବୁଠାରୁ ଭଲ, କିନ୍ତୁ ସେଥିପାଇଁ ତ ମୂଳଧନ ଲୋଡ଼ା—ସେ ପଇସା କେଉଁଠୁ ପାଇବେ ? କିନ୍ତୁ କୃଷିରେ ତ ବେଶି ପଇସା ଦରକାର ନାହିଁ, ସେଥିରେ ଲଗାଇଲେ ଚଳିବ ।

ସେ ଏପରି ଭାବିଲାବେଳକୁ ମଣି ଦାସେ ଆସି ପହଞ୍ଚିଲେ ଓ ତାଙ୍କୁ ସାହସ ଦେଇ କହିଲେ, "ଆପଣ ପିଲାକୁ ସ୍କୁଲରୁ ଉଠାଇଆଣି କୃଷିରେ ଲଗାନ୍ତୁ । ମୁଁ ତାକୁ ସମସ୍ତ ସାହାଯ୍ୟ କରି କୃଷିବାସରେ ପୂରା ତାଲିମ କରିଦେବି । ସେ କଥା ଏଣିକି ମୋତେ ଲାଗିଲା ।"

ମାଷ୍ଟ୍ରେ ଖୁସିହୋଇ ସ୍କୁଲରୁ ନାମ କାଟି ପିଲାକୁ ଘେନି ଆସିଲେ । ତାଙ୍କର ଘର ବାଡ଼ପଟେ ନଈ ପର୍ଯ୍ୟନ୍ତ ଲାଗି ଏକ ବଡ଼ ପଡ଼ିଆ ଥିଲା । ସେଥିରେ କୃଷି ଆରମ୍ଭ କରିବାର ସ୍ଥିର ହେଲା । ଉମେଶ ବାର ଚଉଦ ବର୍ଷର ପିଲା । ସେ ମାମୁଁଙ୍କ ତତ୍ତ୍ୱାବଧାନରେ କୃଷିକାର୍ଯ୍ୟ ଆରମ୍ଭକଲା । ଜମିର ଚାରିପଟେ ବାଉଁଶ କଣ୍ଟାରେ ବାଡ଼ ବୁଜାଇ ଦିଆଗଲା । ବାଡ଼ ପାଖେ ପାଖେ କିଆ ଗଛ ପୋତା-ହେଲା । ବାଡ଼ ବୋଧହେଲା । ଏପଟେ ଗାଡ଼ିଆ ଓ ସେପଟେ ନଈରୁ ମାଟି ଖୋଳା ହୋଇ ବଗିଚାରେ ନୂଆ ମାଟି ପଡ଼ିଲା । ପ୍ରଥମେ ବର୍ଷାଋତୁରେ ଚଳିଆ ଫସଲ ଲାଗିବାର ସ୍ଥିର ହେଲା । ଖଡ଼ା, କାକୁଡ଼, ଜହ୍ନି, କଖାରୁ ପ୍ରଭୃତିର ମଞ୍ଜି

ଯୋଡାଗଲା । କଖାରୁ ବଡ଼ ଫଳ, ସେଥିରେ ଲାଭ ବେଶି, ତେଣୁ ଅନ୍ୟ ମଞ୍ଜି ତୁଳନାରେ କଖାରୁ ମଞ୍ଜି ଅଧିକ ସଂଖ୍ୟାରେ ମନ୍ଦା ମନ୍ଦା ହୋଇ ଲାଗିଲା ।

ଭଲ ପାଣିକ ଯୋଗୁଁ ହେଉ ବା ମାମୁଁ ଭଣଜାଙ୍କ କଠିନ ପରିଶ୍ରମ ଯୋଗୁଁ ହେଉ, ବହୁତ ବଡ଼ ବଡ଼ କଖାରୁ ଫଳ ବାଡ଼ସାକ ଗଡ଼ିଲା । ଲୋଭନୀୟ କଖାରୁ—ଅନ୍ୟ ଲୋକ ଦେଖିଲେ ତହିଁରେ ଆଖିପଡ଼ିଯିବ ବୋଲି ସେଗୁଡ଼ିକ ଉପରେ ପତର, ପାଳ ପ୍ରଭୃତି ପକାଇ ଘୋଡ଼ାଇ ଦିଆଗଲା । ମାମୁଁଙ୍କର ଘର ଟିକିଏ ଦୂରରେ । ତଥାପି ସେ ରାତିରେ ମଧ୍ୟ ଥରେ ଅଧେ ଆସି ଭଣଜାକୁ ସାଙ୍ଗରେ ଧରି ବାଡ଼ ଭିତରେ ବୁଲି ସବୁ ଠିକ୍‌ଠାକ୍ ଅଛି କି ନାହିଁ ଦେଖି-ଯାଆନ୍ତି ।

ବାଡ଼ର ଘରଆଡ଼କୁ ମୁହଁ କରି ଗୋଟିଏ ମାତ୍ର ଫାଟକ । ବାଡ଼ର ନଈ ମୁଣ୍ଡପଟ ଏକାବେଳକେ ବୁଜି ବନ୍ଦକରିଯାଇଛି । ଫାଟକରେ ମସ୍ତବଡ଼ ଗୋଟିଏ ତାଲା ପଡ଼େ ଏବଂ ସେ ତାଲାଟି ଘରକୁ ଯାଏ ।

କଖାରୁ ସବୁ ପାଚିଲା । ଦିନେ ଦୁଇଦିନ ଭିତରେ ତୋଳା ହୋଇ ଘରକୁ ଆସିବା କଥା । କଖାରୁ କାହାକୁ କେଉଁ ଦରରେ ଦିଆଯିବ ଓ କେଉଁଠି ବିକିଲେ ବେଶି ଲାଭ ହେବ, ସେ ବିଷୟରେ ମାମୁଁ ଭଣଜାଙ୍କ ଭିତରେ ବହୁତ କଳ୍ପନା ଜଳ୍ପନା ହେଲା । ଶନିବାର ଦିନ ଉପର ଓଳିକି ମାଷ୍ଟ୍ରେ ତାଙ୍କ ସ୍କୁଲରୁ ଘରକୁ ଆସିବା ପର୍ଯ୍ୟନ୍ତ ସେ ଯୋଜନା ସବୁ ସାମୟିକ ସ୍ଥଗିତ ରହିଲା ।

ମାମୁଁ ଭଣଜାକୁ କହିଲେ, "ବୁଝିଲୁ ଉମା, ଆଜିକାଲି ତ ବହୁତ ଚୋର, କିଏ ଯଦି ଆରମୁଣ୍ଡ ବାଡ଼ ଭାଙ୍ଗି କଖାରୁ ନେବାକୁ ପଶିବ ତେବେ ଆମେ ଫାଟକ ଖୋଲି ଯାଉ ଯାଉ ସେ ସେପଟେ କଖାରୁତକ ଧରି ଚମ୍ପଟ ମାରିବ । ଆମେ ଆରପଟେ ଗୋଟିଏ ଗଳିଆ ବାଟ କରି କିଆ ବେଢ଼େଇଦେବା ଯେ କେହି ଜାଣିପାରିବେନାହିଁ । ଚୋର ପଶିବାର ସୂଚନା ପାଇଲେ ଆମେ ଏ ମୁଣ୍ଡରୁ ଜଣେ ଓ ଗଳିଆ ବାଟେ ସେ ମୁଣ୍ଡରୁ ଜଣେ ବାଡ଼ ଭିତରେ ପଶି ଚୋରକୁ ଜବତ କରିପାରିବା ।" ମାମୁଁଙ୍କ କଥା ଅନୁସାରେ ବାଡ଼ର ଆରମୁଣ୍ଡେ ଗୋଟିଏ ଗଳିଆ ବାଟ କିଆ ଦିଆହୋଇ ଲୁଚିହୋଇ ରହିଲା ।

ସକାଳ ହେଲା । କୁଆ ରାବିଲା । ଭଣଜା ଉଠି ମୁହଁ ଧୋଇ ଦାନ୍ତକାଠି ଚୋବାଇ ଚୋବାଇ ଗୁରିକାଠିଟି ଧରି ବାଡ଼ଆଡ଼କୁ ଚାଲିଲେ । ଗୁରି ଫିଟାଇ

ବଗିଗ୍ଭ ଭିତରେ ପଶି ଯାହା ଦେଖିଲେ ସେଥିରେ ତାଙ୍କର ଅକଲ ଗୁଡ଼ୁମ୍ । ବାଡ଼ରେ ଯେଉଁଠି ହଳଦ କଅଁଳ କଅଁଳ ପେଟଟିମାନ ଦେଖାଇ ପୁଷ୍ଟ ମଠ ମହନ୍ତ-ମାନଙ୍କର ପେଟପରି କଖାରୁଗୁଡ଼ିକ ଯେଉଁ ସ୍ଥାନରେ କାଲି ଗଡ଼ୁଥିଲେ, ଆଜି ସକାଳୁ ସେ ସ୍ଥାନରେ ପବନ ଛଡ଼ା ଆଉ କିଛି ନାହିଁ । ବୋଇତକଖାରୁଗୁଡ଼ିକ କେଉଁକାଳେ ଓଡ଼ିଆ ସାଧବ ପୁଅଙ୍କ ସଙ୍ଗେ ଦୂରଦୂରାନ୍ତର ଦେଶମାନଙ୍କରୁ ଏ ଦେଶକୁ ପାଣିବେ ଇତରେ ଆସିଥିଲେ, ଏବେ କଅଣ ପବନ ବୋଇତରେ ଉଡ଼ି ଉଭେଇଗଲେ ?

•

ଭଣଜା ବାଡ଼ସାରା ବୁଲି ଦେଖିଲେ । ବାଡ଼ ଠାଏ ଅଳ୍ପ ଆଡ଼ୁଆ ହେଲାପରି ହୋଇଛି, କିନ୍ତୁ ପୂରା ଭାଙ୍ଗିନାହିଁ । ଗଳିଆ ବାଟଟିବି କଅଁ ପଡ଼ି ସେହିପରି ବନ୍ଦ ହୋଇ ରହିଛି । ଭଣଜାଙ୍କର ଆଉ ଉପାୟ କଅଣ ? ଏଇ ଦୁଃସମ୍ବାଦ ମାମୁଁଙ୍କୁ ଜଣାଇବା ପାଇଁ, ସେ ଯେପରି ଅବସ୍ଥାରେ ଥିଲେ ସେହିପରି ମାମୁଁଙ୍କ ଘରକୁ ଏକମୁହାଁ ହୋଇ ଦୌଡ଼ିଲେ । ମାମୁଁ ସକାଳୁ ଉଠି ଦାନ୍ତକାଠି ଖଣ୍ଡେ ହାତରେ ଧରି ତାଙ୍କ ଦୁଆରେ ବସିଥିଲେ । ଭଣଜାଙ୍କ ଠାରୁ ସବୁକଥା ଶୁଣିବାକୁ ବି ଆଉ ତାଙ୍କର ଧୈର୍ଯ୍ୟ ରହିଲା ନାହିଁ । ଖାଲି "କଖାରୁ ଚୋରି" ଏଇ ଦୁଇଟା ଶବ୍ଦ ଶୁଣୁ ଶୁଣୁ ହାତ ବାଡ଼େଇ ବାହୁନା ପକାଇ କାନ୍ଦିଉଠିଲେ, "ଆରେ ଉମା, ତୁ କଣ କହୁଚୁରେ ! ମୁଁ ଆଉ ଏ ଜୀବନ ରଖିବି ନାହିଁରେ ! ହାଇରେ, ସେତ କଖାରୁ ନୁହେଁ ସେତ ମୋ ଜୀବନରେ ! ଆରେ ସବୁ ସରିଗଲାରେ !" ଏପରି କାନ୍ଦି କାନ୍ଦି କାନ୍ଧରେ ଦୁଇଟା ମୁଣ୍ଡିଆ ବାଡ଼େଇଦେଲେ ଯେ ତାଙ୍କ ମୁଣ୍ଡଟା ବି ଫୁଲିଗଲା ।

ଭଣଜାଙ୍କ ସାଙ୍ଗରେ, ସେହିପରି ବାହୁନା ପକାଇ ପକାଇ ମାମୁ କଖାରୁ ବାଡ଼ରେ ଆସି ପହଞ୍ଚିଲେ । କଖାରୁ ଗଛକୁ ଦେଖି ଦୁଃଖରେ ଅଭିଭୂତ ହୋଇ କଖାରୁ ଲଟାକୁ ଧରି କାନ୍ଦି କାନ୍ଦି ତଳେ ଗଡ଼ିଗଲେ । ମାମୁଁଙ୍କ ଦୁଃଖରେ ବ୍ୟଥିତ ଲୋକ ସମବେଦନା ଜଣାଇଲେ । କିନ୍ତୁ ଗାଁର କେହି କେହି ନିନ୍ଦୁକ ଲୋକ ପରେ କହିଲେ—ସେଦିନ ମାମୁଁଙ୍କର ପୁରୀରେ ମୁକ୍ତାର ଜମି ସମ୍ପର୍କରେ ଗୋଟିଏ ମୋକଦ୍ଦମା ତାରିଖ ଥିଲା । ଗାଁର ଜଣେ ଭଦ୍ରଲୋକ ସକାଳୁ ସାଇକେଲରେ ପୁରୀରୁ ଗ୍ରାମକୁ ଫେରିଲାବେଳେ ଅଠରନଳା ପାଖରେ ଦୁଇଟି କଖାରୁ ବୋଝେଇ ଶଗଡ଼ଗାଡ଼ି ପୁରୀ ଆଡ଼େ ମୁହାଁଉଥିବାର ଦେଖିଆସିଲେ । ଆଗ ଶଗଡ଼ରେ ଯେ

ବସି ବଳଦ ଓଡ଼ାଉ ଥିଲେ ତାଙ୍କ ଚେହେରା ଠିକ୍ ମାମୁଁଙ୍କ ବଡ଼ପୁଅର ଚେହେରା ପରି—ଏକାବେଳେକେ ଦୁଇ ଚେହେରା ମିଳିଯିବ ।

ମାଷ୍ଟ୍ରେ ଖବର ପାଇ ଆଉ ଶନିବାର ପର୍ଯ୍ୟନ୍ତ ଅପେକ୍ଷା ନ କରି ଛୁଟି ନେଇ ଆସି ଗାଁରେ ପହଞ୍ଚିଲେ । କଥାରୁ ଶ୍ୱେରର ସମସ୍ତ ବିଷୟ ଅବଗତ ହୋଇ ସର୍ବସମକ୍ଷରେ ପୁଅର ଅପାରଗତା ଓ ବୁଦ୍ଧିଶୂନ୍ୟତା ଉପରେ ବହୁ ସାରଗର୍ଭକ ବକ୍ତୃତାମାନ ଦେଲେ । ଘରଭିତରେ ଗୋପନରେ ଗୃହିଣୀଙ୍କ ଆଗରେ ତାଙ୍କ ମାଉସୀ-ପୁଅଭାଇଙ୍କ ଉଦ୍ଦେଶ୍ୟରେ ଗୃହିଣୀ-ସୋଦରର ପ୍ରତିରୂପ, ଓଡ଼ିଆ ଅଭିଧାନରେ ଦୁଇଅକ୍ଷରିଆ ମଧୁର ଶବ୍ଦ ଦୁଇ ଗୃହିଥର ପ୍ରୟୋଗ କରି ନୀରବ ରହିବାକୁ ବାଧ୍ୟହେଲେ । ମଣିଙ୍କ କ୍ରନ୍ଦନ ଓ ବ୍ୟାକୁଳତାର ଚକ୍ରବର୍ତ୍ତିକ ଅଭିନୟ ଭିତରେ ତାଙ୍କୁ ପ୍ରକାଶ୍ୟରେ କିଛି କହିବା ବା ବାହାରେ ତାଙ୍କ ବିଷୟରେ କିଛି ମନ୍ତବ୍ୟ ଦେବା ତାଙ୍କ ଭଳି ନିରୀହ ସାଦାସିଧା ଶିକ୍ଷକଙ୍କ ପକ୍ଷେ ମୋଟେ ସମ୍ଭବପର ନ ଥିଲା ।

ଯାହାହେଉ, ଏହି ଘଟଣା ହାରା ପୁଅଙ୍କର ଶାରୀରିକ ଶିକ୍ଷା କ୍ଷେତ୍ରରୁ ପୁଣି ମାନସିକ ଶିକ୍ଷା କ୍ଷେତ୍ରକୁ ବଦଳିହେଲା । ତାଙ୍କର ବିଦ୍ୟାଭ୍ୟାସର ପନ୍ଥା ପୁଣି ଖୋଲିଲା । ସେ ଆସି ହଷ୍ଟେଲ ଦୁଆରେ ଠିଆହେଲେ । ପିଲାମାନେ ତାଙ୍କର କୃଷି ବିଦ୍ୟା ବିଷୟରେ ଅଟ୍ଟ ଠାପରା କଲେ । କେହି କେହି "ପୁଣି ଗୃହିଆ ଲେଉଟିଲା……" ଗୀତଟି ଗାଇ ଗାଇ ତାଙ୍କୁ ଅଭ୍ୟର୍ଥନା କରି ଭିତରକୁ ନେଲେ । ସେ ଦୁନିଆର ପ୍ରକୃତ ଅବସ୍ଥା କୃଷିକ୍ଷେତ୍ରରେ ହୃଦୟଙ୍ଗମ କରି ଓ ଭବିଷ୍ୟତରେ ପିତୃଦେବ ଯେପରି ତାଙ୍କୁ ଘେନିଯାଇ ସେହିପରି ଆଉ କୌଣସି ହୃଦୟବିଦାରକାରୀ ଦୃଶ୍ୟ ଦେଖିବାର ସୁବିଧା ନ ଦିଅନ୍ତି, ସେଥିପାଇଁ ମନୋଯୋଗ ପୂର୍ବକ ପଢ଼ାପଢ଼ିରେ ଯୋର୍‌ସୋର୍‌ରେ ଲାଗିପଡ଼ିଲେ ।

ମେଧାବୀ ଛାତ୍ର ରୂପେ ନାମ କରି, ଛାତ୍ରବୃତ୍ତିମାନ ପାଇ ଇଞ୍ଜିନିୟରିଂ ପଢ଼ିବାର ସୁବିଧା ପାଇଲେ । ପରେ ସେ ଜଣେ ନାମଜାଦା ଇଞ୍ଜିନିୟର ଭାବରେ ଖ୍ୟାତି ଅର୍ଜନ କରିପାରିଥିଲେ । ସେ ସବୁବେଳେ ମାମୁଁଙ୍କୁ ସ୍ମରଣକରି ମନେ ମନେ ଧନ୍ୟବାଦ ଦିଅନ୍ତି । କଥାରୁରେ ମାମୁଁଙ୍କର ହାତ ନ ଲାଗିଥିଲେ ହୁଏତ ସେ ଆଜି ମୂର୍ଖହୋଇ କାହାର ଜମିବାଡ଼ି ବୁଝିବାକୁ ଗୁମାସ୍ତାଟିଏ ହୋଇ ତାଙ୍କର ଜୀବନ ଯାପନ କରିଥାଆନ୍ତେ ।

ମାଳମଣି ଜଣେ ପରୋପକାରୀ ବ୍ୟକ୍ତି ବୋଲି ତାଙ୍କର ନାଁ ଥିଲା । କିନ୍ତୁ ମଣିମାଧନର ଲୋଭରେ ପିତାଙ୍କର ପରହସ୍ତଗତ ସମ୍ପତ୍ତିର ଉତ୍ତରାଧିକାରୀ ହେବା ପାଇଁ ତାଙ୍କୁ ଓ୍ୟାରିସ ନିଶା ଧରିବାଠାରୁ ସେ କି କି କାର୍ଯ୍ୟ ସବୁ କଲେ ତାହା କାହାକୁ ଅଛପା ରହିଲା ନାହିଁ । ଆସ୍ତେ ଆସ୍ତେ ଲୋକମାନେ ବିପଦ ଆପଦରେ ତାଙ୍କୁ ଡାକିବେ କଅଣ, ତାଙ୍କଠାରୁ ସବୁବେଳେ ଦୂରରେ ରହିବାକୁ ଶ୍ରେୟ-ମଣିଲେ । ମାଲିମକଦ୍ଦମା ସୃଷ୍ଟିରେ ସେ ବ୍ୟସ୍ତ ରହିବାରୁ ନିଜର କାମଧନ୍ଦା କିଛି କରି ପାରିଲେ ନାହିଁ । ନିଜର ଜମିବାଡ଼ି ନଥିଲା । ଆଗରୁ ପ୍ୟାର ଚାର ଜମି ଧରି ଚଳୁଥିଲେ । ଜମିଦେବାଲୋକମାନେ ବି ତାଙ୍କୁ ଆଉ ଜମି ଦେବାକୁ ଡରିଲେ । ସେ କେବଳ ଜବରଦଖଲ ଓ ସାମୟିକ ଠକାମି ପ୍ରଭୃତି କରି ଜୀବନ ଯାପନ କଲେ ।

ସେ ଅନ୍ୟମାନଙ୍କ ସମ୍ପତ୍ତିରେ ମୁକ୍ତାର ବଂଶର ଉତ୍ତରାଧିକାରୀ ଭାବେ ତାଙ୍କର ଭାଗ ଅଛି ବୋଲି ଦଖଲ ସାବ୍ୟସ୍ତ କରିବାକୁ ଫସଲ ଆଦାୟ କଲାବେଳେ ବହୁତ ଥର ସେ ଦଙ୍ଗାହାଙ୍ଗାମା ସୃଷ୍ଟିକରି ମାଡ଼ ଖାଇଲେ, ଜେଲ ମଧ୍ୟ ଗଲେ । ଯେଉଁଥର ଅବା ସେପରି କୌଣସି ଘଟଣାରୁ ପ୍ରମାଣ ଅଭାବରେ ବା ଅନ୍ୟପକ୍ଷର ମୋକଦ୍ଦମା ଚଳାଇବାରେ ହେଳା ଥିବା ହେତୁ ଖସିଗଲେ— ସେଥର ସେ ସମ୍ପତ୍ତିରେ ତାଙ୍କର ଭାଗ ହୋଇଗଲା ବୋଲି କଚେରିରୁ ନକଲ ଆଣି କାଖରେ ଜାକି ପ୍ରଚାର କରି ବୁଲିଲେ ।

ତାଙ୍କର ବିଜୟଶକ୍ତି ସେଇ ମାତ୍ର ଗୋଟିଏ ଶିକ୍ଷା । ଯେତେବେଳେ ଯାହା ସଙ୍ଗେ ଦେଖାହେଲା—ସେଥିରୁ ବିଡ଼ାଏ କାଗଜ ବାହାରକରି ନିଜର ଦାବି କଥା ବୁଝାଇବାକୁ ଲାଗିଲେ । କେବଳ ଯେ ସାଧାରଣଲୋକଙ୍କୁ ବୁଝାଇଲେ ତା ନୁହେଁ, ଥାନାକୁ ବଦଳି ହୋଇ ନୂଆକରି ଆସିଥିବା ବାବୁମାନଙ୍କୁ ମଧ୍ୟ ବୁଝାଇବା ପାଇଁ ଥାନାରେ ଭୋଜିଭାତର ଆୟୋଜନ କରିବା ସଙ୍ଗେ ସଙ୍ଗେ ଥାନା ବାବୁଙ୍କର ଦୁଇ ଘଣ୍ଟା କାମ କରିଦେବା କି ଅନ୍ୟର ନଡ଼ିଆଗଛରୁ ପୁଞ୍ଜେ ଦୁଇ ପୁଞ୍ଜା ପାଇଡ଼ି ନେଇ ସେମାନଙ୍କୁ ଦେଇ ଖୁସି କରିବା ପ୍ରଭୃତି କାର୍ଯ୍ୟରେ ମଧ୍ୟ ଲାଗି-ପଡ଼ିଲେ । କେହି କେହି ପୋଲିସବାବୁ କାଗଜପତ୍ର ଭିତରକୁ ନ ପଶି ତାଙ୍କୁ ବିଶ୍ୱାସ କରି ହେଉ ବା ଗରିବଲୋକଟାକୁ ଅନ୍ୟମାନେ ମିଶି ହଇରାଣ କରୁଛନ୍ତି ବୋଲି ଭାବିବା ହେତୁ ହେଉ, କୌଣସି କୌଣସି ଜମିବାଲାଙ୍କୁ ଥରକୁଥର

ଥାନାକୁ ଡକାଇ ବା ସେମାନଙ୍କ ନାମରେ ଏତଲା ଗ୍ରହଣ କରି ବୃଥାରେ ହଇରାଣକଲେ ।

ମାଳମଣିଙ୍କର ବଡ଼ ବଡ଼ ଦୁଇଟି ପୁଅ । ସେମାନଙ୍କୁ ଅନ୍ୟ ରୋଜଗାରରେ ଲଗାଇଥିଲେ ହୁଏତ ତାଙ୍କ ଅବସ୍ଥା ଟିକିଏ ସୁଧୁରିଯାଇଥାଆନ୍ତା, କିନ୍ତୁ ସେ ତାହା ନକରି ସେମାନଙ୍କୁ ଏ ଗଣ୍ଡଗୋଳ ଓ ମାଲିମୋକଦ୍ଦମାରେ ତାଲିମ କରିବାକୁ ଲଗିଲେ । ବେଶି ଅଭାବ ପଡ଼ିବାରୁ ସୁବିଧା ଦେଖି ସାନପୁଅକୁ ଠାଏଦୁଇଠା ନିରଂଶ ସ୍ଥାନରେ ଉତ୍ତରାଧିକାରୀ ସାବ୍ୟସ୍ତ କରିବା ପାଇଁ ଆଗରୁ ପୁଅ କରି ନେଇଥିବା ପ୍ରମାଣ କରାଇବାକୁ ଚେଷ୍ଟାକରାଇଲେ ଓ ଗୋଟିଏ ସ୍ଥାନରେ ମଧ୍ୟ ସଫଳହେଲେ । ତାଙ୍କ ସାଇର ଗୋଦରା ବୁଢ଼ୀ ମରିଯିବା ସଙ୍ଗେ ସଙ୍ଗେ ତାର ଟିପ ଚିହ୍ନ କରାଇ,ତାର ପୁଅ ବୋଲି ସାବ୍ୟସ୍ତ କରି ତାର ବଖରାଏ ଘର ଓ ଅଳ୍ପ କିଛି ଜମି ଦଖଲକରି ମାଡ଼ିବସିଲେ ।

ମାଟିଆଣିବା ଢିଅଣ ହାପୁଡ଼ରେ । ମାଲିମୋକଦ୍ଦମା ନିଶାର ଯେଉଁ ଖର୍ଚ୍ଚ, ସେଥିକୁ ସିଏ ବା କେତେ ? ତେଣୁ ଅଳ୍ପଦିନରେ ସେସବୁ ମଧ୍ୟ ସରିଗଲା ।

ଯାହାହେଉ, ସେହି ନିଶାରେ ବହୁକାଳ ଘାରିହେବା ପରେ ସେ ତାଙ୍କର କାଗଜ ବିଡ଼ାକ, ସଂସାର ଜଞ୍ଜାଳ ଓ ମାଲିମୋକଦ୍ଦମା ଗୁଡ଼ିଏ କୋଣ ଆରପୁରକୁ ଚାଲିଗଲେ । ତାଙ୍କ ପରେ ତାଙ୍କର ବଡ଼ପୁଅ କେତେଦିନ ସେହି କାଗଜ-ବିଡ଼ାଟିକୁ ଧରି ଥାନାକୁ ଏବଂ କଚେରୀକୁ ଧାଇଁ ଏପଟ ସେପଟ ହେଲା । ଦଖଲ ସାବ୍ୟସ୍ତରେ ମାଡ଼ ଓ ଜେଲ ପ୍ରଭୃତିରେ ହଇରାଣ ମଧ୍ୟ ହେଲା । ଶେଷରେ ଅନାହାରଜନିତ ରୋଗମାନଙ୍କ କବଳରୁ ରକ୍ଷା ପାଇବାପାଇଁ ପିଲାଛୁଆଙ୍କୁ ଦରିଦ୍ର ଅବସ୍ଥାରେ ଛାଡ଼ି ଇହଲୀଳା ସାଙ୍ଗକଲା ।

× × × ×

ମଣିମା ଓ ପୀତବାସ ଯିବା ପରେ ଦୁଇ ତିନ ଯୁଗ ବିତିଗଲାଣି । ବିଂଶ ଶତାବ୍ଦୀ ଶେଷଭାଗରେ ଆସି ଗୋଡ଼ ଦେଲାଣି । ତଥାପି ସେଇ ଧନର ଉତ୍ତରା-ଧିକାରୀ ବୋଲାଇ ଜଣେ ଜୀର୍ଣ୍ଣଶୀର୍ଣ୍ଣକାୟ ବୃଦ୍ଧ ଅଯତ୍ନପାଳିତ ଦାଢ଼ି ମୁଠାଏ ମୁହଁରେ ଧରି, ଜୀର୍ଣ୍ଣ ବସ୍ତ୍ର ପରିଧାନକରି, କାନ୍ଧରେ ଖଣ୍ଡେ ମଳିଛିଆ ଗାମୁଛା ପକାଇ ସନ୍ଧ୍ୟାବେଳେ ଥାନା ଦୁଆରେ ଯାଇ ବସନ୍ତି ଏବଂ କେଉଁ କାଳର ପୁରୁଣା ମଇଳା କାଗଜ ବିଡ଼ାଏ କାଢ଼ି ପୋଲିସ ବାବୁମାନଙ୍କୁ ଦେଖାଇ ତାଙ୍କର ଦାବି

କଥା ଶୁଣାଇ ଜଣାନ୍ତି ଏବଂ ସ୍ଥାନୀୟ ଧନୀଲୋକମାନେ ତାଙ୍କୁ ହଇରାଣ କରି ତାଙ୍କର ସମ୍ପତ୍ତି ଜବରଦଖଲ କରୁଛନ୍ତି ବୋଲି ଅଭିଯୋଗ କରନ୍ତି ।

ନୂଆ ନୂଆ ଆସିଥିବା ଦମ୍ଭାଳୁ ପୋଲିସ ଇନସ୍ପେକ୍ଟରବାବୁମାନେ ତାଙ୍କର କଥା ଶୁଣି ବ୍ୟସ୍ତହୋଇପଡ଼ନ୍ତି । କେତେକ ସ୍ଥାନୀୟ ଥିଲାବାଲାଲୋକ ସେ ଦରିଦ୍ର ଅସହାୟ ବୃଦ୍ଧର ଜମିବାଡ଼ି ଜବର ଦଖଲ କରି ଆତ୍ମସାତ୍ କରିବାକୁ ଚେଷ୍ଟା କରୁଛନ୍ତି ବୋଲି ଭାବି ବୃଦ୍ଧଦ୍ୱାରା ଅଭିଯୁକ୍ତ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଏକ୍ସନ ଗ୍ରହଣ କରନ୍ତି ।

ଅଳ୍ପଦିନ ତଳେ ବୃଦ୍ଧଙ୍କର ଅଭିଯୋଗ ଉପରେ ଇନ୍‌ସପେକ୍ଟର ବାବୁ ଘଟଣା ତଦନ୍ତ କରିବା ପାଇଁ ସରଜମିନକୁ ନ ଯାଇ କେତେକ ବ୍ୟକ୍ତିଙ୍କୁ ଡକାଇପଠାଇଲେ । ଅଭିଯୁକ୍ତ ଲୋକମାନଙ୍କର ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । କେହି ନୂଆ ଅଫିସର ବଦଳି ହୋଇ ଆସିବା ସଙ୍ଗେ ସଙ୍ଗେ ସେମାନେ ତାଙ୍କର ଜମିବାଡ଼ି ବିଷୟରେ ସଫେଇ ଦେବା ପାଇଁ ଡକାହୋଇଆସନ୍ତି ।

ସେମାନେ ପୋଲିସ ଥାନାରେ ପହଞ୍ଚିବା ସଙ୍ଗେ ସଙ୍ଗେ ଇନ୍‌ସପେକ୍ଟର ବାବୁଙ୍କୁ କହିଲେ, "ଆଜ୍ଞା, ଆପଣ ବୋଧେ ନୂଆହୋଇ ଏଠାକୁ ଆସିଛନ୍ତି । ଆମେ ସବୁ କାର୍ଯ୍ୟବ୍ୟସ୍ତ ଲୋକ । କିଏ କେଉଁଆଡ଼େ ଥାଉଁ । ଥରକୁଥର ଏପରି ଏଠାକୁ ଆସି ଉପସ୍ଥିତହେବା ଆମମାନଙ୍କ ପକ୍ଷରେ ସମୟସାପେକ୍ଷ । ଆପଣ ଆମମାନଙ୍କୁ ଡକାଇପଠାଇବା ପୂର୍ବରୁ ସେ ବୃଦ୍ଧଙ୍କର କାଗଜପତ୍ର ସବୁ ଠିକ୍‌ଏ ଭଲକରି ଯାଞ୍ଚ କରି ଦେଖିସାରି ଆମକୁ ଡକାଇଥିଲେ ଆପଣଙ୍କର କି ଆମର କାହାର ସମୟ ନଷ୍ଟ ହୋଇନଥାନ୍ତା । କି ଜମି, କେଉଁ ଜମିର କିଏ ମାଲିକ, କାହା ନାମରେ ବନ୍ଦୋବସ୍ତ ହୋଇଛି, କିଏ ସେ ଜମି ସବୁପାଇଁ ଖଜଣା ଦେଇଛି, ପଟ୍ଟା ପାଉତି ସବୁ କାହା ନାମରେ ମିଳିଛି, ଏସବୁ ତ ଆପଣଙ୍କର ପ୍ରଥମେ ଜାଣିବାର କଥା । ସେ ଯେଉଁ ଜମି ତାଙ୍କର ବୋଲି ଦାବିକରୁଛନ୍ତି ତାର ସେ ପଟ୍ଟା ପାଉତି, ବନ୍ଦୋବସ୍ତର କାଗଜପତ୍ର ପ୍ରଭୃତି ଆପଣଙ୍କୁ ଦେଖାନ୍ତୁ —ତାହାପରେ ଆପଣ ଯାହା କହିବେ ଆମେ ତାହା କରିବୁ ।"

ଏହା ଶୁଣିବା ମାତ୍ରେ ବୃଦ୍ଧ କାଗଜ ବିଡ଼ାକ କାଖରୁ ବାହାରକରି ଅଫିସରଙ୍କ ହାତକୁ ବଢ଼ାଇଦେଲେ । ଅଫିସର ଏମୁଣ୍ଡ ସେମୁଣ୍ଡ କାଗଜଗୁଡ଼ିକ ଓଲଟାଇବାକୁ ଲାଗିଲେ । କିନ୍ତୁ ତା ମଧ୍ୟରେ ଜବରଦଖଲ ଆପତ୍ତି ଜମିର

କାଗଜପତ୍ର କିଛି ପାଇଲେନାହିଁ । ଅନେକ ଗୁଡ଼ାଏ କାଗଜ ଊନବିଂଶ ଶତାବ୍ଦୀର, ଯେଉଁଥିରେ ପଦ୍ମଚରଣ ଦାସଙ୍କର ନାମ, ପୀତବାସ ଦାସଙ୍କର ବଂଶାବଳୀ ଲେଖାଯାଇଅଛି, ଆଉ କେତେଗୁଡ଼ିକରେ ସ୍ୱର୍ଗତ ମାଳମଣି ଓ ତାଙ୍କ ପୁତ୍ର ସ୍ୱର୍ଗତ ବିଶ୍ୱନାଥଙ୍କର କେତେକ ଜୈଷ୍ଠ ମକଦ୍ଦମାରୁ ପ୍ରମାଣ ଅଭାବରେ ଖଲାସ ହେବାର ଲେଖାଅଛି । ଅଫିସର ସେ କାଗଜଗୁଡ଼ାକର ଅଗ ମୂଳ କିଛି ବୁଝି ନ ପାରି ପ୍ରଶ୍ନ କଲେ, "ତୁମେ କିଏ—ମାଳମଣି ନା ବିଶ୍ୱନାଥ ?"

ବୃଦ୍ଧ କହିଲେ—ମୋର ନାମ ବୁଦ୍ଧିନାଥ । ମୁଁ ବିଶ୍ୱନାଥଙ୍କ ପିଲାମାନଙ୍କର ତତ୍ତ୍ୱାବଧାରକ ଓ ଓ୍ୟାରିସ ମଧ୍ୟ, କାରଣ ମୁଁ ଅନ୍ୟ ସ୍ଥାନକୁ ପୁଅ ହୋଇ ଯାଇଥିଲେ ମଧ୍ୟ ମାଳମଣିଙ୍କ ଦ୍ୱିତୀୟ ପୁତ୍ର ଓ ବିଶ୍ୱନାଥଙ୍କ ଭାଇ । ଆମର ପିତା ମାଳମଣିଙ୍କର ପିତା କାଶି ଦାସ, ପଦ ମୁକ୍ତାରଙ୍କ ବଂଶରୁ ଅଲଗା ହୋଇ ଆସିଥିଲେ ମଧ୍ୟ ପୀତବାସଙ୍କ ପରେ ସେ ବଂଶରେ ଆଉ କେହି ନ ଥିବାରୁ ଆମ୍ଭେମାନେ ଉତ୍ତରାଧିକାରୀ । ପଦ୍ମଚରଣଙ୍କ ପୁତ୍ର ପୀତବାସଙ୍କ ସମ୍ପତ୍ତି ପ୍ରାୟ ୭° କିମ୍ବା ୮° ବର୍ଷ ତଳେ ନିଲାମ ହୋଇଯାଇଥିଲା । ସରକାର ବା ନିଲାମ କରାଇବା ଲୋକମାନେ ଆମ୍ଭ ବଂଶକୁ ପକ୍ଷ କରିନଥିଲେ । ତେଣୁ କାଶିଦାସଙ୍କ ଅଂଶରେ ଆମ୍ଭମାନଙ୍କର ଭାଗ ଅଛି । ସେହି କାରଣରୁ ନିଲାମ ଧରିଥିବା ଲୋକଠାରୁ କିଣିଥିବା ଲୋକେ, ଏଠି ବସିଥିବା ଲୋକଙ୍କ ବାପ ବଡ଼ବାପଙ୍କୁ ଅନ୍ୟାୟରେ ସେ ଜମି ସବୁ ବିକ୍ରି କରିଦେଇଥିଲେ । ଏମାନେ ସେ ସବୁ ଜମିରେ ଆମର ଭାଗ ଅଛି ବୋଲି ସ୍ୱୀକାର ନ କରି, ଆମର ଉଚିତ ପ୍ରାପ୍ୟ ଓ ଅଂଶ ଆମକୁ ନଦେଇ ସେ ସବୁ ସମ୍ପତ୍ତି ଜବର ଦଖଲ କରୁଛନ୍ତି । ଆମେ ସେ ଜମି ଉପରକୁ ଗଲେ ଆମକୁ ଧମକାଧମକି ଓ ମାରଧର କରୁଛନ୍ତି । ଆପଣ ଏ ସବୁ ବୁଝି ଆମର ପ୍ରାପ୍ୟ ଆମେ ପାଇବାର ସମସ୍ତ ବ୍ୟବସ୍ଥା କରିଦିଅନ୍ତୁ ।

ଅଫିସର ବାବୁ ଆଉ ବୁଝିବେ କଅଣ ? ତାଙ୍କର ବୁଦ୍ଧି ଗୁଡ଼ୁମ୍ । ମୁଣ୍ଡ ଏକାବେଳକେ ଅଡ଼ୁଆ ତଡ଼ୁଆ ହୋଇଗଲା । ସେ ପଚାରିଲେ, "ହଇଓ ବୃଦ୍ଧ ମହାଶୟ, ଏଇଟା କଅଣ କଚେରୀ ନାଁ ମୁଁ କଅଣ ଏଠି ମୋକଦ୍ଦମା ବିଚାର କରି କାହା ଜମି କାହାର ବୋଲି ସାବ୍ୟସ୍ତ କରିବାକୁ ନିଯୁକ୍ତ ପାଇଛି ? ତୁମେ ଯେଉଁ ଜମି ଦାବି କରୁଛ ସେଥିରେ ତୁମ ନାମ ଦରଜ ଥିବା ପଟ୍ଟା ପାଉତି ଓ ବନ୍ଦୋବସ୍ତ କାଗଜ ଆଣି ଦେଖାଅ । ତୁମ ଜମି ବୋଲି ପ୍ରମାଣ ଦେଖାଇଲେ ସିନା ଅନ୍ୟ କିଏ ଲୁଚିକି ବା ଜବରଦସ୍ତିରେ ଦଖଲ ନେଇଯାଇଛି ବୋଲି

ଜାଣିଲେ, ମୁଁ ତାକୁ ଚୋର ବା ଜବରଦସ୍ତି ମକଦ୍ଦମାରେ ପକାଇପାରନ୍ତି, ନ ହେଲେ ମୁଁ ତୁମକୁ କି ସାହାଯ୍ୟ କରିପାରନ୍ତି ?"

ଏହା ଶୁଣି ବୃଦ୍ଧ କ୍ରୋଧାନ୍ଧ ହୋଇ ପିଣ୍ଡା ତଳକୁ ଡ଼େଇଁପଡ଼ି କାଗଜପୁଳାକ କାଖରେ ଜାକି ବଡ଼ ପାଟିକରି କହିଚାଲିଲେ, "ଏ ଦେଶ ଖାଲି ଏବେ ବଡ଼ଲୋକଙ୍କ ପାଇଁ । ଏ ଦେଶରେ ବିଚାର ନାହିଁ, ନ୍ୟାୟ ନାହିଁ ।" ତାଙ୍କର ପାଦ ଆଗକୁ ଆଗେଇବା ସଙ୍ଗେ ସଙ୍ଗେ ତାଙ୍କର ସ୍ୱର କ୍ଷୀଣ ହୋଇ-ଆସିଲା । ଥାନାର ଅଫିସର ଭଦ୍ରବ୍ୟକ୍ତିମାନଙ୍କୁ ଚାହିଁ ଅଳ୍ପ ହସି ବିଦାୟ କରିଦେଲେ । ସେଠିଥିବା ଜାଣିବା ଶୁଣିବା ସ୍ଥାନୀୟ ଲୋକେ କଥାବାର୍ତ୍ତା ହେଲେ—ମଣିମାଙ୍କଠାରୁ ଠକିନେଇଥିବା ମୁକ୍ତାର ଧନ ଜୁଟିଛି ଓ ଏହିପରି ଜୁଟୁଥିବ ।

## ଉଣେଇଶ

ମଣିଷର କି ବିଚିତ୍ର ପ୍ରକୃତି ! ଭାଗ୍ୟ କଅଣ ? ଭାଗ୍ୟ ମଣିଷକୁ ବଦଳାଏ ନା ମଣିଷ ନିଜ ଭାଗ୍ୟକୁ ବଦଳାଏ ? ଏ ସବୁ ଭାବି ଭାବି ମଣିମାଙ୍କର ବନ୍ଧୁ ସମ୍ପର୍କରେ ପୀତବାସଙ୍କ କଥା ମନେପଡ଼େ । ଅସନ୍ତୁଷ୍ଟ ଆତ୍ମାର କି ଶେଷ ପରିଣତି ! ସେ କଅଣ ଥିଲେ କଅଣ ହେଲେ ? ମାତ୍ର ଦୁଇଟା ପୁରୁଷରେ ସେ ବଂଶଟା କଅଣ ହୋଇଗଲା ? ପୀତବାସଙ୍କର କି ଦୀପ୍ତି, କି ସୁନ୍ଦର ଚେହେରା, କି ଦମ୍ଭ, କି ଗର୍ବ, କି ସାହସ ! ସବୁ କେଉଁଆଡ଼େ ଉଭାଇଗଲା ? ସେ ଦାମ୍ଭିକ ହସ ହସ ମୁହଁ କେଉଁଆଡ଼େ ଗଲା ?

ପଦମୁକ୍ତାର ସିନା ଠକାଠକି କରି ସମ୍ପତ୍ତି କରିଥିଲେ, କିନ୍ତୁ ପୀତାଙ୍କର ଦୋଷ କଅଣ ? ତାଙ୍କର ଏ ଦଶା ହେଲା କାହିଁକି ? ବାପର ଚୋରି ଧନ ତ ପୁଅର ପିତୃଅର୍ଜିତ ବୋଲି କୁହାଯାଏ—ଏ କ୍ଷେତ୍ରରେ ବାପର ଅଧର୍ମ ତକ ବି ପୁଅର ପିତୃଅର୍ଜିତ ହୋଇ ପୁଅ ଜୀବନ୍ତ ନର୍କରେ ଘାଣ୍ଟି ହେଲା । ତାଙ୍କ ମୁଣ୍ଡ ବା ବିଗିଡ଼ିଗଲା କାହିଁକି ? ଯେଉଁ ବଂଶର ଲୋକଙ୍କୁ ଉପରେ ଗର୍ଭିଣୀଗାଈ ବି ବାଟ ଛାଡ଼ି ଆଡ଼େଇଯାଉଥିଲା ତାକୁ ପିଲାଏ 'ପାଗଳା', 'ପାଗଳା' କହି

ଠେକା ଫୋପାଡ଼ିବା ପର୍ଯ୍ୟନ୍ତ ଗଲା । ଯାହାର ଠିକଏ ପାଖ ଲାଗି ପାଇଁ ଲୋକଙ୍କ ଭିତରେ ପ୍ରତିଯୋଗିତା ଲାଗିଥିଲା—ତାଙ୍କ ନାଁ ପଡ଼ିଲେ "କୁଳାଙ୍ଗାର", "କୁଳ ବୁଡ଼ିଲା ବେଳକୁ ଘୋଡ଼ାମୁହାଁ ପୁଅ ଜାତ ହେଲା" ପ୍ରଭୃତି ବିଶେଷଣ ଲଗାଇ ସେଇ ଲୋକ ନାକ ଟେକିଲେ କାହିଁକି ?

ସେ ତ ଯାଇଥିଲେ, ଲୋକେ ତାଙ୍କୁ ପ୍ରାୟ ଭୁଲିଥିଲେ ସେ ପୁଣି ଏ ବେଶ ଧରି ଆସିଲେ କାହିଁକି ? ପୁନର୍ବାର ପଳାଇଗଲେ ବା କାହିଁକି ? ଧନ,ଜନ, ଗୋପଲକ୍ଷ୍ମୀ ପ୍ରାପ୍ତି ପାଇଁ ମଣିଷ ପାଗଳ ହୁଏ କାହିଁକି ? ଏ ତ ସବୁ ଅଳୀକ ! ସବୁ ବଡ଼ ବଡ଼ ମହାପୁରୁଷମାନେ ଏ ସବୁର ଅଳୀକତା ବିଷୟରେ ଏତେ ପ୍ରମାଣ କରି, ଏତେ ବୁଝାଇଗଲେ, କିନ୍ତୁ ମଣିଷର ମନ ବୁଝେନାହିଁ କାହିଁକି ? ସେ ବିଦେଶରୁ ଫେରି ଯେତେବେଳେ ତାଙ୍କୁ ଦେଖାକଲେ, ପିଲାଟିଲା ନାହାନ୍ତି ଶୁଣି ଏପରି ବ୍ୟାକୁଳ ହୋଇଥିଲେ କାହିଁକି ?

କେଉଁ ପିଲା କାହାର ? ମଣିଷ ଜୀବନ ତ କ୍ଷଣସ୍ଥାୟୀ ମାତ୍ର । ଆତ୍ମା ତ ଅମର । ଆତ୍ମାର କଣ ମୃତ୍ୟୁ ଅଛି ? କିଏ କେଉଁ ଜନ୍ମରେ କାହାର ବାପ ତ ଅନ୍ୟ କେଉଁ ଜନ୍ମରେ ହୁଏତ ସେହି ବାପ ପୁଅର ପୁଅ ବା ନାତି ହୋଇ ଜନ୍ମ ନେଇପାରେ । ଶଙ୍କରାଚାର୍ଯ୍ୟଙ୍କ ପରି ମହାପୁରୁଷମାନେ ମଣିଷର ମୋହ ଭାଙ୍ଗିବାକୁ ଯୁଗ ଯୁଗ ଧରି ଶିକ୍ଷାଦେଇ ଚେତାଇ ଦେଇଯାଇଛନ୍ତି—'କିଏ ତୁମର ସ୍ତ୍ରୀ, କିଏ ବା ତୁମର ପୁତ୍ର ? ଏ ସଂସାର ଅତି ବିଚିତ୍ର ।' ତଥାପି କେତେ ଲୋକ ଏ କଥା ବୁଝନ୍ତି ? କି ବିଚିତ୍ର ଏ ସଂସାର ? ଦୁନିଆ କି ବିପରି ଅଭିନବ ରୂପ ସବୁ ଧାରଣ କରୁଛି ! ଚିକିଥି ଘଟର ପେଣ୍ଡାଲର ଦୃଶ୍ୟମାନଙ୍କ ପରି ସବୁ ବଦଳିଗଲାଣି । ଏ ଫୁଲଅଳସା, ଏଇ ଯଶିପୁର ପାଟଣା ସବୁ ଅଲଗା ରୂପ ନେଇଛି । ରନ୍ଧିଚିରି ଓ ବକୁଳବନ ସବୁ ତ ବଦଳିଛି । ପଣ୍ଡା ଓ ଯାତ୍ରୀଗହଳ ସାଙ୍ଗକୁ ଦେଶମିଶ୍ରଣ ଓ ଅସହଯୋଗ ଆନ୍ଦୋଳନର କୋଳାହଳ ସତ୍ୟବାଦୀର ଶାନ୍ତ ପରିବେଶକୁ ବୈପ୍ଳବିକ ରୂପ ଦେଇଛି । ବୁଢ଼ା ପିଲା, ବୁଢ଼ୀ ଭୁଆଣୁଣୀ ସମସ୍ତେ, ପିଲାପିଲି ଭାଇ ଭଉଣୀ ବାପା ମାଁ ଘରଦ୍ୱାର ସବୁ ଛାଡ଼ି କାହିଁକି ଇଂରେଜ ସରକାରଙ୍କ ବିରୁଦ୍ଧରେ ମାତିଉଠିଛନ୍ତି ? କାହିଁକି ମାଡ଼ ଜେଲ ଜୋରିମାନାକୁ ନଡ଼ରି ସତ୍ୟାଗ୍ରହ କରୁଛନ୍ତି ? ଭାରତ ସ୍ୱାଧୀନ ହେଲେ ଏମାନଙ୍କର କଅଣ ବା ଲାଭହେବ ? ଏମାନେ ସମସ୍ତେ ତ ରାତାରାତି ଧନୀ ହୋଇ ଯିବେନାହିଁ କି ବଡ଼ ବଡ଼ ପଦବୀର ଅଧିକାରୀ ହୋଇ ପାରିବେ ନାହିଁ । କି

ଲୋଭରେ ବା କି ଭବିଷ୍ୟତ ଆଶାରେ ଏମାନେ ପ୍ରାଣକୁ ପାଣି ଛଡ଼ାଇ ଏପରି ଲାଗିପଡ଼ିଛନ୍ତି ?

ଏ ନିଶ୍ଚୟ ଗୋଟାଏ ପ୍ରକାରର ନିଶା । ଦୀପାବଳୀ ଅମାବାସ୍ୟାରେ ଗୁଣ୍ଡିପୋକମାନେ ଯେପରି ନିଆଁ ବା ଆଲୁଅ ଦେଖିଲେ ତା ଉପରେ ଆପେ ଆପେ ଆସି ପଡ଼ିଯାଇ ଜଳିଯାଆନ୍ତି, ସେହିପରି ଏ ଅସହଯୋଗ ଆନ୍ଦୋଳନ-କାରୀମାନେ ସୁଖ ଦୁଃଖ ନ ମାନି ସ୍ୱାଧୀନତା ଯଜ୍ଞର ନିଆଁ ଭିତରକୁ ଡେଇଁ ଆତ୍ମାହୁତି ଦେଉଛନ୍ତି ।

ପୀତବାସଙ୍କ ଗୃହଚଳନ ଓ ଶେଷକାଳୀନ ହାବଭାବ ଯୋଗୁଁ ତାଙ୍କ ବିଷୟରେ ମଣିମାଙ୍କର ଯେଉଁ ଭାବର ଉଦ୍ରେକ ହୋଇଥିଲା, ଅସହଯୋଗ ଆନ୍ଦୋଳନରେ ମାତିଥିବା ଲୋକଙ୍କ ବିଷୟରେ ମଧ୍ୟ ତାଙ୍କର ସେହିପରି ଭାବ ଜାଗ୍ରତ ହେଲା । ଭଙ୍ଗା ବୋଡ଼ିଂରେ ସେ ପୀତାଙ୍କ ପାଇଁ ଖାଦ୍ୟପୁଡ଼ିଆ ଦେଇ ଆସୁଥିଲେ । ଠିକ୍ ସେଇପରି ଲୁଗୁଇ, ନଡ଼ିଆ ଫଳଟାଏ କି ଗୃଡ଼ଳ ପୁଞ୍ଜାଏ ଚନ୍ଦନପୋଖରୀ ଭୁଠ ସତ୍ୟାଗ୍ରହୀଙ୍କ ଡେରାରେ ରଖିଦେଇଆସନ୍ତି । ତାଙ୍କ ନିଜର ଅଭାବର ସୀମା ନାହିଁ, କିନ୍ତୁ ଅନ୍ୟର ଅଭାବ ଅସୁବିଧା କଥା ଭାବି ସେ ନିଜ ଅଭାବ କଥା ଭୁଲିଯାଆନ୍ତି । ସେ ନିଜକୁ କେବେ ଦରିଦ୍ର ବା ନିଃସହାୟ ବୋଲି ଭାବିନାହାନ୍ତି । ଯାହା ଉପରେ ଗୋପାଳଙ୍କର କୃପା ଦୃଷ୍ଟି ଅଛି ସେ ନିଶ୍ଚୟ ସବୁଠାରୁ ବେଶି ସୁଖୀ ଓ ଭାଗ୍ୟବାନ୍ । ତାଙ୍କର ବାପ ବଡ଼ବାପ ଏହି ଗୋପାଳଙ୍କୁ ଆଶ୍ରାକରି ନିଜର ଧନ ସମ୍ପତ୍ତି କଥା ଭୁଲିଥିଲେ । ତେଣୁ ସେ ସେଆଡ଼େ ନଜର ଦେବାକୁ ପାପ ବୋଲି ମନେକରନ୍ତି । କ୍ଷମତା ଓ ଧନ ଏ ସବୁ କ୍ଷଣିକ ।

ଏ ଦେଶରେ ଖାରବେଳ ରାଜତ୍ୱ କରୁଥିଲେ । ପୁରୁଷୋତ୍ତମଦେବ କାଞ୍ଚି ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ଅଶୋକ ବି ମଧ୍ୟ ଏହି ରାଜ୍ୟକୁ ଅଧିକାର କରିନେଇଥିଲେ । ତାପରେ ସମୟକ୍ରମେ ଇଂରେଜମାନେ ଏହା ତାଙ୍କର ଅଧିକାରକୁ ନେଲେ । ସେ ମଧ୍ୟ ଯିବେ । କିନ୍ତୁ ତାଙ୍କ ପରେ ଯେ ଆସିବେ ସେ ଯେ ତମ୍ବାରେ ମୁଣ୍ଡ ବାନ୍ଧି ରକ୍ତ ଅଧିକାଗୁଡ଼ାଏ କଅଣ କରିପକାଇବେ କି ଏ ଦେଶଟାକୁ କୁଆଡ଼େ ଟେକି ନେଇ ପଳାଇବେ ତାହା ନୁହେଁ ।

କେହି କିଛି ନେଇଯିବେ ନାହିଁ । କ୍ଷମତା ଧନ ସମ୍ପତ୍ତି ସବୁ ଏଇଠାରେ ଛାଡ଼ିଦେଇ, ସମସ୍ତେ ଜଣକ ପରେ ଜଣେ ସେଥିରୁ ପୁଳାଏ ପୁଳାଏ ମୁହଁରେ

ମାତ୍ର ତାଙ୍କ ବେଳ ହେଲେ ଆପେ ଆପେ ପଳାଇ କାଳର ଗର୍ଭରେ ଲୀନ ହୋଇଯିବେ ।

ପ୍ରଚାରକ ଅନନ୍ତ ମିଶ୍ର ଓ ଅନ୍ୟ କେହି କେହି ଆସି ତାଙ୍କ ପୂର୍ବପୁରୁଷର ଗରିମା କଥା ବଖାଣି ସତ୍ୟାଗ୍ରହରେ ଯୋଗ ଦେଇ ନେତୃତ୍ୱ ନେବାକୁ ପ୍ରବର୍ତ୍ତାଇଥାନ୍ତି । ସେମାନେ କୁହନ୍ତି, "ଆପଣ ଉତ୍କଳର ସ୍ୱାଧୀନ ରାଜବଂଶର ଲୋକ । ଏ ଦେଶ ଥିଲା ଆପଣଙ୍କ ପୂର୍ବପୁରୁଷଙ୍କର । ଏହାଙ୍କୁ ଇଂରେଜମାନେ ମାଡ଼ିବସି ଆପଣଙ୍କ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ଇଂରେଜ-ମାନଙ୍କୁ ଏହି ଦେଶରୁ ତଡ଼ି ଭାରତକୁ ସ୍ୱାଧୀନ କରିବା ପାଇଁ ସଂଗ୍ରାମ ଚାଲିଛି । ଆପଣ ସେଥିରେ ଆଗଭର ହୋଇ ଆଗକୁ ବାହାରିପଡ଼ିବା ଉଚିତ ।"

ସେମାନଙ୍କ ସଙ୍ଗେ ମଣିମା ଏକମତ ହୋଇ ପାରନ୍ତି ନାହିଁ । ଇଂରେଜ ରାଜତ୍ୱ କରୁଛନ୍ତି ଓ ତାଙ୍କର ପୈତୃକ ସମ୍ପତ୍ତି ଓ ବହୁଁଙ୍କ ସମ୍ପତ୍ତି ହାତକୁ ନେଇଛନ୍ତି ଏ କଥା ସତ, କିନ୍ତୁ ତାଙ୍କର ରାଜତ୍ୱ କେଉଁଠି ଥିଲା ? ତାଙ୍କର ପୂର୍ବପୁରୁଷମାନେ ତ ବହୁକାଳୁ ତାହା ହରାଇଥିଲେ । ବୀର ଭୋଗ୍ୟା ବସୁନ୍ଧରା । ରାଜା ଯୁଦ୍ଧ କରି ରାଜ୍ୟ ପାଏ, ଚକ୍ରବର୍ତ୍ତୀ ହୁଏ । ଯିଏ ଜିଣିଲା ତାର ରାଜ୍ୟ, ଯିଏ ହାରିଲା ତାର ଆଉ କି ରାଜ୍ୟ ? ତାପରେ ତାଙ୍କ ସମ୍ପତ୍ତି ଯେ କେବଳ ଇଂରେଜ ସରକାର ଛଡ଼ାଇନେଇଥିଲେ ତା ନୁହେଁ, ମୁକ୍ତାର ମଧ୍ୟ ବହୁତ ସମ୍ପତ୍ତି ହାତ ପଇଠ କରିଥିଲେ । ତେଣୁ ତାଙ୍କର ଇଂରେଜ ସରକାରଙ୍କ ବିରୁଦ୍ଧରେ ଅଭିଯୋଗ ଯେତିକି, ମୁକ୍ତାରଙ୍କ ଘର ଉପରେ ଅଭିଯୋଗ ସେତିକି । ସେ ବର୍ତ୍ତମାନ ମୁକ୍ତାର ବଂଶର କି ବିରୋଧ କରିବେ ? କାହିଁ ତାଙ୍କ ବଂଶର କିଏ ଅଛି ? ଧନ ସମ୍ପତ୍ତି ବା କେଉଁଠି ଅଛି ?

ଯେ ଯେପରି କାର୍ଯ୍ୟ କରିବ ଭଗବାନ ତାକୁ ସେହିପରି ଦଣ୍ଡ ଦେବେ । ସେହିପରି ଏ ଇଂରେଜ ସରକାର କିଏ ? ସେ ବର୍ତ୍ତମାନ ଅଛନ୍ତି, କିନ୍ତୁ ସେମାନେ ଦିନେ ନା ଦିନେ ସେମାନଙ୍କର ପାପ ଯୋଗୁଁ ଆପେ ଆପେ ଧ୍ୱଂସ ହୋଇ ଏ ଦେଶରୁ ଚାଲିଯିବେ । ସେ କାହିଁକି କାହା ବିରୁଦ୍ଧରେ ଯାଇ ପାପ କରିବେ ? ଆନ୍ଦୋଳନ କଲେ କେତେ ନ କଲେ କେତେ ?

ଗୋପବନ୍ଧୁ ଓଡ଼ିଶାରେ ପ୍ରଥମେ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ସେ ଦେଶ ପାଇଁ ବ୍ୟସ୍ତ ହୋଇ ହୋଇ ଚାଲିଗଲେ । ଫଳ କଣ ସେ

ଦେଖିପାରିଲେ ? ଆନ୍ଦୋଳନ କଅଣ ଦିନକଆ କଥା ଯେ ସେ ଫଳ ଦେଖିବାକୁ ସବୁଦିନ ପାଇଁ ବଞ୍ଚିଥିବେ ? ଏଇ ତରୁଣ ମସିହାରେ ବାନରସେନା ଓ ସତ୍ୟାଗ୍ରହୀମାନେ ଏତେ କଷ୍ଟ ସହି ଆନ୍ଦୋଳନ କରୁଛନ୍ତି । ଏମାନଙ୍କର ଜୀବନ ବି ଚାଲିଯିବ—ହୁଏତ ସ୍ୱାଧୀନତା ଏମାନେ ମଧ୍ୟ ଦେଖିପାରିବେ ନାହିଁ ।

ଏହି ସଂସାର କ୍ଷଣସ୍ଥାୟୀ । ଗୋପାଳଙ୍କର ସୃଷ୍ଟି । କେବଳ ସେ ରହିବେ । ସେ ଆଦିମ ଯୁଗରୁ ବା ସୃଷ୍ଟିର ଆରମ୍ଭରୁ ଅଛନ୍ତି । ତାଙ୍କର ଯାହା ଇଚ୍ଛା ବ୍ରହ୍ମାଣ୍ଡରେ ତାହାହିଁ ଘଟିଯାଉଛି । ତେଣୁ ଏ ଆନ୍ଦୋଳନରେ ମୁଣ୍ଡ ପୂରାଇବା ତାଙ୍କର ଦରକାର ନାହିଁ ବୋଲି ସେ ତାଙ୍କର ଦୃଢ଼ମତ ସତ୍ୟାଗ୍ରହୀମାନଙ୍କୁ ଜଣାଇଦେଇଥିଲେ ।

## କୋଡ଼ିଏ

ଘଣ୍ଟବାଦ୍ୟର ଚନ୍ଦନଯାତ୍ରା ସମୟ । ଭଉଁରୀ ବାଡରେ ସବୁଠାରୁ ବେଶି ଗହଳି । ଦେଉଳର ଅଧିକାଂଶ ସେବାୟତ ପେଟେ ଲେଖାଏଁ ପାଚକ ପାଣି ଉଦରସ୍ଥ କରି ରକ୍ତଗୋଲାପ ପରି ନାଲି ନାଲି ଆଖି ସହିତ କାନ୍ଧରେ କଦମ୍ବଫୁଲିଆ ପାଚିଲା ଗାମୁଛାଟାଏ ଲେଖାଏଁ ପକାଇ ଏପଟ ସେପଟ ହୋଇ ଟହଲମାରୁଛନ୍ତି । ଦାଣ୍ଡଯାକ ନାନା ପ୍ରକାରର ଯାତ୍ରା ଚାଲିଛି । ପଣ୍ଡାଙ୍କ ଜାଗା ଘର ପାଖରେ ଆଖେଡ଼ା ନାଚ ଚାଲିଛି । କେଉଁଠି ରାହାସ ଯାତ ଚାଲିଛି ତ ଆଉ କେଉଁଠି ଶବର ଶବରୁଣୀ ନାଚ ଚାଲିଛି ।

ମନ୍ଦିର ଅଫିସ କୋଠା ଉପରେ ସରକାରଙ୍କ ଦ୍ୱାରା ନିଯୁକ୍ତ ତିନିଜଣ ଯାକ ଟ୍ରଷ୍ଟି ସେଦିନ ଅତିଥି ଚର୍ଚ୍ଚା ପାଇଁ ଭୋଜିର ମଧ୍ୟ ଆୟୋଜନ କରିଛନ୍ତି । ଜଣେ ଟ୍ରଷ୍ଟି ହେଉଛନ୍ତି ସେଠାକାର ସ୍ଥାନୀୟ ଲୋକ, ଆଉ ଦୁଇଜଣଙ୍କ ମଧ୍ୟରୁ ଜଣେ କଟକ ଜିଲ୍ଲାର ଜଣେ ଜଣାଶୁଣା ଜମିଦାର ଓ ଅନ୍ୟଜଣକ କଟକ କଚେରୀର ନାମଜାଦା ଓକିଲ । ସେମାନଙ୍କ ନିମନ୍ତ୍ରଣରେ ବହୁ ସ୍ଥାନୀୟ ଭଦ୍ରବ୍ୟକ୍ତି ବିଭିନ୍ନ ଗ୍ରାମରୁ ଡାକରା ପାଇ ଏଥିରେ ଯୋଗଦେଇଛନ୍ତି । କିନ୍ତୁ କେଜାଣି କାହିଁକି ସେ ନିମନ୍ତ୍ରଣରେ 'ମଣିମା' ସ୍ଥାନ ପାଇନାହାନ୍ତି ।

ମନ୍ଦର ଓ ସରକାରୀ ବଡ଼ବଡ଼ଆ ଲୋକମାନେ ସବୁ କାର୍ଯ୍ୟରେ ପ୍ରାୟ ମଣିମାଙ୍କୁ ଭୁଲିଯାଆନ୍ତି; ଯେପରିକି ନିର୍ଧନ ଲୋକ ଯେତେ ଉଚ୍ଚବଂଶଜ ହେଲେ ମଧ୍ୟ ଏ ତଥାକଥିତ ଭଦ୍ରସମାଜରେ ତାର ସ୍ଥାନ ନାହିଁ ।

ଗୃହଆଡ଼େ ଜନସମାଗମ । ସତ୍ୟବାଦୀ ଦାଣ୍ଡରେ ଦେଉଳଠାରୁ ଚନ୍ଦନ ପୋଖରୀ ପର୍ଯ୍ୟନ୍ତ ନଡ଼ିଆ ବୃକ୍ଷର ଗୁମୁଣ୍ଡିଆ ବନ୍ଧା ହୋଇଛି । ଆଖପାଖ ପୁରପଲ୍ଲୀର ବହୁତ ଲୋକ ପିଲାପିଚିକା ଧରି ଆସିଛନ୍ତି । ସେତେବେଳେ ଅନେକ ଗୃହୀଙ୍କ ମୁଣ୍ଡରେ ବେଙ୍କାଏ ଲେଖାଏ ବାବୁରି ବାଳ । ମୁଣ୍ଡଟି ଘିଅ ବା ମଥାଦେଇ (ସୋରିଷତେଲ)ରେ ଜୁଡ଼ୁଜୁଡ଼ୁ । କାନ୍ଧରେ ଦୋଷଡ଼ା ଗାମୁଛାର ଉପରୁ ପାନ ବଟୁଆଟା କାଖ ତଳକୁ ଓହଳିଛି । କାହାକାହାର କାନରେ ନୋଳି ତ କାହାକାହାର ନାକ ତଳେ ହଳେଲେଖାଏଁ ଖାର କେଶ (ନିଶ) । ଅଧିକାଂଶଙ୍କର ଗାଲ ବଳଭଦ୍ର ବାଙ୍କୁଳିରେ ଗିରିଶୃଙ୍ଗ ଭଳି ଉଚ୍ଚ (ପୁରୀର ବିଖ୍ୟାତ ଗୁଣ୍ଡିଖିଆ ପାନଖିଲକୁ ବଳଭଦ୍ର ବାଙ୍କୁଳି କୁହାଯାଏ) । ରାସ୍ତାଯାକ ପଚ୍ ପଚ୍ ନାଲି ପିକ ଏବଂ ସେସବୁକୁ ପକାଇ ପକାଇ ରାସ୍ତାକଡ଼ ରକ୍ତ ବର୍ଣ୍ଣ ଧାରଣ କରିଛି । ପାନ ପିକ ବିଷୟରେ ଗୋଟିଏ କଉତୁକିଆ ଘଟଣା ଘଟିଥିଲା । ଯାହାବେଳେ ପାଦ୍ରି ସାହେବମାନେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ ଆସନ୍ତି । ଥରେ ପାଦ୍ରିଙ୍କ ସଙ୍ଗେ କାଳିଯାତ୍ରା ପର୍ବ ସମୟରେ ଜଣେ ବିଦେଶୀ ଗୋରା ମହିଳା ତାଙ୍କର ପ୍ରଚାର କପରି ଚାଲିଛି ଦେଖିବାକୁ ଆସିଥିଲେ । ସେ ୟୁରୋପରୁ ଆସିଥାନ୍ତି । ନୃମୁଣ୍ଡ-ମାଳିନୀ କାଳୀ ମୂର୍ତ୍ତି ସେ କେବେ ଦେଖିନଥିଲେ । କାଳୀଙ୍କ ବେକରେ ସଦ୍ୟ କଟାହୋଇ ରକ୍ତ ଝରି ପଡ଼ୁଥିବା ପରି ନରମୁଣ୍ଡ ଗୁଡ଼ିଏ ମାଳ ହୋଇ ପଡ଼ିଛି ଓ ଚାରିପଟେ ଲୋକ ଗୁଡ଼ାକ ରକ୍ତ ପରି ତରଳ ପଦାର୍ଥ ପିଚ୍ ପିଚ୍ କରି ପକାଉଛନ୍ତି ଦେଖି ଭଦ୍ରମହିଳା ସଙ୍ଗେ ସଙ୍ଗେ ମୂର୍ଚ୍ଛା ହୋଇଗଲେ । ପାଦ୍ରି ବିଚରା ପାଣି ଛିଞ୍ଚା ବିଞ୍ଚା କରି ତାଙ୍କୁ ହୋସ୍ କରାଇବାରୁ ସେ ଉପରେ ଚିତ୍କାର କରି କହିଲେ, "ତୁମେ ଜଣେ ନରଭକ୍ଷୀ ରାକ୍ଷସ । ଏହି ନରଭକ୍ଷୀ ଦେବୀ ପୂଜକ, ରକ୍ତ ପିପାସୁ ରାକ୍ଷସଙ୍କ ଭିତରୁ ମୋତେ ଶୀଘ୍ର ଘେନିଯାଅ । ତୁମେ ମୋର ରକ୍ତ ପାନ ଓ ମାଂସ ଭକ୍ଷଣ କରିବାକୁ ଏଠାକୁ ଭୁଲାଇ କରି ଆଣିଛ ।"

ଏହା କହି ଭ୍ୟାନିଟି ବ୍ୟାଗରୁ ରିଭଲ୍‌ଭର କାଢ଼ି ପାଦ୍ରିଙ୍କ ଆଡ଼କୁ ଦେଖାଇଲେ ଓ ଶୀଘ୍ର ଘେନି ନ ଗଲେ ଏଥିରେ ତାଙ୍କୁ ଗୁଳି କରିଦେବେ ବୋଲି ପାଦ୍ରିଙ୍କୁ ଧମକଦେଲେ ।

ଏହିସବୁ ଘଟଣା ଘଟିଥିବା ଭିତରେ ପାଦ୍ରି ଘଟଣାଟି ବୁଝିପାରି ଦୁଇଖଣ୍ଡ ବନାରସିଆ ସୁବାସିତ ପାନ ଖିଲ ଓ ଗୋଟିଏ ଦର୍ପଣ ମଗାଇ ଆଣିଥିଲେ । ସେ ମେମ୍‌ସାହେବଙ୍କୁ କହିଲେ,"ହେଉ ହେଉ ସେ କଥା ବୁଝିବା । ବର୍ତ୍ତମାନ ଦେହ ଆପଣଙ୍କର କପରି ଲାଗୁଛି ?" ତାହା ପଚାରି ବୁଝିବା ପରେ, ସେ ଖଣ୍ଡିଏ ପାନ ତାଙ୍କ ହାତକୁ ବଢ଼ାଇଦେଲେ ଓ ତାଙ୍କର ବିଶ୍ୱାସ ଜନ୍ମାଇବାକୁ ନିଜେ ତାଙ୍କୁ ଦେଖାଇ ଆଉ ଖଣ୍ଡିଏ ପାନ ନିଜ ପାଟିରେ ପକାଇ ଦେଲେ । ମେମ୍‌ସାହେବ ପ୍ରଥମେ ଅଳ୍ପ ଟିକିଏ ଚାଖି ମିଠା ଲାଗିବାରୁ ଖିଲ ଖଣ୍ଡିକ ପାଟିରେ ପକାଇ ଚୋବାଇଲେ । ସେ ରାଗରେ ଗରଗର ହେଉଥିଲେ ମଧ୍ୟ ସୁସ୍ୱାଦୁ ପାନ ପାଇଁ ପାଦ୍ରିଙ୍କୁ ଧନ୍ୟବାଦ ଦେଲେ । ଅଳ୍ପ କେତେକ ସମୟ ପରେ ପାଦ୍ରି ଛେପ ପକାଇଲେ ଓ ମେମ୍‌ସାହେବଙ୍କୁ ମଧ୍ୟ ଛେପ ପକାଇବାକୁ କହି ତାଙ୍କ ପାଟିର ରଙ୍ଗ ଦେଖିବାକୁ ଦର୍ପଣଟି ବଢ଼ାଇଦେଲେ । ମେମ୍‌ସାହେବ ଅପ୍ରତିଭ ହୋଇ ହସିପକାଇ ଲାଜରେ ମୁଣ୍ଡ ପୋତିଦେଲେ ଏବଂ ତାଙ୍କ ଗାଳି ଓ ଖରାପ ବ୍ୟବହାର ପାଇଁ କ୍ଷମା ମାଗିଲେ । ବିଭିନ୍ନ ଦେଶର ଭିନ୍ନ ଭିନ୍ନ ଚାଲିଚଳନ ଉପରେ ଏପରି ନାନା ପ୍ରକାରର କଉତୁକିଆ ଘଟଣା ସବୁ ଘଟିଥାଏ ।

ପୁରୁଷମାନେ ଯେ କେବଳ ପାନ ପିକ ଫୋପାଡୁଥିଲେ ତା ନୁହେଁ, ସେମାନଙ୍କ ସଙ୍ଗରେ ଥିବା କେତେକ ସ୍ତ୍ରୀ ଲୋକ ମଧ୍ୟ ଗୁଣ୍ଡି ବା ନିର୍ଗୁଣ୍ଡି ପାନ କଳରେ ଜାକି ସେହିପରି କାର୍ଯ୍ୟ କରୁଥିଲେ । ସ୍ତ୍ରୀଲୋକମାନେ ସାଧାରଣତଃ ସବୁବେଳେ ଘର ଓ ପିଲାବାଲା କାମରେ ବ୍ୟସ୍ତ ରହିଥାଆନ୍ତି । ଏହି ଯାନିଯାତ୍ରା ମେଳଣ ବେଳକୁ କୁଆଡ଼େ ଟିକିଏ ବୁଲିଯିବାର ସୁବିଧା କେବେ କେବେ ସେମାନଙ୍କୁ ମିଳେ । ଯାତ୍ରା ଆଦି ପାଇଁ ସେମାନେ ପେଡ଼ିଲୁଗା ସାଇତିରଖିଥାଆନ୍ତି । ସତ୍ୟବାଦୀ ଭଉଁରୀ ଯାତ୍ରା ଦେଖି ଯିବା ପାଇଁ ସେମାନଙ୍କର ପେଡ଼ିଲୁଗା, ମାଠି, ବିଦ, ବାଜବନ୍ଧ, ମଲକଡ଼ି, ଗଣ୍ଠିଆ, ବଣୁଣୀ, ଗୁଣା ପ୍ରଭୃତି ଯହାର ଯାହା ଭଲ ଲୁଗା କି ଅଳଙ୍କାର ଥିଲା ସେ ସବୁ ପିନ୍ଧିକରି ଚାଲିଆସନ୍ତି । ତାଙ୍କର ବାରହାତିଆ ଲୁଗାର ପଣ୍ଟ କାନିରେ ଏକ ବଡ଼ ଗଣ୍ଠି ବା ଗୁଡ଼, ସେମାନେ ଚାଲିଲାବେଳେ ତାଙ୍କ ପିଠିପଟେ ବାଡ଼େଇହୋଇ ଫୁଟବଲ ପରି ଖେଳିବାରେ ଲାଗିଥାଏ ।

ଯାତ୍ରା ଯେଉଁଠି ଜମିଛି ସେଠି ନଡ଼ିଆ ଗୁଞ୍ଜ ଉପରେ ଚକାମାଲି ପକାଇ ହାତରେ ମଲ୍ଲିଫୁଲ ମାଳ ବାନ୍ଧି ମଉଜମାନେ ଆଗରୁ ଯାଇ ବସିପଡ଼ିଛନ୍ତି ।

ସେମାନଙ୍କ ପଛରେ ଅନେକ ଲୋକ ଖୁନ୍ଦାଖାନ୍ଦି ହୋଇ ବସିଛନ୍ତି ଓ ଅନେକଙ୍କ ପଛରେ ଠେଲାପେଲା ହୋଇ ଠିଆହୋଇ ଯାତ୍ରା ଦେଖୁଛନ୍ତି ।

ଏପରି ଦାଆଁଙ୍କ ଯାତ୍ରାକୁ ଯେ ସମସ୍ତେ ଖାଲି ଭକ୍ତିରେ ଆସିଥାଆନ୍ତି ତାହା ନୁହେଁ, କିଏ କେଉଁ ପ୍ରକାର ଉଦ୍ଦେଶ୍ୟ ନେଇ ଆସି ଥାଆନ୍ତି । ଏପରି ଯାତ୍ରାରେ ଚୋର ଓ ଦୁଷ୍ଟାମି ପ୍ରଭୃତିର ମଧ୍ୟ ଅଭାବ ନ ଥାଏ । ଦଳେ ଏଣେ ପୁଣି ଖୁନ୍ଦାଖୁନ୍ଦି ହୋଇ ବସି ଯାତ୍ରା ଦେଖୁଥିଲା ବେଳେ ଦୁଇଟା ଦୁଷ୍ଟ ପିଲା ଯାତ୍ରା-ବାଲାଙ୍କ ନିକଟକୁ ଭିଡ଼ ଠେଲି ଯାଇ ନ ପାରି ଗୋଟିଏ ସୁପରିକଳ୍ପିତ ଯୋଜନା କରି ଗୋଟିଏ କୁକୁର ଯୋଗାଡ଼କଲେ । ତାର ମୁହଁରେ ପଟି ବାନ୍ଧି, ଆଗ ଓ ପଛ ଗୋଡ଼କୁ ଦୁଇ ହାତରେ ଧରି ଯାତ୍ରା ଭିତରକୁ ଗୁଡ଼ିଦେଲେ । ଲୋକମାନେ କଲବଲ ହୋଇ ଉଠିଗଲେ । କୁକୁରଟା ଏପଟ ସେପଟ ହୋଇ ପଳାଇବାକୁ ବାଟ ନ ପାଇ ସମସ୍ତଙ୍କୁ ଇତସ୍ତତ କରିବାକୁ ଲାଗିଲା । "କଅଣ କଅଣ, କିଏ ପକାଇଲା, କିଏ ପକାଇଲା," ଏପରି ପଚରାପଚରି ହେଉ ହେଉ ଚଗଲା ଦୁଇଟା ପରସ୍ପର ମଧ୍ୟରେ ଚିମୁଟାଚିମୁଟି ହୋଇ ମୁଡ଼ୁକିହସି ସୁନା ପିଲାଙ୍କ ପରି କିଛି ନ ଜାଣିଲା ଭଳି ଯାତ୍ରାବାଲାଙ୍କ ସାମନାରେ ଆସି ବସିପଡ଼ିଲେ ।

× × × ×

ବୃଦ୍ଧ ମଣିମା ଏକାକୀ ବୁଲି ବୁଲି, ଏ ସବୁ ଦୃଶ୍ୟ ଦେଖି ଦେଖି, ଗୋପାଳ-ଙ୍କର ଏସବୁ ଲୀଳା ବୋଲି ମନେ ମନେ ଗୋପାଳଙ୍କର ଭଜନ ଗାଇ ଗାଇ ଶେଷରେ ରାତି ଅଧିକୁ ଘରକୁ ଲେଉଟିଲେ । କ୍ଲାନ୍ତ ହୋଇ ଘର ସାମନା ମାଟି ପିଣ୍ଡା ଉପରେ ଲଥ୍ କରି ବସିପଡ଼ିଲେ । ତାଙ୍କ ଫେରିବା ଜାଣିପାରି, ଚୋଇଲୀଟି ଦଉଡ଼ିଆସି ସତେଇ ସତେଇ କହିଲା, "ମଣିମା, ଏତେବେଳଯାଏ କେଉଁଆଡ଼େ ବିଜେ ହୋଇଥିଲେ ? ରାଣୀ ମାଆଙ୍କର ହଠାତ୍ କଅଣ ହୋଇଗଲା । ସେ ମଶିଣାଟା ଉପରେ ବସୁ ବସୁ ଢଳିପଡ଼ିଲେ । ତାଙ୍କର ପାଟି ଫିଟୁ ନାହିଁ, ଉଁ କ ଚୁଁ କିଛି କହୁନାହାନ୍ତି । ଖାଲି ଆଖି ମେଲିକରି ଜକଜକ କରି ଚାହିଁରହିଛନ୍ତି । ଦେହର ଡାହାଣପଟରେ ଆଉ ପ୍ରାଣ ଥିଲାପରି ଜଣାପଡ଼ୁନାହିଁ । ଡାହାଣପଟର ହାତ କାନ୍ଧ ଗୋଡ଼ ଆଉ ଚଳୁନାହିଁ । ମୋତେ ବାମ ହାତରେ ଠାରି ପାଣି

ମାଗିଲେ । ମୁଁ ପାଣି ଆଣି ପିଆଇବାକୁ ଚେଷ୍ଟା କଲି, କିନ୍ତୁ ସେ ପିଇ ପାରିଲେ ନାହିଁ । ଦାଣ୍ଡଆଡ଼କୁ ବେଳେ ବେଳେ ଟେରେଇକରି ଚାହୁଁଛନ୍ତି । ବୋଧହୁଏ ମଣିମାଙ୍କୁ ଖୋଜୁଛନ୍ତି । ଆପଣ ଶୀଘ୍ର ଭିତରକୁ ବିଜେହୁଅନ୍ତୁ ।"

ମଣିମା ଏକଥା ଶୁଣିବା ମାତ୍ରେ ଉଠିପଡ଼ି ଘର ଭିତରକୁ ଦଉଡ଼ିଗଲେ । ଯାହା ଦେଖିଲେ ସେ ଅବାକ୍ ହୋଇ ଚାହିଁରହିଲେ ।'ରାଣୀମା' 'ରାଣୀମା' ବୋଲି ବିକଳରେ କେତେଥର ଡାକିଲେ, କିନ୍ତୁ ରାଣୀମାଙ୍କର ଉତ୍ତର ନାହିଁ । କେବଳ ତାଙ୍କର ବାମ ଆଖିରୁ ଧାରଟାଏ ଲୁହ ତଳକୁ ବୋହିପଡ଼ିଲା ।

ସେ ଆଉ ଅପେକ୍ଷା ନକରି ବୈଦ୍ୟ ଡାକିବାକୁ ବାହାରିପଡ଼ିଲେ । କଅଣ କରିବେ, ଡାକ୍ତରତ ବହୁତ ଗୁଡ଼ାଏ ପଇସା ଚାହିଁବ ? ପୁଣି ସଙ୍ଗେ ସଙ୍ଗେ ଆସିବ କି ନାହିଁ ? ହଠାତ୍ ଗୁଡ଼ାଏ ପଇସା କେଉଁଠାରୁ ବା ପାଇବେ ? ତଥାପି ବନ୍ଧାଛନ୍ଦା ପକାଇ ମଧ୍ୟ ରୋଗିଣୀର ସବୁଠାରୁ ଭଲ ଚିକିତ୍ସା ହେବା ଦରକାର । ତାଙ୍କ ଛଡ଼ା ତାଙ୍କର ବୋଲି ଆଉ କିଏ ଅଛି ? ସ୍ଥାନୀୟ ଡାକ୍ତର ଅପେକ୍ଷା ପୁରୀର ବଡ଼ଡାକ୍ତର ଆସି ଦେଖିଲେ ସବୁଠାରୁ ଭଲ ହୁଅନ୍ତା; କିନ୍ତୁ ପୁରୀର ଡାକ୍ତର ଆସି ପହଞ୍ଚିଲା ବେଳକୁ ରୋଗୀର ରୋଗ ହୁଏତ ବହୁତ ବଢ଼ିଯାଇ ଥିବ ଅବା ରୋଗୀର ପ୍ରାଣ ନଥିବ । ସତ୍ୟବାଦୀର ସେ ଡିଷ୍ଟ୍ରିକ୍ଟ ବୋର୍ଡ଼ ଡାକ୍ତରଖାନା, ତା'ର ଛୋଟିଆ ଡାକ୍ତର, ସେ ବା ଏ ରୋଗକୁ କଅଣ ଚିକିତ୍ସା କରିପାରିବ ? ଯାହାହେଉ କେହି ଡାକ୍ତର କି କବିରାଜ ତ ଆସି ସଙ୍ଗେ ସଙ୍ଗେ ରୋଗିଣୀକୁ ଦେଖିବା ଦରକାର !

ଏପରି ଭାବି ସେ ସଙ୍ଗେ ସଙ୍ଗେ ନଈ ଆରପଟେ ବାସୁଦେବ ଗାଁକୁ ଯାଇ ଗୋପୀ ବାବାଜି କବିରାଜଙ୍କୁ ସାଙ୍ଗରେ ଘେନି ଆସିଲେ । ସେ ଯେତେ ଅସୁବିଧାରେ ଥାଆନ୍ତୁ ଖବର ପାଇଲା ମାତ୍ରେ ରୋଗୀକୁ ଦେଖିବାକୁ ବସିଲାଠାରୁ ଉଠିଆସନ୍ତି । ସେ କବିରାଜି ପଢ଼ିନଥିଲେ ମଧ୍ୟ ଅଭ୍ୟାସ କରି କରି ପୋଖତ ହୋଇଯାଇଛନ୍ତି । ଚାରିପଟେ ତାଙ୍କର ନାମ ଡାକ । ସେ ଅମୃତହସ୍ତା ବୋଲି ତାଙ୍କର ନାଁଅଛି । ସେ ଆସି ରୋଗୀ ପାଖରେ ଠିଆହୋଇଗଲେ ବିଶ୍ୱାସ ଯୋଗୁଁ ରୋଗୀର ଅଧାଅଧି ରୋଗ ଉପଶମ ହୋଇଯାଏ । ତାଙ୍କ ସୁନାମର ଆଉ ଗୋଟିଏ କାରଣ ହେଉଚି—ପଇସାପତ୍ର ପ୍ରତି ତାଙ୍କର ବିଶେଷ ଦୃଷ୍ଟି ନାହିଁ । ଯେ ଯାହା ଦିଏ ସେଥିରେ ସେ ଖୁସିହୋଇ ଚାଲିଯାଆନ୍ତି । ତାଙ୍କର ଔଷଧ ଚେର ମୂଳରେ ଆବଦ୍ଧ ହୋଇଥିବାରୁ ବେଶି ବ୍ୟୟସାପେକ୍ଷ ମଧ୍ୟ ନୁହେଁ । ସେ

ଗୃହୀ ହୋଇଥିଲେ ମଧ୍ୟ ତାଙ୍କର ସନ୍ନ୍ୟାସୀସୁଲଭ ସ୍ୱଭାବ ଯୋଗୁଁ ତାଙ୍କୁ ଲୋକେ ବାବାଜି ବୋଲି ଡାକନ୍ତି ।

କବିରାଜ ନାଡ଼ି ଦେଖିଲେ ଏବଂ ବଟୁଆରୁ ଖଣ୍ଡିଏ ଚେର କାଢ଼ି ଖଲରେ ଘଷି ମହୁ ସଙ୍ଗେ ଖଲ ରୋଗୀର ଜିଭରେ ଚଟାଇଦେଲେ । ମେଟ୍ର ହାତ ଠାରି ମଣିମାଙ୍କୁ ଦାରମୁହଁକୁ ଡାକି ମୁଣ୍ଡ ହଲାଇ ନାସ୍ତିବାଣୀ ଶୁଣାଇ ଘରକୁ ଲେଉଟିଗଲେ ।

ମଣିମା ଫେରିଆସି ରାଣୀମାଙ୍କ ମୁଣ୍ଡ ପାଖେ ବସି ତାଙ୍କ ମୁଣ୍ଡରେ ହାତ ବୁଲାଉ ବୁଲାଉ ବୁକୁର କୋହ ଚାପି ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ଟୋକା ସିନ୍ଦୂର ପିନ୍ଧି ଅହ୍ୟ ଡେଙ୍ଗୁରା ବଜାଇ ଚାଲିଯିବା ପାଇଁ ତ ସବୁବେଳେ ଗୋପାଳଙ୍କୁ ଜଣାଉଥିଲ—ଶେଷରେ ଗୋପାଳ ମୋ କଥା ନ ଶୁଣି ତୁମର କଥା ହିଁ ଶୁଣିଲେ । ମୋତେ କଅଣ ଏକା ଛାଡ଼ି ଚାଲିଯିବ ? ତୁମ ସଙ୍ଗେ ନେବ ନାହିଁ ?"

ରାଣୀମାଙ୍କର ସନ୍ନିପାତବେଳେ ହଠାତ୍ ପାଟି ଫିଟିଲା । ସେ ଅସ୍ପଷ୍ଟ ସ୍ୱରରେ କହିପକାଇଲେ, "ମୋତେ ଆଶୀର୍ବାଦ କର, ଆର ଜନ୍ମରେ ପୁଣି ମୁଁ ତୁମକୁ ଯେପରି ସ୍ୱାମୀ ରୂପେ ପାଏ ।" ମଣିମା କହିଲେ, "ମୋ ହାତ ଧରି ଏ ଜନ୍ମରେ କି ସୁଖ ପାଇଲ ଯେ ପୁଣି ଆର ଜନ୍ମକୁ ମୋ ହାତ ଧରିବ ବୋଲି ଆଶୀର୍ବାଦ ମାଗୁଛ ?" ଏତିକି କହିଲାବେଳକୁ ସେ କଥା ତକ ଶୁଣିବାକୁ ରାଣୀମା ତର ପାଇଲେ କି ନାହିଁ, ହଠାତ୍ ତାଙ୍କ ଆଖି ବନ୍ଦହୋଇଗଲା ଏବଂ ଗୋଟିଏ ପଟକୁ ମୁହଁଟି ଢଳିପଡ଼ିଲା । ତାପରେ ସବୁ ଶେଷ । ମଣିମା ଦୀର୍ଘନିଶ୍ୱାସ ପକାଇ ବସିରହିଲେ ।

ତାପରେ ଶୁଦ୍ଧି ଶ୍ରାଦ୍ଧ ସରିଲା । ଦିନା କେତେ ମଣିମା ଏକାକୀ ଜୀବନ ଯାପନ କଲେ । ସଂସାର କାର୍ଯ୍ୟରେ ଆଉ ତାଙ୍କର ମନ ଲାଗିଲା ନାହିଁ । ସେ ପୋଷା ପଶୁପକ୍ଷୀ ଗୁଡ଼ିକୁ ବିଦାୟ କରିଦେଲେ । ଦିନାକେତେ ଟୋକା ଶୁଆ ବଣି ତାଙ୍କ ଘର ପାଖରେ ଯାଆଆସ ହେଲେ, କଟରକାଟର କଲେ, ଆସ୍ତେ ଆସ୍ତେ ସବୁ ଭୁଲିଯାଇ ନିଜ ନିଜ ଧନ୍ଦାରେ ଲାଗିଲେ । ନୂଆ ଜୀବନ ଗଢ଼ିଲେ ମଣିମା । ଦ୍ୱାରରେ ବସି ବସି ବଣିଚଢ଼େଇ ଓ ବଣି ଛୁଆମାନଙ୍କର ଗତିବିଧି ଲକ୍ଷ୍ୟକରି ବିସ୍ମରଣର ସ୍ୱର୍ଗୀୟ ପ୍ରଭାବ ଉପଲବ୍ଧି କଲେ । ସେ ପୂର୍ବ ଘଟଣା ସବୁ ଓ ରାଣୀମାଙ୍କୁ ଭୁଲି ନ ପାରି ବୃଥାରେ କଷ୍ଟ ପାଉଛନ୍ତି ବୋଲି ବୁଝିପାରିଲେ । ସେ

ଭାବିଲେ ମନୁଷ୍ୟ ଯଦି ପଶୁପକ୍ଷୀଙ୍କ ପରି ସ୍ମୃତିଶକ୍ତିରହିତ ହୋଇଥାଆନ୍ତା, ତାହାହେଲେ କି ଖୁସିରେ ନ ଥାଆନ୍ତା ! ନିମ୍ନଲିଖିତ ବିସ୍ମରଣ କବିତାର ଭାବ ତାଙ୍କ ମନରେ ନାଚିଗଲା ।

ଚାଲିଁ ଚାଲିଁ ଛୁଆ ଆଧାର ମାଗଇ କୋଠର ଗଣ୍ଡର କୋଣେ
ମାଆର ପରାଣ ଅଥୟ ହୁଅଇ ପୋକ ଯୋକ ଖୋଜ ବଣେ ।
ଆଧାରଟି ଧରି ସେନେହ ଆଦରି ଖୁଆଏ ଛୁଆରେ ଭେଟି
ସ୍ୱାର୍ଥ ବିଶୋରି ପାଳିଯାଏ ଛୁଆ ନିଜର ଆଧାର କାଟି ।
ସମସ୍ତ ସୁଅରେ ସିନେହ ଭୁଲଇ, ସେଇ ପୋକ ପାଇଁ କାଳି
ପୁଅର ମୁହଁରୁ ଛଡ଼ାଇ ଖାଏ ସେ ଡାହାଣୀଠୁ ଯାଏ ବଳି ।
ଠିକ୍ ଭୁଲ ପାଇଁ ନାହିଁ ଅନୁତାପ, ସ୍ମରଣ ଶକ୍ତି ତ ନାହିଁ
ମଣିଷ ପରି ସେ କାନ୍ଦେ ନାହିଁ ବସି ଅନୁସରି ପଛ ପାଇଁ ।
ନାହିଁ ଅପମାନ, ନାହିଁ ଅଭିମାନ, ଇତିହାସ ତାର ନାହିଁ
ବିଧାତା ନିଠୁର ମଣିଷର ପାଇଁ ସାଇତିବା ମନ ଦେଇ ।
ଯୁଗ ଯୁଗ ଧରି ମାନବର ମନ ଭୁଲିବାକୁ କରି ଅଳି
ଗଢ଼ିଛି ସମାଜ ହୋଇ ଯୋଗୀଜନ ନିଜ ସୁଖ ଦେଇ ବଳି ।

ତାପରେ ଦିନରାତି ବସି ଗୋପାଳଙ୍କୁ ଡାକିଲେ । ମଣିମାଙ୍କୁ ବି ଆଉ ବେଶି ଦିନ ଇହସଂସାରରେ ରହି ଧାଣ୍ଡି ହେବାକୁ ପଡ଼ିଲା ନାହିଁ । ଗୋପାଳ ପାଦାନ୍ତର ନ କରି, ରାଣୀମାଙ୍କୁ ଯେପରି ନେଇଥିଲେ, ପ୍ରାୟ ସେହିପରି ତାଙ୍କୁ ଘେନିଗଲେ ।

ତାଙ୍କ ତିରୋଧାନ ଗୁରିଆଡ଼େ ଚହଳ ପକାଇଦେଲା । ଶେଷ ଦର୍ଶନ ପାଇଁ ଗୋପାଳଙ୍କ ଫୁଲତୋଡ଼ା ନେଇ ସେବାୟତମାନେ ଆସିଲେ । ସ୍ଥାନୀୟ ଲୋକେ ଆସି ଜମାହେଲେ । ସମସ୍ତେ ଦେଖିଲେ, ସେ ସ୍ନାନାଦି ସମାପନ କରି, ଚନ୍ଦନତିଳକ ଲଗାଇ ଗୋଟିଏ ଆସନ ଉପରେ ପଦ୍ମାସନରେ ଆଉଜି ପଡ଼ିଲା ପରି ବସିରହିଛନ୍ତି । ମୁଖମଣ୍ଡଳ ପ୍ରଶାନ୍ତ ଦିଶୁଛି । ଆଖି ବନ୍ଦ ହୋଇଛି ଓ ମୁଣ୍ଡଟି ଅଳ୍ପ ଟିକିଏ ଗୋଟିଏ ଆଡ଼କୁ ଢଳିପଡ଼ି ପ୍ରାଣବାୟୁ ଉଡ଼ିଯାଇଛି । ଗୁରିଆଡ଼େ ହା-ହା-କାର ପଡ଼ିଗଲା । କଥାରେ ଅଛି—ଥିଲେ ଚିହ୍ନିକନା ହଜିଲେ ମାଠ ।

ସେ ଥିଲାବେଳେ ହୁଏତ ତାଙ୍କ ମହତ୍ତ୍ୱ କେହି ବୁଝିପାରୁନଥିଲେ । ସେ ଅଛନ୍ତି କି ନାହିଁ କେହି ପଚାରୁ ନ ଥିଲେ । ସେ ନୀରବରେ ତାଙ୍କର ଦରିଦ୍ର ଜୀବନ କଟାଇ ଚାଲୁଥିଲେ । କିନ୍ତୁ ତାଙ୍କ ମୃତ୍ୟୁ ପରେ ସମସ୍ତେ ତାଙ୍କର ମହତ୍ତ୍ୱ ଉପଲବ୍ଧି କଲେ ।

ମଣିମାଙ୍କ ତିରୋଧାନ ପରେ ତାଙ୍କ ଘରର ଖବର କଅଣ ହେଲା ଆଜି କେହି ଜାଣନ୍ତି ନାହିଁ । ଏବେ ସେ ଉଆସ ନାହିଁ । ସେ ହଂସ ଆଉ କାକଳି କରି କରି ସତ୍ୟବାଦୀର ଦାଣ୍ଡରେ ପହଁରି ଯାଉନାହାନ୍ତି । ପାରା, ଚଢ଼େଇ, ଜୀବଜନ୍ତୁ କି ମଣିଷ ଆଉ କେହି ନାହାନ୍ତି । ତାଙ୍କ ହାତବନ୍ଧା ଘଣ୍ଟାଟି ବି କୁଆଡ଼େ ଗଲା ଆଉ କାହା ଆଖିରେ ପଡ଼ୁନାହିଁ । ରହିଛି କେବଳ ଉଆସର ସେ ସ୍ଥାନଟା, ଯାହାର ନାମ ହୋଇଛି "ମଣିମାଡ଼ହ" । ଜଗନ୍ନାଥ ମନ୍ଦିର ପ୍ରତିଷ୍ଠାତା ଇନ୍ଦ୍ରଦ୍ୟୁମ୍ନଙ୍କ ବଂଶ ପରି ସାକ୍ଷୀଗୋପାଳ ମନ୍ଦିର ପ୍ରତିଷ୍ଠାତା ରାଜବଂଶ ବି ନିଶ୍ଚିହ୍ନ ହୋଇଛି । ପୁରୀର ଇନ୍ଦ୍ରଦ୍ୟୁମ୍ନ ପୋଖରୀ ପରି ମଣିମାଙ୍କ ନାଁ ନେଇ ଚନ୍ଦନ ପୋଖରୀ ଉପରେ "ମଣିମାଡ଼ହ" ପଡ଼ିରହିଛି । ତା ଉପରେ ଗାଈଜଗା ଟୋକା ନବଯୁଗର ବଂଶୀ ରେଡ଼ିଓଟିଏ ବଜାଇ ବଜାଇ ଗାଈ ଜଗୁଛି । ସେ ସ୍ଥାନରେ ଯିଏ ଯାହା କରୁ ନା କାହିଁକି, ତାହା ଯୁଗ ଯୁଗ ଧରି ଗୋପାଳଙ୍କ ମନ୍ଦିରକୁ ଚାହିଁ ପଡ଼ିରହିଥିବ ।

---